ଭିନ୍ନ ଭାବରେ ଜୀବନରେ ବଞ୍ଚିଥିବା, କିଛି ଅଙ୍ଗେ ନିଭେଇଥିବା ଘଟଣାକୁ ନେଇ ଷଷ୍ଠ ଦଶନ୍ଧିରେ ବଙ୍ଗ ଓ ଓଡ଼ିଶାର ଛାତ୍ର-ଆନ୍ଦୋଳନର ପୃଷ୍ଠଭୂମିରେ ଲିଖିତ ଶୈଶବ ଓ ଯୌବନର କାହାଣୀ, ହସ ଓ ଲୁହର କାହାଣୀ, ଆଦର୍ଶ ଓ ଅନ୍ୟାୟର କାହାଣୀ...

ବଞ୍ଚିବାର ଅନ୍ୟ ନାମ

ବଞ୍ଚିବାର ଅନ୍ୟ ନାମ



ଦ୍ୱିତୀୟ ସଂସ୍କରଣ : ୨୦୧୦



ପ୍ରକାଶକ
ପ୍ରାଚୀ ପ୍ରକାଶନ
୨୨, ସୂର୍ଯ୍ୟକିରଣ ମାର୍କେଟ କମ୍ପ୍ଲେକସ୍
ସହିଦ ନଗର, ଭୁବନେଶ୍ୱର-୭୫୧୦୦୭, ଓଡ଼ିଶା

ମୁଦ୍ରଣ :ରିତୁ ପବ୍ଲିକେସନ ଏଣ୍ଡ ପ୍ୟାକେଜିଙ୍ଗ
ରସୁଲଗଡ଼ ଶିଳ୍ପାଞ୍ଚଳ, ଭୁବନେଶ୍ୱର

ମୂଲ୍ୟ : ଟ.୧୫୦.୦୦

BUNCHIBARO ONYO NAMO



Second Edition 2010



*Published by*
Prachi Prakashan
22, Suryakiran Market Complex
Sahid Nagar
Bhubaneswar-751007

*Printed at*
Reetu Publication & Packaging
Rasulgarh Industrial Area
Bhubaneswar

ISBN 81-85824-19-3
Price: Rs.150

ଭୁଲିପାରିବିନି

ଲେଖା ଚାଲିଥିଲାବେଳେ ପଢ଼ି, ରେକର୍ଡ ହୋଇଥିବା ଅଡିଓକ୍ୟାସେଟ୍ ଶୁଣି, ପୁଣି' ପଢ଼ିବାକୁ, ପୁଣି ଶୁଣିବାକୁ, ଯେଉଁମାନେ ଅପେକ୍ଷା କରି ରହିଥିଲେ, ସେମାନଙ୍କୁ – ଲୁନା, କୁନୁ, ବୁଢ଼ା, ଟିନା, ମିମି, ଦୀପ୍ତି, ଜୟ, ଲିପି, ଲିଟ୍ଲୁ, ଆହୁରି ଅନେକଙ୍କୁ ;

ଏକଦା ଅସମ୍ପୂର୍ଣ୍ଣ ଉପନ୍ୟାସଟିରେ ସମ୍ଭାବନା ଦେଖିଥିବା ପାଠକ – ପ୍ରଫେସର ଶିଶିର୍ କୁମାର ଘୋଷ (ଶାନ୍ତିନିକେତନ), ପ୍ରଫେସର ପ୍ରଫୁଲ୍ଲ କର (ବରୋଦା), ଟାଗୋର୍-ପ୍ରଫେସର ଶିଶିର୍ ଦାସ (ଦିଲ୍ଲୀ), ପ୍ରଫେସର ସର୍ବେଶ୍ୱର ଦାଶ, କବି ଦୁର୍ଗାମାଧବ ମିଶ୍ର, ନୃସିଂହ ରଥ, ବିଭୁ ପାଢ଼ୀ, ଭଗବାନ ଜୟସିଂହ, ନାଟ୍ୟକାର ରମେଶ ପାଣିଗ୍ରାହୀ ଓ ମନୋରଞ୍ଜନ ଦାସଙ୍କୁ ;

ବନ୍ଧୁ – କୋକିଲ୍, ସୁମିତ୍ର, ମତ୍‌ଲୁବ୍, ବିଦ୍ୟା, ପୂର୍ଣ୍ଣ, ଶିବ, ବିଶ୍ୱରଞ୍ଜନ, ରଥନାୟକ୍, ଶଶି, ସତ୍ୟେନ୍, ଦ୍ୱାରି, ଅଜିତ୍, ଲୋପାମୁଦ୍ରା, ଦୀନବନ୍ଧୁ, କବିତା, ଅନ୍ନପୂର୍ଣ୍ଣା, ଶିଖା, ଶାହାନାଜ୍, ଶାନ୍ତି, ବାଲୁ, ଯୋଗେଶ୍, ଜ୍ଞାନଦା, ସୁଧୀରା, ନଗେନ୍, ଟୁଟୁ, ମଞ୍ଜୁ, କାଳିଦାସ, ନୀମା, ଆରିୟାନା, ଅସୀମା, ରୁବି, ପତିତ, କୁନା, ରଜନୀ, ରବି, ମନୁ, ଅମରେଶଙ୍କୁ ;

'ସମାରୋହ'ରେ ସିରିଏଲ୍ ଆକାରରେ ପ୍ରକାଶ କରିଥିବାରୁ ଶ୍ରୀମତୀ ଶୈଳରାଣୀ ମିଶ୍ରଙ୍କୁ ;

ରଚନା ଓ ପ୍ରକାଶନାରେ ଆଶା ଓ ଆବଶ୍ୟକତାରୁ ଅଧିକ ଯତ୍ନ ନେଇଥିବାରୁ 'ପ୍ରାଚୀ ପ୍ରକାଶନ'ର ଅକ୍ଷୟ ଦାଶଙ୍କୁ;

ଏବଂ ଶେଷରେ ଅନେକ ଅସୁବିଧାକୁ ସୁବିଧା କରିଦେଇଥିବାରୁ କିଶୋର ତ୍ରିପାଠୀଙ୍କୁ ।

ଲେଖକ

## ପୂର୍ବାଭାସ

ଘଟଣା ଜୀବନରେ ଘଟିବା ସମୟରେ ଲେଖି ହୋଇଯାଏ ଆପେ ଆପେ ମନ ଭିତରେ, ସାଇତି ହୋଇ ରହେ ସେମିତି ସଜଡ଼ା ନ ହୋଇ – ଖଣ୍ଡ ଖଣ୍ଡ ଶବ୍ଦ ଓ ସଙ୍କେତ ଭିତରେ । ପରେ, ଜୀବନରେ ଯେତେବେଳେ ଆଗକୁ ଅନେଇବାର ସ୍ପୃହା କମିଯାଏ, ଆଗେଇ ଚାଲିବାରେ କ୍ଳାନ୍ତି ଆସେ, ସେତିକିବେଳେ ପଛକୁ ଅନେଇବାକୁ ଇଚ୍ଛା ହୁଏ ।

ଇଚ୍ଛା ହୁଏ – ପୁରୁଣା, ଅଖୋଜା, ଅବୁଝା ସ୍ମୃତିକୁ ସେହି ଖଣ୍ଡ ଖଣ୍ଡ ଶବ୍ଦ ଓ ସଙ୍କେତରୁ ବାହାର କରି ନୂଆ ଅର୍ଥ, ନୂଆ ସମ୍ଭାବନା ଦେବାପାଇଁ ।

ଜୀବନକୁ ବୁଝୁବୁଝୁ ବଞ୍ଚିହୁଏ, ନା ବଞ୍ଚୁବଞ୍ଚୁ ବୁଝିହୁଏ – ଜାଣିବାପାଇଁ ଇଚ୍ଛା ହୁଏ ।

ଏହି ଇଚ୍ଛାରୁ ଜନ୍ମ ନିଏ 'ବଞ୍ଚିବାର ଅନ୍ୟ ନାମ'...

ସାଧନ୍ ପରିଡା

## ୧

ଜୀବନକୁ ବୁଝିବାପାଇଁ ଆହୁରି ଏକ ଉଦ୍ୟମ, ବଞ୍ଚିବାଲାଗି ଆହୁରି ଏକ ଆକର୍ଷଣ ।

ଜୀବନ ଗୋଟିଏ, ଅଥଚ ସେଥିରେ ଏତେଗୁଡ଼ିଏ ଘଟଣା ! ଘଟଣା ଭିତରେ ପୁଣି କିଛି ଘଟଣା ଏତେ ସୁନ୍ଦର – ଷ୍ଟୁଡିଓ ଭିତରେ ଉଠିଥିବା ଫଟୋଗ୍ରାଫ୍ ପରି । ଆଉ କିଛି ଘଟଣା କିନ୍ତୁ ତିକ୍ତ, ଭୟଙ୍କର – ଷ୍ଟୁଡିଓ ବାହାରେ ଉଠିଥିବା ଓଭର୍ ବା ଅଣ୍ଡର୍-ଏକ୍ସପୋଜ୍‌ଡ୍ ଫଟୋଗ୍ରାଫ୍ ପରି । ଭାବିଲେ ସବୁ କେମିତି ଓଲଟ ପାଲଟ ହୋଇଯାଏ – ଜୀବନର ସଂଜ୍ଞା ଭିତରେ, ଘଟଣାଗୁଡ଼ିକର ସ୍ରୋତ ଭିତରେ, ବଞ୍ଚିବାର ଆବଶ୍ୟକତା ଓ ଯନ୍ତ୍ରଣା ଭିତରେ ।

ମୁଁ ମୋ ସତ୍ତା ହଜାଇ ବସେ । 'ମୁଁ' ଓ 'ସେ' ଭିତରେ ହୁଏ ସଂଘର୍ଷ, ଦ୍ୱନ୍ଦ୍ୱ – 'ସେ' 'ମୁଁ' ହୋଇଯାଏ, 'ମୁଁ' 'ସେ' ହୋଇଯାଏ, ତାପରେ 'ସେ' ରୁ 'ସେମାନେ' ।

## ୨

ସେ ଠିକ୍ କେମିତି ମୁଁ ଜାଣେନା । ଫଟୋରେ ଦେଖିଛି, ଆଉ ଦେଖିଛି ଯେତେବେଳେ ସେ ବିଛଣାରେ ଲମ୍ବା ହୋଇ ଶୋଇଥିଲା । ମୁଁ ଅନେକ ଛୋଟ ଥିଲି । କାନ୍ଦି କାନ୍ଦି ମାଗୁଥିଲି କ'ଣ ଗୋଟାଏ ଖାଇବାକୁ । ଭୋକ ଠିକ୍ ନଥିଲା ବୋଧେ । କାନ୍ଦୁଥିଲି ସବୁ ପିଲା ଯେଉଁଥିପାଇଁ, ଯେପରି କାନ୍ଦନ୍ତି – ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ।

ଲମ୍ବା ବାଳ, ଖୁବ୍ ଲମ୍ବା । ବୟସ ତିରିଶ ଖଣ୍ଡେ ହେବ । ସୁନ୍ଦର ସ୍ୱାସ୍ଥ୍ୟ । ନୀରବ, ନିଷ୍ପନ୍ଦ ଶରୀରଟିଏ ନେଇ ଶୋଇ ରହିଛି ସେ । ସେ ମୋର ମା', ଯାହାର ଆବଶ୍ୟକତା ସେତେବେଳେ କିଛି ନିତିଦିନିଆ ଅଭାବବୋଧରେ ମୁଁ ବୁଝିପାରୁଥିଲି ।

ମା'କୁ ହରାଇ ମୋ ଜୀବନ ଭିନ୍ନ ଗତି ନେଲା । ବାପା କୁଆଡ଼େ ପ୍ରଥମେ ପ୍ରଥମେ ରାଜି ହେଉ ନଥିଲେ, କିନ୍ତୁ ପରେ ଆଉଥରେ ବାହାହେଲେ । ମୁଁ ଦୂରେଇଗଲି ଏକ ଅର୍ଦ୍ଧ–ପରିଚିତ ପୃଥିବୀ ଓ ଜୀବନରୁ । ଜଣକର ଅଭାବ ଜାଣି ହୁଏନା ସହଜରେ, ବୁଝି ହୁଏନା ହଠାତ୍ । ସେତେବେଳେ ମୁଁ ବହୁତ ଛୋଟ ଥିଲି । ବାପା କହନ୍ତି ତିନିବର୍ଷର । ମୋର ବଡ଼ ଭଉଣୀ – ସେ କହେ, କେତେବେଳେ ଦୁଇ ବର୍ଷର, କେତେବେଳେ ବର୍ଷକର... ଆଉ ରାଗିଯାଇଥିଲେ କହେ ମା' ମଲା ବେଳକୁ ମୁଁ କୁଆଡ଼େ ମୋଟେ ଜନ୍ମ ହୋଇ ନଥିଲି ।

ହସେ ମୁଁ । ଅଜାଣତରେ ମିଛଟିଏ କହିଦେଲା ସେ, କିନ୍ତୁ ଶୁଣିବାକୁ ଭଲ ଲାଗେ । ଲାଗୁଥିଲା, ଛୋଟବେଳେ ।

## ୩

ମୋର ସେତେବେଳେ ବୟସ ଦଶ । ଠିକ୍ ମନେ ଅଛି – ରେହମାନ୍, ସ୍କୁଲ ସହପାଠୀ, ଅବ୍‌ଦୁଲ୍ ରେହମାନ୍ । ଭଲ ଫୁଟ୍‌ବଲ୍ ଖେଳେ । ଗୋଡ଼ରେ ବଲ୍ ବାଜିଲେ, ଗୋଲ୍ ହେଲା ନିଶ୍ଚିତ ଭାବେ । ଅବଦୁଲ୍ କିନ୍ତୁ ପାଠରେ ଗଧ । ବିଭିନ୍ନ କ୍ଲାସରେ ବିଭିନ୍ନ ବିଷୟରେ ଅବ୍‌ଷ୍ଟାକ୍ଲ୍ ରେସ୍ କରି କରି ରହିଯାଏ । ସେ ପ୍ରାୟ ସମସ୍ତଙ୍କର ସହପାଠୀ । ମଜାରେ ମୁଁ ଥରେ କହୁ କହୁ କହିପକେଇଲି – ସେ କୁଆଡ଼େ ଆମ ହେଡ୍‌ମାଷ୍ଟରଙ୍କ ସହପାଠୀ ଥିଲା । ରେହମାନ୍ ରାଗି ମୋ' ସହ କଥାବାର୍ତ୍ତା ବନ୍ଦ କରିଦେଇଥିଲା – ଦୁଇ ମାସ ।

ସେଦିନ ଭୀଷଣ ବର୍ଷା । ତିନି ଦିନ ତିନି ରାତି କ୍ରମାଗତ ବର୍ଷା ହେଲା । ସ୍କୁଲରେ ହେଡ୍‌ମାଷ୍ଟରଙ୍କ ଅଫିସ୍ କବାଟରେ ସକାଳୁ ସକାଳୁ କିଏ ଜଣେ ଲେଖିଦେଇଥିଲା – 'ପାଗ ଖରାପ ଥିବାରୁ ଆଜି ସ୍କୁଲ ଛୁଟି' । ପିଲାସବୁ ଛୁ । ହେଡ୍‌ମାଷ୍ଟର ଦଶଟା ବେଳେ ଆସି ପିଅନ୍‌କୁ ପଚାରିଲେ 'ଏଇଟା କା' କାମ ?' ଇତ୍ୟାଦି, ଇତ୍ୟାଦି । ବର୍ଷେପରେ ଅବ୍‌ଦୁଲ୍ ମୋତେ ସତ କଥା କହିଲା । ତିରିଶ ବର୍ଷ ହେଲା ଅବ୍‌ଦୁଲ୍ ସହ ଦେଖା ହୋଇନି । ଶୁଣିଛି ସେ ସ୍କୁଟର୍ ମେକାନିକ୍ ଭାବେ ସୁନାବେଡ଼ାରେ ବେଶ୍ ଭଲ ନାଁ କରିଛି । ପୁରୁଣା ପାର୍ଟ୍ ସବୁ ଏ ପାଖ ସେ ପାଖ କରି ଗାଡ଼ି ଠିକ୍ କରିଦିଏ, ବେଶୀ ଖର୍ଚ୍ଚ ଲାଗେନି । ତେଣୁ, ତା ଦୋକାନରେ ସବୁବେଳେ ଭିଡ଼ ।

ଅବ୍‌ଦୁଲ୍‌ର ତେଇଶି ଭାଇ ଓ ଜଣେ ଭଉଣୀ ଥିଲେ । ପାଞ୍ଚଜଣ ଭାଇ ବିଭିନ୍ନ କାରଣରୁ, ବିଭିନ୍ନ ସମୟରେ ମରିଯାଇଥିଲେ । ଅବ୍‌ଦୁଲ୍ କହେ କୁଆଡ଼େ ଯୁଦ୍ଧରେ ।

କୋଉ ଯୁଦ୍ଧରେ କେଜାଣି !

ଉଉଣୀଟି ବଡ଼ ଗେହ୍ଲାରେ ବଢ଼ି ଆସିଥିଲା – ଫାରା – ମୁଁ ତାକୁ କେବେ ଦେଖି ନାହିଁ । ଶୁଣିଥିଲି ତା'ର ବାହାଘର ବିଜୟନଗରର କୌଣସି ଖାନ୍‌ଦାନୀ ମୁସଲ୍‌ମାନ୍ ପରିବାରରେ ହୋଇଥିଲା । ଅବ୍‌ଦୁଲ୍‌ର ବାପା ଜୟପୁର ମହାରାଜା, ବିକ୍ରମକେଶରୀ ବର୍ମାଙ୍କ ରାଜପ୍ରାସାଦରେ କାର୍ଯ୍ୟ କରୁଥିଲେ । ପୋଷ୍ଟ୍‌ଅଫିସ୍ ଯିବା ରାସ୍ତାରେ ମୁଁ ସବୁବେଳେ ତାଙ୍କୁ ଦେଖେ – ଗୋଟେ ଲମ୍ବା ଆର୍ମଚେୟାର୍‌ରେ ବସି ନିଶ ମୋଡୁଥାନ୍ତି, ଘିଅଲଗା ମୋଟା ମୋଟା ନିଶ । ବୋଧେ ଅତୀତର ଘଟଣାବହୁଳ ମୁହୂର୍ତ୍ତ କେତୋଟିକୁ ପୁନର୍ଜୀବିତ କରୁଥାନ୍ତି ।

ମୋତେ ଡର ମାଡ଼େ । ଇଚ୍ଛାଥିଲେ ବି ପଚାରି ପାରେନି – ଘରେ ଅବ୍‌ଦୁଲ୍ ଅଛି କି ନା ।

ଥରେ ବହୁତ ସାହସ କରି ପଚାରିଥିଲି । ସେ କଣ ମୋ ଆଡ଼କୁ ଅନେଇଲେ ? ମୁଁ ଡରି, କିଛି ନ ପଚାରିଲାପରି ପଳେଇଗଲି । ତା'ପରେ ମୋର କିଛି ମନେନାହିଁ ।

ଶନିବାର ବା ରବିବାର ଅବ୍‌ଦୁଲ୍ ଘରେ ମାଂସ ବିରିୟାନି ହୁଏ । ସେ ବେଶ୍ କିଛି ଖବରକାଗଜରେ ପ୍ୟାକିଂ କରି ଆମ ସ୍କୁଲ ଭିତରକୁ ଲୁଚାଇ ନେଇ ଆସେ । କେତେ ରାତି ଏମିତି କଟିଛି ଏକାଠି – ମୁଁ, ଅବ୍‌ଦୁଲ୍ ଓ ବିରିୟାନି ।

ଘରକୁ ଫେରିଲାବେଳେ ବାପା ପଚାରନ୍ତି – 'ଏତେ ଡେରି ?'

ମୁଁ ତଳକୁ ମୁହଁକରି କବାଟ ପାଖରେ ଛିଡ଼ାହୁଏ ।

ସେ କହନ୍ତି –'ହଉ ଭିତରକୁ ଆ । ଆଉ ଏମିତି ଡେରି କରିବୁନି । ଖାଇନେ, ରୁଟି ଥଣ୍ଡା ହୋଇଯିବଣି ।'

## ୪

ବାପା ଥିଲେ ଜଣେ ପୋଲିସ୍ ଅଫିସର୍ । କିନ୍ତୁ କବିତା ଲେଖନ୍ତି – ଓଡ଼ିଆରେ, ଇଂରାଜୀରେ । ଜେମ୍‌ସ୍ ଜଏସ୍‌ଙ୍କ 'ୟୁଲିସେଜ୍' ପଢୁଥିଲେ । ନେହେରୁଙ୍କ ଆତ୍ମଜୀବନୀ, ଚର୍ଚ୍ଚିଲ୍‌ଙ୍କ ବିଶ୍ୱଯୁଦ୍ଧର ଇତିହାସ, ଗର୍କିଙ୍କ ଗଳ୍ପ, ରାଧାନାଥ, ମଧୁସୂଦନଙ୍କ ଓଡ଼ିଆ କବିତା ମନରୁ ନିର୍ଭୁଲ ଆବୃତ୍ତି କରିପାରୁଥିଲେ । ଘରେ ଆମର ଚେମ୍ବର୍ସ ଡିକ୍ସନାରିଟିଏ ଥିଲା । ସେ ରେଭେନ୍‌ସା କଲେଜରେ ପଢ଼ିଲାବେଳେ ପୁରସ୍କାର ପାଇଥିଲେ ।

ସନ୍ଧ୍ୟାବେଳେ ଘରେ ଆମର ସବୁବେଳେ ଭିଡ଼ । ଆସନ୍ତି ସହରର କିଛି ଓକିଲ, ରାଜନେତା ଓ କଲେଜର କେତେଜଣ ଅଧ୍ୟାପକ । ରବିବାର ଦିନ – ମୁଁ ଯଦି ବାହାରକୁ ପଳାଇ ନଥାଏ, ତା ହେଲେ ମୋତେ ବଡ଼ ପାଟିରେ 'ଷ୍ଟେଟ୍‌ସ୍‌ମ୍ୟାନ୍' ଖବରକାଗଜର

ସମ୍ପାଦକୀୟ ଓ କରଞ୍ଜିଆଙ୍କ ସମ୍ପାଦିତ 'ବ୍ଲିଜ୍' ପଢ଼ିବାକୁ ପଡ଼େ । ପଢ଼ିଲାବେଳେ ପ୍ରଶଂସା ପରେ ପ୍ରଶଂସା । ବାପା ତାଙ୍କ ବନ୍ଧୁଙ୍କୁ କହନ୍ତି – 'ସେ ପରା ସବୁବେଳେ ରେଡ଼ିଓରେ ବି.ବି.ସି. ଷ୍ଟେସନ୍ ଶୁଣେ, ତେଣୁ ତାର ଇଂରାଜୀ ଉଚ୍ଚାରଣ ନେଟିଭ୍ ସ୍ପିକରଙ୍କ ଭଳି ହୋଇଗଲାଣି' । ଯେବେ ଜନ୍ମଦିନ ଆସେ, ବାପା 'ସାମ୍‌ସନ୍‌ସ୍' ରେଡ଼ିମେଡ୍ ଦୋକାନ୍‌କୁ ମୋତେ ନେଇଯାଆନ୍ତି । ମ୍ୟାନେଜର୍ କେ.ସି. ମିଶ୍ର କୁଆଡ଼େ ତାଙ୍କ ପିଲାଦିନର ସାଙ୍ଗ । ମୋ ପାଇଁ ଗୋଟାଏ ସାଇଜ୍ ବଡ଼ ପ୍ୟାଣ୍ଟ୍ ସାର୍ଟ୍ କିଣାଯାଏ, ପୁଣି ମାଟିଆ ବା ଚକୋଲେଟ୍ ରଙ୍ଗର । ମୁଁ ଗୁଁ ଗାଁ କଲାବେଳେ, ବାପା କହନ୍ତି – 'ଓହୋ, ଏ ରଂଗ ଭଲ, ମଳିହେଲେ ଜଣା ପଡ଼ିବନି । ଆଉ ସାଇଜ୍ ? ଗୋଟେ ସାଇଜ୍ ବଡ଼ ଥାଉ, ଧୋଇଦେଲେ ପରେ କମିଯିବନି ?'

ମୁଁ ପ୍ୟାଣ୍ଟ୍ ସାର୍ଟ୍ ଫୋଲ୍‌ଡ୍ କରି ପିନ୍ଧେ । ଦୁଇ ମାସ, ଚାରି ମାସ, ମନଦେଇ ଅପେକ୍ଷା କରେ, କେବେ ସେଗୁଡ଼ା ମୋ ଠିକ୍ ସାଇଜ୍‌କୁ ଆସିବ ।

ମୋର ମନେପଡୁନି, ସେଭଳି ସୁଯୋଗ କେବେ ଆସିଥିଲା ବୋଲି ।

୫

ମୁଁ କ୍ଲାସରେ 'ଭଲପିଲା' ତାଲିକାରେ ଥିଲି, କାରଣ କ୍ଲାସଟିଚର୍ ରତନ ରାଉତରାୟ ତିନିଜଣଙ୍କୁ କ୍ଲାସ ମନିଟର୍ କରିଥିଲେ – ସେମାନଙ୍କ ମଧ୍ୟରୁ ମୁଁ ଜଣେ ।

କ୍ଷମା – ପୁରା ନାଁ ମନେ ପଡୁନି – ସେ ଥିଲା ଜଣେ ମନିଟର୍ । ତିନିଜଣ ଝିଅ ଆମ କ୍ଲାସରେ ପଢୁଥିଲେ । ସେମାନଙ୍କ ଭିତରେ କ୍ଷମା ଥିଲା ସବୁଠୁ ବଡ଼, ଶାଢ଼ି ପିନ୍ଧୁଥିଲା । ପଢ଼ାପଢ଼ିରେ ମାନ୍ଦା – ବୋଧହୁଏ ଦେଖିଲାଭଳି ଝିଅଟିଏ ହୋଇଥିଲା ବୋଲି ବା ରତନ ସାର୍‌ଙ୍କ ନୀରବ ସଂକେତ ବୁଝିଲାପରି ବୟସ ଥିଲା କ୍ଷମାର – ତେଣୁ ସେ ମନିଟର୍ ହୋଇଥିଲା ! ବର୍ଷେ ଭିତରେ ମୋର ଯା ମନେ ପଡୁଛି ସେ ଦୁଇଥର ମନିଟର୍ ଦାୟିତ୍ୱରେ ଥିଲା । ଆଉ ସେତେବେଳେ କ୍ଲାସରେ ଏକ ଅସ୍ୱାଭାବିକ ନୀରବତା, ଆବଶ୍ୟକତାରୁ ଅଧିକ ନୀରବତା ।

ହଠାତ୍ ଦିନେ ଆମେ ଶୁଣିଲୁ – କ୍ଷମା କୁଆଡ଼େ ଚାଲିଯାଇଛି, ସ୍କୁଲ ଆଉ ଆସୁନି । ମୁଁ ଭାବିଲି – ବାହା ହୋଇଗଲା ବୋଧେ !

୬

ପାହାଡ଼ଟିର ନାଁ 'ନାକ୍‌ଟିଡଂଗର' । ବଡ଼ ରାସ୍ତା ପାଖରେ -- ଲାଗେ ପାଖରେ, କିନ୍ତୁ ପାଖକୁ ଗଲାପରେ ବହୁତ ବାଟ – ପାହାଡ଼ଟି ଦୂରେଇ ଦୂରେଇ ଯାଏ । ଛୁଟି ଦିନରେ

ବା ସ୍କୁଲରେ ଶୀତଦିନେ କ୍ଲାସ ନଥିବା ସମୟରେ ମୁଁ ସେଠିକୁ ଚାଲିଯାଏ – ପାହାଡ଼ ଉପରକୁ, ଏକ୍‌ଦମ୍ ଉପରକୁ । ବହି ଖଣ୍ଡେ ହାତରେ ଥାଏ – ବେଳେ ବେଳେ ଯୋଗେନ୍ଦ୍ର ମହାନ୍ତିଙ୍କ 'ଦସ୍ୟୁନାୟିକା ମୀରା', ଦ୍ୱାରିକା ନାଥ ଦାଶଙ୍କ 'ବିଲାତ ଅଭିଯାନରେ ରବୀନ୍' ବା ଗୋଦାବରୀଶ ମହାପାତ୍ରଙ୍କ 'ରକ୍ତପାତ', ରବୀନ୍ଦ୍ରନାଥଙ୍କ 'କାବୁଲିବାଲା' ବା ସୋମରସେଟ୍ ମମ୍‌ଙ୍କ ଗଳ୍ପସଂଗ୍ରହ । ପଢ଼ିବାକୁ ଭଲ ଲାଗେ, ପଢ଼ିସାରି ଭାବିବାକୁ, ପଢ଼ିବା ଭିତରେ ଭାବିବାକୁ । ସାଙ୍ଗରେ ଥାଏ ସୁପ୍ରିୟ । ସୁପ୍ରିୟ କିନ୍ତୁ ଟିକେ କେମ୍ପା – ବାଁ ହାତଟା ପିଲାଦିନୁଁ ପ୍ରାୟ ନଷ୍ଟ ହୋଇଯାଇଥିଲା । ସୁପ୍ରିୟ ବାପା ଗୋଟେ ମାଧ୍ୟମିକ ସ୍କୁଲର ଭୂଗୋଳ ଶିକ୍ଷକ । ପ୍ରଥମ ସ୍ତ୍ରୀ ମରିଯିବା ପରେ ସେ ପୁଣିଥରେ ବାହା ହେଲେ । ତାପରଠୁଁ ଆରମ୍ଭ ହେଲା ସୁପ୍ରିୟ ଉପରେ ନିର୍ଯ୍ୟାତନା । ଅନେକ ଦିନ ସେ ନ ଖାଇ ନ ପିଇ ପଡ଼ି ରହିଥାଏ । ଆମ କ୍ଲାସରେ ପଢ଼େ । ମୁଁ ତାକୁ ଆମ ଘରକୁ ଆସିବାକୁ କହିଲି । ବାପା ବି ରାଜି ହୋଇଗଲେ । ସେ ପ୍ରାୟ ଆମ ଘରେ ରହେ । ବାପାଙ୍କ ଅଫିସ୍ ଟେବୁଲ୍ ତଳେ ବା ବେଂଚ୍ ଉପରେ ଶୋଇପଡ଼େ । ମୁଁ ଯାହା ପଢ଼େ ତାକୁ ଆଗ କହେ । ବେଳେ ବେଳେ ବଡ଼ପାଟିରେ ପଢ଼େ । ବଡ଼ପାଟିରେ ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି' ଆବୃତ୍ତି କଲାବେଳେ ସୁପ୍ରିୟ ତାର ଦୁର୍ବଳ ଶରୀରକୁ ନେଇ ବଡ଼ ବଡ଼ ଆଖି ମେଲେଇ ଶୁଣୁଥାଏ । ବେଳେ ବେଳେ ନିଦ ହୋଇଯାଏ ତାକୁ, ମୁଁ ଦେଖେ, କିନ୍ତୁ ଆବୃତ୍ତି କରିଚାଲେ ସତେ ଯେମିତି ସୁପ୍ରିୟ ଶୁଣିଚାଲିଛି ।

ସେଦିନ ଅମାବାସ୍ୟା ରାତି । ନାକ୍‌ଟିଙ୍ଗଂର ପାହାଡ଼ରୁ ଓହ୍ଲେଇ ଆସି ଆମେଦୁହେଁ ପାଖରେ ଏକ ମଶାଣିରେ ପହଞ୍ଚିଲୁ । ମୁଁ ସୁପ୍ରିୟକୁ କହିଲି – 'ଚାଲ୍ ଆଜି ରାତିରେ ଏଠି ରହିଯିବା । ଭୂତର ଗପ ତ ଏତେ ଶୁଣିଛେ, ଦେଖିବା ସତରେ ଭୂତ ଅଛି କି ନା ?'

'ମଉସା ?' ସୁପ୍ରିୟ ପାଟିରୁ ବାହାରି ପଡ଼ିଲା ।

ମୁଁ ପ୍ରକୃତିସ୍ଥ ହେଲି – 'ହଁ ସତେ ତ ! ଘରକୁ ଫେରିବାକୁ ପଡ଼ିବ ।' ନ ହେଲେ ବାପା ଖୋଜିବେ, ବିରକ୍ତ ହେବେ । ସୁପ୍ରିୟ ଯୋଗୁଁ ମୁଁ ଘରକୁ ଫେରିଲିନି ବୋଲି କାଳେ ଭାବିବେ ଓ ସୁପ୍ରିୟକୁ ଆମ ଘରୁ ବାହାରି ଯିବାକୁ କହିବେ – ଏଇ ଭୟରେ ସ୍ଥିର କଲି, ନା ବରଂ ଘରକୁ ଫେରିଯିବା । ଆଉଦିନେ ଛୁଟିଦିନ ଦେଖି ଖରାବେଳେ ଆସି ତିନି ଚାରି ଘଣ୍ଟା ଏଇଠି କଟେଇଦେବା । କିନ୍ତୁ ଖରାବେଳେ କ'ଣ ଭୂତ... ?

## ୭

ତିନି ହଜାର ଫୁଟ ପାହାଡ଼ ଉପରେ ବସ୍ ଚାଲିଛି । ହାତ ବାହାରକୁ ବଢ଼ାଇ ଭାବୁଥିଲି – ଆଃ, ଆକାଶଟା ଏତେ ପାଖରେ, ଗଛ ଡାଳରେ ବାଜିଲାପରି ଲାଗୁଛି । ଦେବଦେବୀମାନେ ତା ହେଲେ ପାଖରେ ଥିବେ, ଶୁଣିଲା ଭଳି ଦୂରତାରେ ।

ଅବିଚଳିତ ଦୃଷ୍ଟି ମୋର ଥିଲା ଆଗକୁ, ରାସ୍ତା ଆଗକୁ, ବସ୍ ଆଗକୁ ଘୁରି ଘୁରି ମାଡ଼ି ଚାଲୁଥିଲା । ତଳକୁ ଅନେଇବାକୁ ଡର ଲାଗୁଥିଲା । ମୁଁ ମୋର ପରିଚିତ ସହର ଛାଡ଼ି ଆଉ ଏକ ନୂଆ ସହରକୁ ଯାଉଥିଲି ।

ମ୍ୟାଟ୍ରିକ୍ ପରୀକ୍ଷା ସରିଯାଇଥିଲା । ଫଳ ବାହାରିବାକୁ ଦି ମାସ ଲାଗିବ । ବାପା କହିଲେ – 'ଯା ନୂଆ ଜାଗା ବୁଲିଆ' । ପଡ଼ୋଶୀ ଅଧ୍ୟାପକ ପ୍ରବୀର ରାୟ, ପତ୍ନୀ ନିଶିଥିନୀ ରାୟ ଓ ତାଙ୍କ ଦୁଇପୁଅଙ୍କ ସାଙ୍ଗରେ ମୁଁ ଯାଉଥିଲି ଚିଲିକା କୂଳରେ ଥିବା ଗା'ଟିକୁ । ବସ୍‌ରେ କେହି କଥାବାର୍ତ୍ତା କରୁ ନଥିଲେ । ସମସ୍ତେ ଯେମିତି ଭିନ୍ନ ଭିନ୍ନ ଦ୍ୱୀପର ଜଣେ ଜଣେ ନିର୍ବାସିତ ନାଗରିକ । ମୋ ମନରେ କ୍ରମାଗତ ଉଙ୍କି ମାରୁଥିଲା ପଛରେ ଛାଡ଼ିଆସିଥିବା ସ୍ମୃତି – ଅବ୍‌ଦୁଲ୍, କ୍ଷମା, ସୁପ୍ରିୟ, ରତନ୍ ସାର୍, ଫୁଟବଲ୍, ବିରିୟାନି, ମଶାଣି... । ଭାବୁଥିଲି ପନ୍ଦର ବର୍ଷ ପରେ, କୋଡ଼ିଏ ବର୍ଷ ପରେ କେଉଁ ପୃଥିବୀର ବାସିନ୍ଦା ହେବେ ଅବ୍‌ଦୁଲ୍, ସୁପ୍ରିୟ, କ୍ଷମା ? ମୁଁ ?

ଏକ ସ୍ୱତନ୍ତ୍ର ସତ୍ତା ନେଇ, ଏକ ଖିଆଲି ଭାବନା ନେଇ କ'ଣ କରିବି ମୁଁ ଜୀବନରେ ?

ସମସ୍ତଙ୍କ ପରି କ'ଣ ମୁଁ କଥା କହିବି, ଡରିବି, ଲାଜେଇବି, ଅପେକ୍ଷା କରିବି ?

ସମସ୍ତଙ୍କ ପରି ହନ୍ତସନ୍ତ ହେବି ସତ ଓ ମିଛର ବଢ଼ିରେ ?

ଚାରିଆଡ଼େ ଶୂନ୍ୟତା । ବସ୍‌ର ଯାନ୍ତ୍ରିକ ଶବ୍ଦ ପୂରଣ କରିପାରୁ ନଥାଏ ସେ ଶୂନ୍ୟତା । ମୁଁ ପୁଣି ଶୁଣିବାକୁ ଚେଷ୍ଟା କରୁଥାଏ – ଆଉ କିଛି ଶବ୍ଦ ହେଉଛି କି ? କେହି କିଛି କହୁଛନ୍ତି କି ? ପଛରୁ ମୋ ନାଁ କେହି ପଚାରିଲେ କି ?

ନା ତ ! ଖାଲି ମୋର କଳ୍ପନା । କେହି କିଛି କହି ନାହାନ୍ତି । କେହି କିଛି ପଚାରି ନାହାନ୍ତି । ମୋରି ଭିତରେ ମୁଁ ଆଉ ରହିପାରୁନି । ଆଗକୁ ଅନାଇଲି । ଆହୁରି ଆଗକୁ, ଆହୁରି ଆଗକୁ ଅନାଇଲି, ବାଁ, ଡାହାଣ ଦେଖିଲି... ପାଖରେ ଦି ତିନିଜଣ ଘୁମେଇଲେଣି । ମୁଁ ବି ଘୁମେଇ ପଡ଼ିବି ଭାବିଲି । କିନ୍ତୁ ଆଖି ବନ୍ଦକଲେ ଜଗତ ଅଧିକ ଦୃଶ୍ୟମାନ ହୁଏ, ଆହୁରି ବେଶି ଦେଖିହୁଏ । ନା, ଆଖି ବରଂ ଖୋଲା ଥାଉ, କଳ୍ପନା ସୀମା ଭିତରେ ରହିବ ।

ଆଗକୁ ପୁଣି ଅନାଇଲି । ଆଗରେ ମୋର ଭବିଷ୍ୟତ – ଅସ୍ପଷ୍ଟ, ଅସଂପୂର୍ଣ୍ଣ । ମୁଁ କ'ଣ ପଢ଼ିବି ? କ'ଣ ହେବି ? କ'ଣ କରିବି ? ସମସ୍ତଙ୍କ ଭଳି ହେବି କି ? ହସିଲି ଟିକେ, ନା, ବୟସ ମାତ୍ର ଚଉଦ । ଏତେଗୁଡ଼ାଏ ଭାବିବା କ'ଣ ଦରକାର ? କଲେଜ ଯାଏ, ତା'ପରେ ଜୀବନର ଚିତ୍ର ଆଉ ଟିକେ ସ୍ପଷ୍ଟ ହୋଇଯିବ । ତାପରେ ହୁଏତ ଚିନ୍ତା କରିବି । ସ୍ଥିର କରିବି କ'ଣ କରାଯିବା କଥା । ନିଜକୁ ତ ଚିହ୍ନିବାକୁ ହେବ ପ୍ରଥମେ ।

କିଏ ମୁଁ ? ପାରିବାର କ୍ଷମତା କେତେ ମୋର ? ଉଦ୍ଦେଶ୍ୟ କ'ଣ ? କ'ଣ କଲେ ମୁଁ ଖୁସି ହେବି ? ବଞ୍ଚିବାର ଅର୍ଥ ? ମଣିଷ କାହିଁକି ବଞ୍ଚିଥାଏ ? ନିଜ ପାଇଁ ନା ଅନ୍ୟପାଇଁ ? ବଞ୍ଚିବାପାଇଁ କ'ଣ ଗୋଟେ ଶୃଙ୍ଖଳିତ ଚିନ୍ତାଧାରା ବା ଆକ୍ସନ୍ ପ୍ଲାନ୍ ଦରକାର ? ନା ଅନ୍ୟମନସ୍କ ରହି ବଞ୍ଚିହୁଏ ?

୮

ଗାଁ'ଟି ସବୁ ଗାଁ ଭଳି । ନଡ଼ିଆଗଛ... ଧାଡ଼ି ଧାଡ଼ି ନଡ଼ିଆଗଛ । ପୋଖରୀ ପରେ ପୋଖରୀ । ଗାଁ ଖଞ୍ଜା ସବୁ ଯେମିତି ଖଞ୍ଜା ହୋଇଛି ଜଣେ ଅଦୃଶ୍ୟ ଶିଳ୍ପୀର ନିର୍ଦ୍ଦେଶ ଅନୁସାରେ । ଜଣକୁ ଅନେଇଲେ ଅନେକ ଦେଖାଯା'ନ୍ତି । ଚିଲିକା କୂଳରେ ଗାଁ ଟି । ପୋଷ୍ଟ ଅଫିସ୍‌ଟିଏ, ସ୍କୁଲଟିଏ ଅଛି । ଯେଉଁ ପରିବାରବର୍ଗଙ୍କ ସହ ଆମେ ରହିଲୁ ସେମାନେ ଏତେ ଜଣ ଯେ ମୁଁ ଗଣି ପାରିଲି ନାହିଁ । ବଡ଼ ହଲ୍‌ଭଳି ଘର ଭିତରେ ଜାଗାଟି, ସେଇଠି ଚା' ଖିଆ ହୁଏ, ଜଳଖିଆ, ଲଞ୍ଚ୍, ଡିନର୍ ସବୁ ।

ମୋ ବୟସର ଥିଲେ ଦୁଇଜଣ – ଶରତ ଓ ସମୀକ୍ଷା । ଖୁବ୍ ମେଳାପି – ଦୁହେଁ । ଶରତ ମେଡ଼ିକାଲ୍ କଲେଜ ଛାତ୍ର, ମୋ ଠୁଁ ବି ତିନିବର୍ଷ ବଡ଼ ହେବ ବୋଧେ । ଶରତ ସିଗାରେଟ୍ ଖାଇପାରେ । ସମୀକ୍ଷା କିନ୍ତୁ, ଗାର୍ଲ୍‌ସ୍କୁଲ୍‌ରେ ଦଶମରେ ପଢୁଥାଏ । ଏମାନେ ନିଶି ମାଉସୀଙ୍କ ଛୋଟ ଭାଇ, ଭଉଣୀ ।

ସମୀକ୍ଷା କହିଲା – 'ଚାଲ ଚିଲିକାକୂଳକୁ ଯିବା' ।

ଶରତ କହିଲା – 'ନା, ଚାଲ ବରଂ ମାମୁଁ ବା ଭଣଜା ପାହାଡ଼ ଉପରକୁ ଯିବା' ।

ମୁଁ ଅବାକ୍ ହେଲି । ଭଉଣୀ ତଳକୁ ପାଣି ଆଡ଼କୁ ଯିବାକୁ ଚାହୁଁଛି, ଭାଇ ଉପରକୁ, ପାହାଡ଼କୁ, ଆକାଶ ଆଡ଼େ ଯିବାକୁ ଚାହୁଁଛି ।

ମୋର ଇଚ୍ଛା ହେଲା ଉଭୟ ଆଡ଼େ ଯିବାକୁ – ଏକା ସମୟରେ । କିନ୍ତୁ କହିଲି – 'ଗୋଟେ କାମ କରିବା । ଆଜି ତ ବେଳ ଗଡ଼ି ଗଲାଣି, ଚିଲିକା ଆଡ଼େ ଯିବା । କାଲି ଦିନରେ ବ୍ରେକ୍‌ଫାଷ୍ଟ୍ ପରେ ପାହାଡ଼ ଉପରେ ଚଢ଼ିବା ।'

ଦୁହେଁ ରାଜି ହୋଇଗଲେ ।

ଶରତ ସବୁବେଳେ ଗମ୍ଭୀର, ମୁଣ୍ଡବାଳ ସବୁବେଳେ ସଜଡ଼ା ହୋଇଥାଏ, ଉଇଗ୍ ପିନ୍ଧିଲାପରି ମନେହୁଏ । ପାଇଜାମା ସାଙ୍ଗରେ ଗୋଟେ ଚକୋଲେଟ୍ ରଙ୍ଗର ଟି ସାର୍ଟ୍ – ସାବନା ରଙ୍ଗର ଶରୀରକୁ ଭଲ ମାନୁଥିଲା । ବହୁତ ବଡ଼ ପିଲାପରି କଥାବାର୍ତ୍ତା କରେ ।

ସମୀକ୍ଷା କିନ୍ତୁ ମଝି ପୋଖରୀର ପ୍ରଥମ କଇଁ ଫୁଲଟିପରି । ସ୍ୱଚ୍ଛ ସୂର୍ଯ୍ୟାସ୍ତର ରଙ୍ଗ ତା' ଶରୀରର । ସବୁବେଳେ ହସ ହସ ମୁହଁ – ଏତେ ସୁନ୍ଦର ଖୁସିବାସିଆ ଝିଅଟିଏ ମୁଁ ଆଗରୁ କେବେ ଦେଖି ନଥିଲି । ଗୁଡ଼ାଏ ଏପାଖ ସେପାଖ ପ୍ରଶ୍ନ କରେ, ଆଉ କିଛି ଉତ୍ତର ଦେବା ଆଗରୁ ହସି ପକାଏ । ହସେ ମାନେ, ଅସରନ୍ତି ହସ । ଭଲ ଲାଗେ । ତେବେ ଦଶ ପନ୍ଦର ମିନିଟ୍‌ରେ ସମୀକ୍ଷାର ପ୍ରଶ୍ନ-ବ୍ୟାଙ୍କ ଖତମ୍ । ମୁଁ ବି ସେଇ ସୁଯୋଗ ଅପେକ୍ଷାରେ ଥିଲି ।

ପଚାରିଲି – 'ସମୀକ୍ଷା ତୁମର ଖରାପ ନାମଟେ ଥିବ ?'

ସେ କହିଲା – 'ସେ ପୁଣି କ'ଣ ? 'ଖରାପ' କାହିଁକି ?'

'ନା ମାନେ ଭଲ ନାଁ ଟି ସମୀକ୍ଷା, କ୍ରିଟିସିଜ୍‌ମ୍, ଡାକ ନାଁ ଟି ?'

'ନା କହିବିନି । ଦି'ଟାଯାକ ଭଲ ନାଁ ମୋର । ଖରାପ କିଛି ନାହିଁ ।'

'ତାହେଲେ, ମୁଁ ଆଉ ପଚାରିବିନି ।'

'କାହିଁକି ?'

'ମାନେ ମୋର ଆଉ ଇଂଟେରେଷ୍ଟ୍ ନାହିଁ ।'

'କାହିଁକି ?'

'ଯଦି ଖରାପ ଥାଆନ୍ତା (ବା ଅଛି), ତା ହେଲେ ହିଁ ପଚାରିଥାଆନ୍ତି (ବା ପଚାରିବି) ।'

ଜୋର୍‌ରେ ହସିଲା ଶରତ । ସମୀକ୍ଷା ବି । ମୁଁ ମଧ୍ୟ ହସିଲି । ମୋତେ ଲାଗିଲା ଅନେକ ବର୍ଷପରେ ଖୋଲା ହୃଦୟରେ ମୁଁ ହସୁଛି । ଅନେକ ସମୟ ଧରି ହସିଲି ।

ଚିଲିକାକୂଳରେ ମୋତେ ଗୋଟେ ପାଖକୁ ଟାଣିନେଇ ସମୀକ୍ଷା କହିଲା – 'ଡାକ ନାଁଟି କହିବି ଯଦି ତୁମେ ମୋତେ 'ସମୀକ୍ଷା' ବୋଲି କେବଳ ଡାକିବ, ହେଲା ?'

ମୁଁ କହିଲି –'ହଁ' ।

'ପ୍ରମିସ୍ ?'

'ପ୍ରମିସ୍ ।'

ମୋ କାନ ପାଖରେ ସମୀକ୍ଷାର ଓଠ । ପଛରେ ରହିଯାଇଛି ଶରତ – ସିଗାରେଟ୍ ଦୋକାନରେ । ଆଖିଆଗରେ ଚିଲିକାର ନୀଳିମା ଦୂରକୁ, ବହୁତ ଦୂରକୁ ଲମ୍ବି ଯାଇଛି । ଲାଗୁଛି ଯେମିତି ମୋ ପାଖରେ ଗୋଟାଏ ପୃଥିବୀ ଶେଷ ହୋଇଯାଇ ଆଉ ଏକ ପୃଥିବୀ

ଆରମ୍ଭ ହୋଇଛି ସେଇ ନୀଳିମା ଭିତରେ । ଉପରେ ଫାଳେ ଆକାଶରୁ ଖସି ପଡୁଛନ୍ତି ଧାଡ଼ି ଧାଡ଼ି ପକ୍ଷୀ, ଦିଗ୍‌ବଳୟ ଯେପରି ନଇଁ ଆସୁଛି କୋଳେଇ ନେବା ପାଇଁ ସେଇ ପକ୍ଷୀମାନଙ୍କୁ – ଯେପରି ସନ୍ଧ୍ୟା ନଇଁଗଲେ ମା' ନିଜ ପିଲାମାନଙ୍କୁ କୋଳେଇ ନେବାପାଇଁ ଅପେକ୍ଷା କରିଥାଏ ।

ମୋ ହାତ ପାପୁଲିରେ ସମୀକ୍ଷାର ହାତ ।

ଏକ ଅଦ୍ଭୁତ ଶିହରଣ ଅନୁଭବ କରୁଛି ମୁଁ, ଏକ ସ୍ୱପ୍ନିଳ ରୋମାଞ୍ଚ । ଗପ ବହିରେ ପଢ଼ିଥିବା, ରୂପେଲି ପରଦାରେ ଦେଖିଲାପରି ହୁଏତ । ମୋତେ ଲାଗିଲା ବାସ୍ତବରେ ନୁହେଁ – କେବଳ ବହିରେ, କେବଳ ପରଦାରେ ହିଁ ଏ ରୋମାଞ୍ଚ, ଏ ଶିହରଣ ଘଟୁଛି ।

ଏତେ ପାଖରେ ଏକ ସୁନ୍ଦର, ଅସଂପୂର୍ଣ୍ଣ ଶରୀରର କିଛି ଅଂଶ ମୋ ଶରୀରର କିଛି ଅଂଶ ସହ ଛନ୍ଦି ହୋଇ ଯାଉଛି... ମୁଁ ଆଉ ସମୀକ୍ଷା ଆଡ଼କୁ ଅନାଇ ପାରୁନାହିଁ, ଆକାଶ ଆଡ଼କୁ ଅନାଇ ପାରୁନାହିଁ, ଆପେ ପଡ଼ିଯାଉଛି ଆଖିପତା । ହୃଦୟ ଭିତରେ ଏକ ଅପରିଚିତ ଆନ୍ଦୋଳନ – ମୁଁ ଓ ମୋ ଆଗରେ ଥିବା ପୃଥିବୀ ଭିତରେ ଯେମିତି ଗୋଟାଏ ବୁଝାମଣା ହୋଇଯାଇଛି । ସ୍ଥାଣୁ ପାଲଟି ଯାଇଛି ମଣିଷ ଓ ପ୍ରକୃତି । ସମୀକ୍ଷାର ସ୍ପର୍ଶରେ ମୋ ଭିତରୁ ଆଉ କେହିଜଣେ ଜନ୍ମ ନେଇ ସାରିଲାଣି, ଆଉ ଜଣେ ମଣିଷ – ଭିନ୍ନ ଚେତନାର, ଭିନ୍ନ ଇନ୍ଦ୍ରିୟର ।

ଚିଲିକାର ନୀଳ ପାଣିଭିତରେ ଆମ ଦୁଇଜଣଙ୍କ ଗୋଡ଼ ଛନ୍ଦିହୋଇ ଗଲାଣି ।

ଆକାଶରେ ସନ୍ଧ୍ୟା ନଇଁ ଆସିଲାଣି ।

ଆସ୍ତେ ଆସ୍ତେ ଅନ୍ଧକାର ଆମ ଦୁହିଁଙ୍କୁ ଗ୍ରାସ କରିବା ଉପରେ । କିଛି ସମୟ ପରେ ତାରାମାନେ ଦେଖାଦେବେ । କିଛିଟା ପରିଷ୍କାର ହୋଇଯିବ ଆକାଶ ।

ଶରତ ଫେରି ଆସିବ ସିଗାରେଟ୍ ଦୋକାନରୁ, ଆଉ ମୁଁ ସମର୍ପି ଦେଇଥିବା ମୋ ଶରୀରର ଅଂଶଗୁଡ଼ିକୁ – ଧୀରେ ଧୀରେ – ଫେରାଇ ଆଣିବି ସମୀକ୍ଷାର ବନ୍ଧନ ଭିତରୁ ।

## ୯

'ମାମୁଁ ଭଣଜା' ପାହାଡ଼ ପଛରେ ଥିବା କିମ୍ବଦନ୍ତୀ କିମ୍ବଦନ୍ତୀରେ ହିଁ ରହିଗଲା । ଚର୍ଚ୍ଚା ବି ହେଲାନି । ଡ୍ୟୁଟି କଲାଭଳି ଆଗେଇ ଚାଲିଲୁ ଶରତ ଓ ମୁଁ । ସମୀକ୍ଷା କୁଆଡ଼େ ଗଲା କେଜାଣି ? ବ୍ରେକ୍‌ଫାଷ୍ଟ ବେଳେ ତ ନଥିଲା ? ଶରତ ଉପରକୁ ଉପରକୁ ଉଠି

ଚାଲିଥାଏ, କହୁଥାଏ ମେଡିକାଲ କଲେଜ କଥା – କ୍ୟାଣ୍ଟିନ୍‌ରେ ନୂଆ ସାଙ୍ଗ, ଏକାବେଳକେ ତିନିଟା, ଚାରିଟା ଅମ୍‌ଲେଟ୍ ଖାଇବା ଝିଅ ଆସି ଜୁଟିଛନ୍ତି ମଣିପୁର୍‌ରୁ, କୋହିମାରୁ । ଏମ୍.ଏସ୍.ସି. ପଢ଼ାଛାଡ଼ି ଡାକ୍ତରୀ ପଢ଼ିବାକୁ ଆସିଛନ୍ତି । ମୁଁ ଖାଲି ଭାବୁଥାଏ, କ'ଣ ଲୋକଙ୍କ ସେବା କରିବାକୁ ଏତେ ଆଗ୍ରହ, ନା ଭଲ ରୋଜଗାର ଲାଗି ଏ ପାଗଳାମି ?

ଖରା ଘନେଇଲାଣି । ଆମେ ପାହାଡ଼ ଉପରେ । ଉପରୁ ଚିଲିକାର ପାଣି କେତେ ସୁନ୍ଦର ଦିଶୁଛି । ଦୂରକୁ ଗଲେ, ଉପରକୁ ଗଲେ – ବୋଧେ – ସବୁ ସୁନ୍ଦର ଦିଶେ ।

କିନ୍ତୁ ସବୁ ସୁନ୍ଦର ଦିଶିବା କ'ଣ ଜରୁରୀ ?

ଶରତ ଦୁଇଟାଯାକ ହାତ ପ୍ୟାଣ୍ଟ ପକେଟ୍‌ରେ ପୁରାଇ ମୋତେ ପଚାରିଲା – 'ତୁମେ ଡାକ୍ତରୀ ପଢ଼ିବ ? ନା, ଏଞ୍ଜିନିୟରିଂ ?'

ମୁଁ ତା' ଆଡ଼କୁ ଅନାଇ ରହିଲି । ସତେ ତ, ମୁଁ କ'ଣ ପଢ଼ିବି ? କ'ଣ ହେବି ? ଏ କଥା ଚିନ୍ତା କରିବାର କ'ଣ ସମୟ ଆସିଲାଣି ? କ'ଣ ପିନ୍ଧିବି, କ'ଣ ଖାଇବି – ଏତେ ବର୍ଷ ତ ବାପା ଠିକ୍ କରୁଥିଲେ । କ'ଣ ପଢ଼ିବି, କ'ଣ ହେବି – ସେ ହିଁ ଠିକ୍ କରିବେନି ? ଶରତକୁ କିନ୍ତୁ ମୁଁ କିଛି କହିଲିନି । ଖାଲି ପଚାରିଲି – 'ଆଚ୍ଛା ଶରତ, ପାହାଡ଼ ଉପରେ କେଉଁଠି ଗଛ ନାହିଁ ? ଥିବ ବୋଧେ... ସେଠିକି ଯିବା । ଗଛର ଛାଇରେ ଟିକେ ବସିବା । ଚିଲିକା ତ ଚାରିଆଡ଼େ ଲମ୍ବିଯାଇଛି । ଚାଲ, ଗଛତଳେ ବସି ପାଣିକୁ ଦେଖିବା । ଆକାଶକୁ କାଟି କାଟି ପକ୍ଷୀମାନେ କେମିତି ଧାଡ଼ିବାନ୍ଧି ଚାଲିଛନ୍ତି, ଲାଗୁଛି ଆକାଶ ଆଉ ଏକ ଚିଲିକା, ତାରି ଭିତରେ ଭିନ୍ନ ଭିନ୍ନ ଦେଶର ପକ୍ଷୀମାନେ ପହଁରି ପହଁରି ଚାଲିଛନ୍ତି କୌଣସି ଏକ ପୂର୍ବନିର୍ଦ୍ଧାରିତ ଚୁକ୍ତି ଅନୁସାରେ । ସତରେ କି ସୁନ୍ଦର ଯୋଜନା, କି ରହସ୍ୟମୟ ଯାତ୍ରା ସେମାନଙ୍କର !'

ମୋର ମନେ ପଡ଼ିଗଲା ବାପା ଡିନରର ଟେବୁଲ୍ ପାଖରେ ଆବୃତ୍ତି କରୁଥିବା ଉଇଲିୟମ୍ କାଓପର୍‌ଙ୍କ କବିତାର ଓଡ଼ିଆ ରୂପାନ୍ତର – ନିର୍ବାସିତ କବି ଆଲେକ୍‌ଜାଣ୍ଡର ସେଲ୍‌କାର୍କଙ୍କ କରୁଣ କାମନା :

''ଥାଆନ୍ତା ଯଦି ମୋର ବିହଂଗପକ୍ଷ
ଲଂଘି ଭୀଷଣ ଗିରି ସମୁଦ୍ର ବକ୍ଷ,
ଦେଖନ୍ତି ପ୍ରିୟଜନ ମୁଖ କମଳ,
ହୁଅନ୍ତା ଏ ସନ୍ତାପିତ ପ୍ରାଣ ଶୀତଳ ।''

ମୁଁ କହିପକେଇଲି – 'ଥାଆନ୍ତା ଯଦି ମୋର ବିହଂଗପକ୍ଷ...'

ଶରତ କହିଲା – 'ନିଶ୍ଚୟ, ଭାବ, ତୁମର ଅଛି ।'

'ମାନେ' ?

'ମାନେ, କଳ୍ପନାରେ ଉଡ଼ିଯାଅ, ପକ୍ଷୀଭଳି, ପେଟ୍ରୋଲ ଖର୍ଚ୍ଚ ପଡ଼ିବନି, ଟ୍ରାଫିକ୍ ନିୟମ ମାନିବାକୁ ପଡ଼ିବନି – ଖାଲି ଉଡ଼ି ଉଡ଼ି ଚାଲି ଯାଉଥିବ ଦୂରକୁ, ଅନେକ ଦୂରକୁ ।'

ମୋତେ ଭଲ ଲାଗିଲା, ଯା' ହେଉ, ଶରତ ଭିତରେ କବିଟିଏ ଲୁଚି ରହିଛି ।

ମୁଁ ପଚାରିଲି – 'ଆଚ୍ଛା ଶରତ ତୁମେ କବିତା ଲେଖ ?' ଜୋର୍‌ରେ ହସିଲା ସେ । କହିଲା – 'ଲେଖେ ମାନେ ? ରବିବାର 'ମାତୃଭୂମି' ତୁମେ କେବେ ପଢ଼ନି ବୋଧେ ? ମାସକୁ ନିଶ୍ଚେ ଗୋଟେ କବିତା ମୋର ବାହାରେ । 'କିଶୋର ଫଉଜ'ର ମୁଁ ସୈନିକ ଯେ । ସୈନିକ ନମ୍ବର କହିବି ?'

ପାହାଡ଼ରୁ ଓହ୍ଲାଇବା ଯେତେ ସହଜ ଭାବୁଥିଲି, ତାହା ନୁହେଁ । ବରଂ ଚଢ଼ିବାଠାରୁ କଷ୍ଟ । ତଳକୁ ଅନାଇ ଅନାଇ ଡେଇଁବାକୁ ପଡୁଥାଏ । ଥରେ ଦି ଥର ଗୋଡ଼ମକଚି ଏପାଖ ସେପାଖ ହୋଇ ଶେଷରେ ରାସ୍ତାରେ ପହଞ୍ଚିଲୁ । ଏଗାରଟା ବାଜି ସାରିଥିଲା । ରାସ୍ତାରେ ଅନେକ ବସ୍, ଜିପ୍, ମଟରସାଇକ୍ଲ୍ । ମୁଁ ରାସ୍ତାରୁ ପାହାଡ଼ ଉପରକୁ ଅନେଇଲି – କାଇଁ କିଛି ତ ଦିଶୁନି ? କେଉଁଠାକୁ ଆମେ ଯାଇଥିଲେ ? କେଉଁଠି ବସିଥିଲେ ଏତେ ସମୟ ? – ପ୍ରଶ୍ନରେ ହିଁ ରହିଗଲା ।

ରାତିରେ ଶୋଇଲାବେଳେ ଏମିତି ଗୁଡ଼ାଏ ପ୍ରଶ୍ନ ମୋ ଆଗରେ ଉଙ୍କି ମାରେ । ଜୀବନ ଯଦି ଗୋଟିଏ ଯାତ୍ରା ହୁଏ, ତା ହେଲେ ଅବ୍‌ଦୁଲ୍, ସୁପ୍ରିୟ ପରି ଶରତ, ସମୀକ୍ଷା – ଦୁଇଜଣ ମୋର ନୂଆ ସହଯାତ୍ରୀ । ଶରତ ଓ ସମୀକ୍ଷା – ଭାଇ ଭଉଣୀ ଦୁହେଁ ଭିନ୍ନ ଭିନ୍ନ ରୁଚିର, ଯେପରି ମୋ ଭଉଣୀ ଓ ମୁଁ । ମୋ ଭଉଣୀଠାରୁ ସଂପୂର୍ଣ୍ଣ ବାକ୍ୟଟିଏ ଶୁଣିଲାପରି ମୋର ମନେ ହୁଏନା । 'ହଁ' 'ନାହିଁ' ର ଗଦ୍ଦା ତାର ଜୀବନର ଅଭିଧାନ । ପଡ଼ିଶାଘର ଝିଅ ଥିଲା ତାର ଏକମାତ୍ର ସାଙ୍ଗ – ତେଲୁଗୁ ଝିଅଟିଏ – ପତଳା, ଲମ୍ବା, ଲାଜକୁଳୀ ପିଲାଟି । ସମୀକ୍ଷା କିନ୍ତୁ ସେପରି ନୁହେଁ, ସମାଜର ଆଧୁନିକତା ସହ ପାଦ ମିଳାଇ ଚାଲିପାରୁଥିବା ଝିଅ, ସମୀକ୍ଷା ।

ପୁଣି ମୁଁ ନିଜକୁ ପଚାରେ – 'ସମୀକ୍ଷା କରିବ କ'ଣ ଜୀବନରେ ? କ'ଣ ହେବ ? କାହାକୁ ନେଇ ଘରସଂସାର କରିବ ? ପାରିବ ତ ? ବାହା ନ ହୋଇ ବି ପାରେ ?'

ନା, ଏଗୁଡ଼ା ବରଂ ତାକୁହିଁ ପଚାରିବି । ଦେଖିବା କ'ଣ କହୁଛି । ଚାଲାକି କରି ଯାଡୁ ସ୍ୟାଡୁ କିଛି କହିଦେଇପାରେ । ଠିକ୍ ଅଛି, ସନ୍ଧ୍ୟାବେଳେ ପଚାରିବି । ସନ୍ଧ୍ୟାବେଳେ

କାହିଁକି, ଖରାବେଳେ, ଖାଇସାରିବା ପରେ ? କିନ୍ତୁ ସମୀକ୍ଷା କାହିଁ ? ଖଞ୍ଜାରେ ତ ଦେଖା ଯାଉନି । ନିଶି ମାଉସୀ ବି କହିପାରୁ ନାହାନ୍ତି କୁଆଡେ ଗଲା ସେ ।

ମୋତେ କେମିତି ଗୋଟାଏ ଅସ୍ୱସ୍ତି ଲାଗିଲା । କିଛି ଗୋଟାଏ ହଜିଗଲା ପରି ଲାଗିଲା । ସୁପ୍ରିୟ କଥା ମନେ ପଡ଼ିଲା । ଦୌଡ଼ିଯିବାକୁ ଇଚ୍ଛା ହେଲା ପଛରେ ମାଇଲ୍ ମାଇଲ୍ ଦୂରରେ ଛାଡ଼ି ଆସିଥିବା ଟିକି ସହରଟିକୁ ।

## ୧୦

କଟକରେ ଥିବା ଦୁଇଟା ବିରାଟ ପୁରୁଣାକାଳିଆ ନାଲି କୋଠାଭିତରୁ ଗୋଟିଏ ହେଲା ହାଇକୋର୍ଟ, ଅନ୍ୟଟି ରେଭେନ୍ସା କଲେଜ । ମୁଁ ଶେଷରେ ରେଭେନ୍ସା କଲେଜରେ ଭର୍ତ୍ତି ହେଲି । ମାମୁଁ ହଷ୍ଟେଲରେ ଛାଡ଼ି ଦେଇଗଲେ । କେମିତି କେମିତି ଲାଗିଲା ପ୍ରଥମେ – ଗୋଟେ ନୂଆ ଜାଗାରେ, ନୂଆ ସାଙ୍ଗମାନଙ୍କ ସହିତ ରହିବା, ଉଠିବା, ବସିବା, ଖାଇବା... । ଆମ ରୁମ୍‌ରେ ଚାରିଜଣ ଥିଲୁ – ଜଣେ ହାଫ୍ ପ୍ୟାଣ୍ଟ ପିନ୍ଧୁଥାଏ, ଜଣେ ଧୋତି, ତୃତୀୟ ଜଣକ ସବୁବେଳେ ପ୍ୟାଣ୍ଟ ସାର୍ଟ ପିନ୍ଧିଥାଏ, ଶୋଇଲାବେଳେ ବି । ପ୍ରଥମେ ମୋତେ ସବୁକିଛି ଖାପ୍‌ଛଡ଼ା, ଖାପ୍‌ଛଡ଼ା ଲାଗିଲା ।

ଜଣଙ୍କ ବିଛଣାରେ ଦିନେ କୁକୁରଛୁଆଟିଏ ଦେଖିଲି । ଆଉ ଜଣଙ୍କ ବିଛଣାରେ ଜୋତାବ୍ରସ୍, ତ୍ରିଗୋନୋମେଟ୍ରି ବହି, ପାନିଆଟେ । ଜଣେ ରାତି ଦି'ଟା ପର୍ଯ୍ୟନ୍ତ କେମିଷ୍ଟ୍ରି ପଢ଼ି ଚାଲିଥାଏ, ଆଉ ଜଣେ 'ଲାଇଟ୍ ଲିଭାଅ, ଲିଭାଅ' ବୋଲି ବିଭିନ୍ନ ସ୍ୱରରେ, ବିଭିନ୍ନ ଭାଷାରେ କହି ଚାଲିଥାଏ । ଜଣେ ରବିବାରଦିନ ସିଗାରେଟ୍‌ଟିଏ ଟାଣେ, ଆଉ ସେଥିପାଇଁ କେବଳ, ଜୋତା ମୋଜା ପିନ୍ଧି ମାଡ଼ିଯାଏ କଲେଜଛକ ପର୍ଯ୍ୟନ୍ତ । ଆଉଜଣେ ରବିବାର ସକାଳଯାକ ଲୁଗା ସଫା କରିଚାଲେ, ବେସୁରିଆ ସିନେମା ଗୀତଟିଏ ମୁହଁରେ – 'ଚାହେଁ ମୁଝେ କୋଇ ଜଙ୍ଗଲି କହେ', ଶୁଭାଯାଏ ମହମ୍ମଦ ରଫି ଗାଉନାହାନ୍ତି, ଗାଉଛନ୍ତି ବାଳକୃଷ୍ଣ ଦାସ – ଚମ୍ପୁ ରାଗରେ !

ଦିନେ ସକାଳେ ଦେଖିଲି ସର୍ଟ୍ସ ଓ କେଟ୍ସ ପିନ୍ଧି ଜଣେ ଦୌଡୁଛି – ଖୁବ୍ ସୁନ୍ଦର ଦେଖିବାକୁ । ନେତାଜୀ ସୁଭାଷ ନିଶ୍ଚୟ ପିଲାଦିନେ ଏମିତି ଦେଖାଯାଉଥିଲେ । କେମିତି ମନ ଟାଣି ହୋଇଗଲା । ଆମେ ଦୁହେଁ ପ୍ରଥମ ଦେଖାରେ ହିଁ ପରସ୍ପରର ନିକଟକୁ ଚାଲିଗଲୁ । ନାଁ, 'ଅପୂର୍ବ', ପ୍ରକୃତରେ ଅପୂର୍ବ । ମୋ ଉପର ମହଲାରେ କୌଣସି ଏକ ରୁମ୍‌ରେ ରହେ । ସିନିୟର୍ ପିଲାଙ୍କ ସହ, ମାନେ ଶେଷବର୍ଷ ଏମ୍.ଏ. ବା ଏମ୍.ଏସ୍.ସି. ଛାତ୍ରଙ୍କ ସହ କେବଳ

ବୁଲାଚଲା କରେ । କିନ୍ତୁ ପଢ଼େ ଫାଷ୍ଟ ଇଅରରେ – ଆମସହ । ମୋତେ ମିଶିବାକୁ ଟିକେ ଡେରି ଲାଗିଲା । ମୁଁ ଟିକେ ହଠାତ୍ ମିଶି ପାରେନା । ମୋତେ ଲାଗେ, ମୁଁ ଠିକ୍‌ଭାବେ ସଜେଇ କଥା କହିପାରେନା । ବୋଧେ ସେଥିପାଇଁ ମୁଁ ନିଜ ପୃଥିବୀରେ ହିଁ ଆବଦ୍ଧ ରହିବାକୁ ଚାହେଁ । କିନ୍ତୁ ହଷ୍ଟେଲ୍‌ରେ ରହିଲେ ତା କଣ ସମ୍ଭବ ?

କଲେଜ ପ୍ରିନ୍ସିପାଲ୍ ଡଃ ବଂଶୀଧର ସାମନ୍ତରାୟ କାଲିଫର୍ନିଆ ୟୁନିଭର୍ସିଟି, ବର୍କ୍‌ଲୀରୁ ପି.ଏଚ୍. ଡି... ଆର୍ନ୍ତଜାତିକ ସ୍ତରରେ ସ୍ୱୀକୃତିପ୍ରାପ୍ତ ବିଜ୍ଞାନପତ୍ରିକା 'ନେଚର୍'ରେ ତାଙ୍କ ଲେଖା ପ୍ରକାଶ ପାଇଛି । ସବୁବେଳେ ସୁଟ୍ ଓ ମ୍ୟାଚିଂ ଟାଇ ପିନ୍ଧନ୍ତି । ତାଙ୍କର ସବୁ ପୋଷାକ କୁଆଡ଼େ କାଲିଫର୍ନିଆରୁ, ରାଣୀହାଟ ବା କଲେଜଛକ ଦରଜି ଉପରେ ତାଙ୍କର ବିଶ୍ୱାସ ନଥାଏ । ସବୁଦିନ ଏଗାରଟା ବେଳେ, ଠିକ୍ ଏଗାରଟା ବେଳେ ପୁରୁଣା କନିକା ଲାଇବ୍ରେରୀ ଓ ସନ୍‌କ୍ଲକ୍ ମଝିରେ ତାଙ୍କୁ ଦେଖିବାକୁ ମିଳେ । ଚାବିଦିଆ ଘଣ୍ଟା ଅନେକଥର ମୋର ବନ୍ଦ ହୋଇଯାଏ, ଚାବିଦେବାକୁ ଭୁଲିଯାଇଥାଏ । କିଛି ଅସୁବିଧା ହୁଏନା । ସାର୍‌ଙ୍କୁ ଦେଖୁ ଦେଖୁ ମୁଁ ଘଣ୍ଟାକୁ ଏଗାରଟା କରିଦିଏ । କ୍ଲାସରେ ପ୍ୟାଣ୍ଟ ଉପରେ କେହି ସାର୍ଟ ଲୁଜ୍ ପିନ୍ଧିଥିଲେ କ୍ଲାସରୁ ବାହାର କରିଦିଅନ୍ତି ସାର୍ ।

ଆର୍ଟ୍‌ସ୍ ପିଲାଙ୍କ ପ୍ରତି ଡଃ ସାମନ୍ତରାୟଙ୍କର କେବେ ଭଲ ଧାରଣା ନଥିଲା । ସେଦିନ ବର୍ଷାଟିକେ ହୋଇଯାଇଥାଏ । ନୋଟିସ୍‌ବୋର୍ଡ଼ ପାଖରେ ଆମ କ୍ଲାସର ଶମ୍ଭୁକୁ ଧରିଲେ ପ୍ରିନ୍ସିପାଲ୍ । ଶମ୍ଭୁ ମନେ ମନେ ଜାତୀୟ ସଂଗୀତ ଗାଇ ଗାଇ ନୋଟିସ୍ ଫାଡ଼ି ପକାଉଥିଲା ।

କହିଲେ ରୀତିମତ୍ ନମୁନାଦାର ମାର୍କିନ୍ ଗଳାରେ – 'ଏ ପିଲା ଏଠିକୁ ଆସ' ।

ଶମ୍ଭୁ ଦେହସାରା ଥରିଲାଣି ।

'ଆର୍ଟ୍‌ସ୍ ପିଲା, ନା ସାଇନ୍ସ ପିଲା ?'

'ସାର ଆର୍ଟ୍‌ସ୍...' – ଭୟରେ ଶମ୍ଭୁ ମିଛଟେ କହି ପକେଇଲା ।

'ଏଁ, ଆର୍ଟ୍‌ସ୍ ପିଲା ହୋଇ ନୋଟିସ୍ ଚିରୁଛ ? (ସତେ ଯେମିତି ନୋଟିସ୍ ଚିରିବା ଅଧିକାର କେବଳ ସାଇନ୍ସ ପିଲାଙ୍କର...) ମୋତେ ଅଫିସ୍‌ରେ ଦେଖାକର । ଆଜି, ଏବେ, ଦଶମିନିଟ୍ ଭିତରେ ।'

ଶମ୍ଭୁ ପିଇଲେହି ପାଣି । ଗଲା ଶେଷରେ, କିନ୍ତୁ ହସି ହସି ବାହାରି ଆସିଲା ପ୍ରିନ୍ସିପାଲ୍‌ଙ୍କ ଅଫିସ୍‌ରୁ ।

ମୁଁ ପଚାରିଲି –'କ'ଣ କହିଲେ ?'

ଶମ୍ଭୁ କହିଲା –'ତଳକୁ ମୁହଁପୋତି କହିଲି ସାର୍ ଭୁଲ୍ ହୋଇଗଲା–ଅବଶ୍ୟ ଇଂରାଜୀରେ – ଏମିତି ଆଉ କେବେ କରିବି ନାହିଁ ।'

ପ୍ରିନ୍ସିପାଲ୍ ଖୁବ୍ ଉଦାର ହୃଦୟର ଲୋକ, ବାହାରୁ ଦେଖା ଯାଆନ୍ତି ଖୁବ୍ ରାଗୀ, କଠୋର, କିନ୍ତୁ ଭିତରେ ଜଣେ ସ୍ନେହୀ, ଶୁଭାକାଂକ୍ଷୀ ମଣିଷ । ଆମେଦୁହେଁ ଭାବିଲୁ ସଫଳ ମଣିଷମାନେ ବୋଧହୁଏ ଏହିପରି । ବିଭିନ୍ନ ଭୂମିକାରେ, ଯଥା: ଶାସକ, ଅଧ୍ୟକ୍ଷ, ଶିକ୍ଷକ ହିସାବରେ ଜଣକୁ ଭିନ୍ନ ଭିନ୍ନ ରୁପ, ଭିନ୍ନ ଭିନ୍ନ ବ୍ୟବହାର ଓ ଦୃଷ୍ଟିକୋଣ ଦେଖାଇବାକୁ ପଡ଼ିବ ।

ଫିଜିକ୍ସ୍ ଲେକ୍ଚର୍ ଥିଏଟର୍ ବା ପି.ଏଲ୍.ଟି.ରେ କିନ୍ତୁ ସେଦିନ ଭାରି ମଜା ହେଲା । ବୁଢ଼ା ପ୍ରଫେସର ଜଣେ ମାଡ଼ି ଆସିଲେ । କ'ଣ ସବୁ ରେଡ଼ିଓ ଗ୍ୟାଲାକ୍ସି କଥା ବ୍ଲାକ୍‌ବୋର୍ଡ଼ରେ ଲେଖିଚାଲିଲେ । ଆମେସବୁ ବୋକାଙ୍କ ପରି ଅନେଇ ରହିଛୁ । ମୋର ଖାଲି ଜୟନ୍ତ ବିଷ୍ଣୁ ନାର୍ଲିକରଙ୍କ ନାଁ ଶୁଣିଲା ପରି ଲାଗୁଥାଏ । ଫ୍ରେଡ୍ ହଏଲ୍ ଓ ଜେ.ଭି. ନାର୍ଲିକର୍ ମିଶି ଆଇନ୍‌ଷ୍ଟାଇନ୍‌ଙ୍କ ରିଲେଟିଭିଟି ଥିଓରୀକୁ ବଦଳେଇବାର ଚେଷ୍ଟା କରୁଥିଲେ ନା କ'ଣ ! ଖବରକାଗଜରୁ ପଢ଼ିଲାପରି ମନେ ହେଉଥାଏ... । ସାର୍ ଆମ ମୁହଁଗୁଡ଼ିକୁ କିଛି ସମୟ ଲକ୍ଷ୍ୟ କରି ପଚାରିଲେ – 'କେଉଁ କ୍ଲାସ ଏଟା ?'

ଆମ ଭିତରୁ ଜଣେ କହିଲା - 'ପ୍ରି ୟୁନିଭର୍ସିଟି' ।

'ମାନେ ? ଜଷ୍ଟ୍ ଆଫ୍ଟର୍ ମ୍ୟାଟ୍ରିକୁଲେସନ୍ ?'

ଶହେ ଅଠେଇଶ୍‌ଟି ପାଟିରୁ କୋରସ୍‌ରେ ବାହାରି ଆସିଲା – 'ୟେସ୍ ସାର୍...'

'ଓଃ, ମୁଁ ଭାବିଥିଲି, ଏମ୍.ଏସ୍.ସି. ଫାଇନାଲ୍ ଇଅର କ୍ଲାସ ବୋଲି ନା ?' ତାପରେ ପଛଆଡ଼ ଆଣ୍ଟିରୁମ୍‌ବାଟେ ସାର୍ କୁଆଡ଼େ ଉଭେଇଗଲେ ।

ପରେ ହଷ୍ଟେଲରେ ସିନିଅର୍ ପିଲାଙ୍କଠାରୁ ଜାଣିଲୁ ତାଙ୍କ ନାଁ ଡଃ ଅନଂଗ ମିଶ୍ର । ସେ କୁଆଡ଼େ ଜଣେ ଆନ୍ତର୍ଜାତିକ ସ୍ତରରେ ନାମକରା ପଦାର୍ଥବିଜ୍ଞାନୀ । ଚାରିମିନିଟ୍ ବିଳମ୍ବ ହୋଇଗଲା, ନ ହେଲେ ସେ କୁଆଡ଼େ ୧୯୫୮ର ନୋବେଲ୍ ପୁରସ୍କାର ପାଇଥାନ୍ତେ । ନ ପାଇବାରୁ ସେ କୁଆଡ଼େ ଅର୍ଦ୍ଧପାଗଳ ହୋଇଯାଇଛନ୍ତି । ଭୁଲ୍ କ୍ଲାସକୁ ମାଡ଼ି ଯାଆନ୍ତି, ମନେ ମନେ ହସୁଥାଆନ୍ତି ସବୁବେଳେ । ମୋତେ ଭଲଲାଗେ ତାଙ୍କୁ, 'ଅଜା' ବୋଲି ଡାକିବାକୁ ମୋର ପ୍ରବଳ ଇଚ୍ଛା ଥିଲା ।

ଦିନେ ଅନ୍ଧାରରେ ତାଙ୍କୁ କଲେଜଛକ ଆଡ଼େ ଯିବାର ଦେଖିଲି । ସାଙ୍ଗରେ ଅପୂର୍ବ ଥିଲା ।

କହିଲି – 'ଅପୂର୍ବ, ତୁମେ ଯଦି ବେତ୍ ମାରିବ ମୁଁ ବଡ଼ ପାଟିରେ 'ଅଜା' ବୋଲି ଡାକିବି ।'

ସେ କହିଲା – 'ତୁମେ ଯଦି ସେୟାକର, ମୁଁ ସାର୍‌ଙ୍କଠାରୁ ଦିଆସିଲି ମାଗି ସିଗାରେଟ୍ ଖଣ୍ଡେ ଲଗେଇ ଦେଇପାରେ ।'

ମୁଁ ଅବାକ୍ ହୋଇଗଲି । ଅପୂର୍ବର ସାହାସ ତ କମ୍ ନୁହେଁ ? ତେବେ ଦେଖାଯାଉ, ମଜା ହେବ । ଅନ୍ଧାରରେ କାର୍ଯ୍ୟଟି କରାଯାଉ । ମୁଁ ଚିତ୍‌କାର କରି ଡାକିଲି 'ଅଜା'...

ସାର୍ ରହିଗଲେ ବୋଧେ, କିଛି ସମୟ ।

ହଠାତ୍ ଦେଖିଲି ଅପୂର୍ବ ଅଲିମ୍ପିକ୍‌ସ୍‌ରେ ଦୌଡ଼ିଲାପରି ମାଡ଼ିଯାଉଛି ଆଗକୁ । ପାଖରେ ପହଞ୍ଚି କହୁଛି, 'ଟିକେ ଦିଆସିଲି ଦେଲ' ।

ସାର୍ ତାଙ୍କ ବିଡ଼ିଟା ବଢ଼େଇଦେଲେ । ମୁଁ ଦେଖିଲି ସାର୍ କ'ଣ ବିଡ଼ି ଟାଣୁଛନ୍ତି ? ଏତେ ବଡ଼ ପ୍ରଫେସର ବିଡ଼ି... ?

ଭାବିଲି ଗୁଣୀ, ବିଦ୍ୱାନ ଲୋକମାନେ ବୋଧହୁଏ ଯାବତୀୟ ଅସ୍ୱାଭାବିକ କାର୍ଯ୍ୟ କରିଥାନ୍ତି... ଯେମିତି ବିଶିଷ୍ଟ ଲେଖକ ଭିକ୍ଟର୍ ହ୍ୟୁଗୋ ସବୁବେଳେ ଛିଡ଼ା ହୋଇ ଲେଖନ୍ତି, ଶାନ୍ତିନିକେତନର ବିଶିଷ୍ଟ ଶିଳ୍ପୀ ରାମକିଙ୍କର ସକାଳୁ ମଶାଣି ପାଖରେ ଥିବା ତାଙ୍କ ଘରଆଗରେ ମଗ୍‌ରେ ସିଧା ଦେଶୀମଦ ଗୁଡ଼ାଏ ପିଇ ଯାଆନ୍ତି ଦିନ ବାରଟା, ଗୋଟାଏ, ଦି'ଟା ଯାକେ... । ଆଉ ପ୍ରଫେସର୍ ଅନଂଗ ମିଶ୍ର ନୋବେଲ୍ ପ୍ରାଇଜ୍ ହରାଇ ବିଡ଼ି ଟାଣିଲେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି । ମୁଁ ଆଶ୍ଚର୍ଯ୍ୟ ହେବି କାହିଁକି ?

ଦିନେ ବସ୍‌ରେ ଦେଖିଲି ଖାକି ପ୍ୟାଣ୍ଟ୍ ଖାକି ସାର୍ଟ୍ ପିନ୍ଧି ସାର୍ ପଛରେ ବସିଛନ୍ତି (ପଛରେ ବସିଲେ ଟିକେଟ୍ ଖର୍ଚ୍ଚ କିଛି କମ୍ ପଡୁଥିଲା ସେତେବେଳେ)... ହାତରେ ବ୍ୟାଗ୍, ଆମ୍ବ ଦି କିଲୋ ହେବ ଭିତରେ, ଆଉ ପାଟିରେ ପାନ – ରାସ୍ତୁ ରାସ୍ତୁ ଛେଳି ଘାସ ଚୋବାଇଲା ପରି ଚୋବାଇ ଚାଲିଛନ୍ତି ଡଃ ଅନଙ୍ଗ ମିଶ୍ର, କୁଡ୍-ବି-ନୋବେଲ୍ ଲରିଏଟ୍-ଇନ୍ ଫିଜିକ୍ସ... ହାୟରେ ଭାଗ୍ୟ !

## ୧୧

ବର୍ଷେ ସରିବା ପରେ । ଏଇ ତା ହେଲେ କଲେଜଜୀବନ ? କିଛି ମୋତେ ଭଲ ଲାଗୁ ନଥାଏ । କଲେଜ କ୍ଲାସରୁମ୍, ଲାବୋରେଟୋରୀ, କ୍ୟାଣ୍ଟିନ୍, ଲାଇବ୍ରେରୀ, ଏନ୍.ସି.ସି. ପ୍ୟାରେଡ୍, ଡିବେଟ୍ କମ୍ପିଟିସନ୍, କଲେଜ ସ୍ପୋର୍ଟ୍ସ – କିଛି ଭଲ ଲାଗୁ ନଥାଏ । ଷ୍ଟ୍ରାଇକ୍

ଗୋଟେ ଦିଟା ହୋଇଥିଲା, କାରଣ ହୋଟେଲ୍‌ରେ ଦୋସା ଦାମ୍ କାହିଁକି ବଢ଼ିଗଲା, ମଠର ବାବାଜୀ କାହିଁକି କଲେଜ ପିଲାଙ୍କ ସହ ଦୁର୍ବ୍ୟବହାର କଲେ... ଇତ୍ୟାଦି ।

ନୂଆ ବର୍ଷରେ କଲେଜ ବଦଳେଇ ଦେଲି । ପହଞ୍ଚିଲି ରାଉରକେଲାରେ – ଇସ୍ପାତନଗରୀ ରାଉରକେଲାରେ । ନୂଆ ନୂଆ ସରକାରୀ କଲେଜ ହୋଇଥାଏ । ପିଲାସବୁ ମିଶି ଶହେ ପାଖାପାଖି – ହରିୟାନାରୁ, ମଧ୍ୟପ୍ରଦେଶରୁ, ଆନ୍ଧ୍ରାରୁ, ଦିଲ୍ଲୀରୁ ପିଲା – ଷ୍ଟିଲ୍ ପ୍ଲାଣ୍ଟ୍‌ରେ କାମ କରୁଥିବା ଏଂଜିନିୟର୍, ଡାକ୍ତରଙ୍କ ପିଲା । ଛୋଟ ଭାରତଟିଏ ଭଳି ଲାଗିଲା । ସହରର ଭିନ୍ନ ଭିନ୍ନ ସେକ୍ଟର ଭିତରେ କମ୍ୟୁନିଟି ସେଣ୍ଟର୍, ପାର୍କ, ସିଭିକ୍ ସେଣ୍ଟର୍ – ମନରେ କୌତୁହଳ ଓ ଉନ୍ମାଦନା ଆଣିଲା । ନୂଆ ସାଙ୍ଗ ହେଲେ, କିନ୍ତୁ ମୁଁ ଆଗଭଳି ଏକାକୀ ରହିଗଲି । ମନର କଥା କାହାକୁ କହିପାରିଲି ନାହିଁ, କାହାଠୁଁ ଶୁଣିପାରିଲି ନାହିଁ ।

ଦିନେ ସନ୍ଧ୍ୟାବେଳେ, ପାହାଡ଼ ସେପାଖରୁ ଖବର ଆସିଲା... ସହର ଜଳିଯିବା ଉପରେ । କାରଖାନାରୁ ସମସ୍ତେ ସିଫ୍‌ଟ୍ ଡ୍ୟୁଟି ସାରି ଲୁହାବାଡ଼ି ଧରି ଶହ ଶହ ସଂଖ୍ୟାରେ ଯୁଦ୍ଧକୁ ଗଲାପରି ଆଗେଇ ଆସୁଛନ୍ତି । କ'ଣ ହେଲା ମୁଁ ହଠାତ୍ ବୁଝିପାରିଲି ନାହିଁ । ହିନ୍ଦୁ-ମୁସଲ୍‌ମାନ ଦଙ୍ଗାପରି ମନେ ହେଲା । ଷ୍ଟେସନ୍‌ରେ କିଛି ହିନ୍ଦୁ ନାରୀଙ୍କ ଉପରେ ଅତ୍ୟାଚାରର ପ୍ରତିଶୋଧ ନେବାଲାଗି ହିନ୍ଦୁମାନେ କୁଆଡ଼େ ମୁସଲ୍‌ମାନଙ୍କ ଉପରେ ଚଢ଼ଉ ଆରମ୍ଭ କରିଦେଇଛନ୍ତି ।

ଦେଖୁ ଦେଖୁ ଦୁଇ ତିନି ଘଣ୍ଟା ଭିତରେ ଖଣ୍ଡଯୁଦ୍ଧ । ଆମରି କ୍ଲାସରେ ପଢୁଥିବା ଦୁଇ ଜଣ ସାଙ୍ଗକୁ ବଞ୍ଚାଇବା ଲାଗି ଆମେ ଦୁଇ ତିନିଜଣ ଆଗେଇ ଗଲୁ । ଆଖି ଆଗରେ ଏଭଳି ଦୃଶ୍ୟ ମୁଁ କେବେ ଦେଖି ନଥିଲି । ମଣିଷ ଆଉ ଜଣେ ମଣିଷକୁ ଏଭଳି ଘୃଣା କରିପାରେ ? ଜୀବନରେ ମାରିଦେଇପାରେ ? ଗୋଟିଏ ସ୍କୁଲର କ୍ଲାସରୁମ୍ ଭିତରେ ଆଣ୍ଠୁଏ ରକ୍ତ... ତାରି ଭିତରେ ନାରୀମାନଙ୍କୁ ପୋଲିସ ପକ୍ଷରୁ ଥଇଥାନ କରାଯାଇଥିଲା । ଆମେ ଜଗିଥିଲୁ । ଆମ ଘର ପାଖର ପିଲାଟିଏ... ରାତିଯାକ ମୋତେ ଜାବୁଡ଼ିଧରି ରହିଥିଲା । ତା ବାପା, ଭାଇଙ୍କୁ ଲୁହା ରଡ୍‌ରେ ମାରି ଦିଆ ଯାଇଥିଲା ତା ଆଖି ଆଗରେ । ସକାଳେ ମୁଖ୍ୟମନ୍ତ୍ରୀ ଆସିଲେ ଭୁବନେଶ୍ୱରରୁ । ରାସ୍ତାର ବାଁ ଡାହାଣରେ ଖାଲି ଶବ ଓ ଶବ । ସେ ଦୃଶ୍ୟ ଭୁଲିବାର ନୁହେଁ ।

ସାଥୀହୋଇ ଗୋଟିଏ ଜାଗାରେ ବର୍ଷେ ବର୍ଷେ ଧରି ରହିବା ପରେ ଯେ ଜଣେ ଆଉ ଜଣକୁ ହଠାତ୍ ଧର୍ମର ଦ୍ୱାହୀଦେଇ ଏପରି ମାରି ଦେଇପାରେ – ମୁଁ ନ ଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରି ପାରୁନଥିଲି ।

ରାତି ପାହିଗଲା ଭାବି ଭାବି । ମଣିଷ-ମଣିଷ ଭିତରେ ଥିବା ସମ୍ପର୍କ ଓ ବନ୍ଧୁତା ବିଷୟରେ ଭାବି ଚାଲିଥିଲି । ଏହି ସଂପର୍କ କ'ଣ ଏତେ ଦୁର୍ବଳ ହୋଇପାରେ ? କେଉଁଠି ଲୁଚି ରହିଥାଏ ମଣିଷର ଅସହିଷ୍ଣୁତା ଓ କ୍ରୋଧ ? ଆଉ କେଉଁ ପରିସ୍ଥିତିରେ ତାହା ବନ୍ୟାରେ ନଦୀର ନିମ୍ନଭାଗରେ ଜମିରହିଥିବା ପରିବେଶର ଅଂଶବିଶେଷପରି ବାହାରିଆସେ ଏକ ଭୟଙ୍କର ରୂପନେଇ । ରକ୍ତ... ଚାରିଆଡେ ରକ୍ତ... ମଣିଷର ରକ୍ତ ବନ୍ୟାପରି ଛୁଟିଛି । ରାଉରକେଲାରେ ଦଙ୍ଗା, କଟକରେ ଦଙ୍ଗା, କେନ୍ଦ୍ରାପଡ଼ାରେ ଦଙ୍ଗା । ମଣିଷର ଅସହିଷ୍ଣୁତା ଓ କ୍ରୋଧର ଇତିହାସ ସୁଦୂରପ୍ରସାରୀ – ସେ ପାଖରେ ଭିଏତ୍‌ନାମ୍ ଜଳୁଛି । ଗାନ୍ଧି, ଲିଙ୍କନ୍, କେନେଡି, ଲୁମୁମ୍ବା, ମାର୍ଟିନ୍ ଲୁଥର୍ – ସମସ୍ତେ ମଣିଷର ଏହି କ୍ରୋଧ ଓ ଅସହିଷ୍ଣୁତାର ଶିକାର ।

ବାସ୍ତବତାର ଏକ ନଗ୍ନ ମୁହଁ ମୋ ଆଖି ଆଗରେ । ମନଭିତରେ – ଟାଣ ନ ହେଲେ ବି, ସୁତୁଲିଟିଏ ମଣିଷ ଓ ମଣିଷ ଭିତରର ସ୍ନେହ ଓ ସଂପର୍କକୁ ଯୋଡ଼ି ଗୁନ୍ଥି ରଖିଥିଲା । ଅବ୍‌ଦୁଲ୍, ସୁପ୍ରିୟ, ଶରତ – ମୋ ବାଲ୍ୟଜୀବନର ବନ୍ଧୁ । ସେମାନଙ୍କ ସହ ସଂପର୍କରେ ଗଢ଼ା ଅର୍ଥ ଓ ମୂଲ୍ୟବୋଧ ମୋ ଜୀବନକୁ ଏକ ନିର୍ଦ୍ଦିଷ୍ଟ ରୂପ ଦେଉଥିଲା ବେଳେ ଏ ନଗ୍ନ, ନୃଶଂସ ବାସ୍ତବତା ପ୍ରଚଣ୍ଡ ଧକ୍କାଟିଏ ଦେଲା । ସେଇ ସହଜ, ସୁନ୍ଦର ସ୍ମୃତିର ଛବିଟି ଦୋହଲି ଯିବାର ମୁଁ ଲକ୍ଷ କରୁଛି... ମୋ ଭିତରେ ନୂଆ ହୋଇ ଗଢ଼ା ହୋଇଥିବା ସେତୁ ଆସ୍ତେ ଆସ୍ତେ ଭାଙ୍ଗି ଯାଉଛି ।

ମୁଁ କେମିତି ଗ୍ରହଣ କରିବି ଜୀବନର ଏହି କଠୋର ସତ୍ୟକୁ ? ଭୟକରି ଶିଖିବି, ନା ହସି ଉଡ଼େଇ ଦେବି ଜଣେ ପୁରୁଣା ଖେଳୁଆଡ଼୍‌ପରି ? 'ଭୟ' ଥିଲା ଅଭିଧାନର ଶବ୍ଦଟିଏ – ଏବେ ତାହା ମୋର ଛୋଟ ଜୀବନଟିକୁ ଆସ୍ତେ ଆସ୍ତେ ଗ୍ରାସ କରିବାକୁ ବସିଲାଣି ।

କ'ଣ କରିବି ମୁଁ ? ସବୁକିଛି ଯେମିତି ଗୋଳମାଳ ହୋଇଯାଉଛି – ମୋର ଭାବନା, ଆଦର୍ଶ ଓ ଲକ୍ଷ୍ୟପଥ ।

କ'ଣ ମୋ ଆଦର୍ଶ ? କେଉଁଟା ମୋ ଲକ୍ଷ୍ୟପଥ ଥିଲା ? କାଇଁ, ସେମିତି କିଛି ସଠିକ୍, ସ୍ପଷ୍ଟ ଚିତ୍ର ତ ଆଖି ଆଗକୁ ଆସୁନି ?

ପରୀକ୍ଷାରେ ଭଲ କରିଛି । ଇଂଜିନିୟରିଂରେ ସିଟ୍ ପାଇଛି ? ଇଂଜିନିୟର୍ ହେବି, ବଡ ଲୋକ ହେବି, ପଇସା କମେଇବି, ଭଲରେ ରହିବି... ସମୀକ୍ଷା ପରି ଝିଅଟିକୁ ସାଥୀଭାବେ ବାଛିନେବି, ସୁପ୍ରିୟ ବା ଶରତ ପରି ବନ୍ଧୁଙ୍କ ସହ ଛୁଟିଦିନ କଟେଇବି... ତା'ପରେ ?

ଗୋଟାଏ ପାଖରେ ଆଶା ଓ ଆନନ୍ଦ, ଉତ୍କଣ୍ଠା ଓ ଉତ୍ତେଜନା – ବଞ୍ଚିବାଲାଗି ପୁରୁଣା ଯୁକ୍ତି ଓ ନୂଆ ଆକର୍ଷଣ; ଆଉ ପାଖରେ ମନ ଭିତରେ ଲୁଚି ରହିଥିବା ସମ୍ଭାବନା – ବର୍ବରତାର, କ୍ରୋଧର । କେଉଁ ପାଖକୁ ଖସି ଆସିବି ମୁଁ ? ସାପ ପାଲିରେ ଅଠାନବେରୁ ସାତକୁ ଖସି ଆସିଲା ପରି ଏତେ ଲମ୍ବା ରାସ୍ତାକୁ ମାଡ଼ିଯିବା ପରେ ମୁଁ ପୁଣି ଶିଡ଼ିର ତଳ ପାହାଚକୁ ଫେରି ଆସିବି ?

ଆଃ, ସେ'କି ଦୁଃଖ, ସେ'କି ଜୀବନ !

## ୧୨

ଏଂଜିନିୟରିଂ କଲେଜରେ ପଶିବାପରେ ମୁଁ ଅନୁଭବ କଲି ମୁଁ ଭୁଲ୍ ଜାଗାକୁ ଚାଲିଆସିଛି । ର୍ୟାଗିଂ, ସଂଧ୍ୟାବେଳେ କ୍ୟାଣ୍ଟିନ୍‌ରେ ଆଡ୍ଡା, ତାପରେ କଲଚରାଲ୍ ଉଇକ୍, ଆନ୍ତର୍କଲେଜ ବକ୍ତୃତା ପ୍ରତିଯୋଗିତା ଭିତରେ ସାମିଲ୍ ହୋଇ ଭୁଲିଗଲି ନିଜର ଲକ୍ଷ୍ୟପଥ, ଭୁଲିଗଲି ଅନ୍ତରର କଥା ।

'ନୂଆ' ପ୍ରଥମେ ପ୍ରଥମେ ଭଲ ଲାଗେ । 'ନୂଆ' ସବୁବେଳେ 'ନୂଆ' ରହେନା, ଘଷରା ହୋଇଯାଏ, ଜଙ୍କ୍ ଲାଗେ, ଭଲ ଲାଗେନା, ବଦଳେଇ ଦେବାକୁ ଇଚ୍ଛାହୁଏ, କିନ୍ତୁ ବଦଳେଇ ହୁଏନା । ଏଂଜିନିୟରିଂ କଲେଜ ଜୀବନ ଠିକ୍ ସେମିତି ଲାଗିଲା – କୋର୍ସ, ସେସନାଲ୍, ସବୁ ଧରାବନ୍ଧା ନିୟମ ଅନୁସାରେ । ଭାରତୀୟ ପରୀକ୍ଷା ପଦ୍ଧତିକୁ ଯିଏ ବୁଝିଛି, ସେହି ଅନୁସାରେ ନିଜକୁ ପ୍ରସ୍ତୁତ କରିଛି, ସେ'ହିଁ ପାରିବାର ପିଲା । ଆଗେଇ ଯିବ ସେ, ଶୁଆପରି ସବୁ ମୁଖସ୍ତ କରିଯିବ, ପାଞ୍ଚ ଛ' ବର୍ଷର ମଡେଲ୍ ପ୍ରଶ୍ନର ଉତ୍ତର କରିନେବ, ପରୀକ୍ଷାରେ ସବୁ ଲେଖି ପକେଇବ, କୌଣସି ଗଣ୍ଡଗୋଳ ଭିତରେ ପଶିବ ନାହିଁ, ସାର୍‌ଙ୍କ ସହିତ, ପ୍ରିନ୍ସିପାଲ୍‌ଙ୍କ ସହିତ ଯୁକ୍ତି କରିବ ନାହିଁ –ସେ' ହିଁ ଉଚ୍ଚସ୍ଥାନ ପାଇବ, ମେଧାବୀ ଛାତ୍ର ରୂପେ ଗଣାଯିବ । ପାଶ୍ କରିବା ପୂର୍ବରୁ ଭଲ କମ୍ପାନୀରେ ଅଫର୍ ପାଇବ ।

ଏ' ସବୁ ଜାଣିବା ସତ୍ତ୍ୱେ ମୁଁ ସେପରି ହୋଇପାରିଲିନି । ଛୋଟିଆ ଗୋଟେ ଘଟଣାରୁ ରେଭେନ୍‌ସା ଓ କଟକ ମେଡିକାଲ୍ କଲେଜରୁ ଛାତ୍ର-ଆନ୍ଦୋଳନ ଆରମ୍ଭ ହେଲା ଓ ସାରା ଓଡ଼ିଶାକୁ ବ୍ୟାପିଗଲା । ଜଣେ ନିରୀହ ଛାତ୍ରପ୍ରତି ଜଣେ ରେଡିଓଦୋକାନୀର ଦୁର୍ବ୍ୟବହାରଜନିତ ଘଟଣାରୁ ଆରମ୍ଭ ହୋଇ ରାଜ୍ୟର ଦୁର୍ନୀତିଗ୍ରସ୍ତ ସରକାର ବିରୁଦ୍ଧରେ ସଂଗ୍ରାମ ଆରମ୍ଭ ହୋଇଗଲା । ସାରା ଓଡ଼ିଶାର କଲେଜଗୁଡ଼ିକରେ ଧର୍ମଘଟ, କିନ୍ତୁ ଆମ ଏଂଜିନିୟରିଂ କଲେଜ ଠିକ୍ ସେମତି ଚାଲିଥାଏ, କାରଣ – ଏଠାରେ ଧର୍ମଘଟ ଆଗରୁ କେବେ ହୋଇନି । ଟେକ୍‌ନିକାଲ୍ କଲେଜରେ କୁଆଡେ ହୁଏନା ।

ଆମଭିତରେ ଗୋପନରେ ସିନିୟର୍ ପିଲାଙ୍କ ସହ କଥାବାର୍ତ୍ତା ଚାଲିଲା । ଅନ୍ୟ କଲେଜରୁ ଛାତ୍ରନେତାମାନେ ଆସି ଆମକୁ ସେମାନଙ୍କ ସଂଗ୍ରାମ ସହ ସାମିଲ୍ ହେବାକୁ ପ୍ରବର୍ତ୍ତାଇଲେ ।

ମୋର କ'ଣ ହେଲା କେଜାଣି, 'ହୁ' କିନା ମାଡ଼ିଗଲି ଆଗକୁ । ମିଟିଂ କରିବାରେ ଲାଗିଗଲୁ ଆମେ ତିନି ଚାରିଜଣ, ସ୍ଥାନୀୟ ମେଡିକାଲ୍ କଲେଜର ଛାତ୍ରନେତାମାନେ ବି ଆସିଗଲେ । ତାପରେ ଯାହା ହୁଏ ? ପ୍ରିନ୍ସିପାଲ୍ ଡକେଇଲେ, ବାପାଙ୍କୁ ଟେଲିଗ୍ରାମ ଗଲା, ମୋତେ ରଷ୍ଟିକେଟ୍ କରିବାର ଚେତାବନୀ, ପୂର୍ବାଭାସ ।

ସେତିକିବେଳେ ଆନ୍ତର୍କଲେଜ ଇଂରାଜୀ ବକ୍ତୃତା ପ୍ରତିଯୋଗିତା ପାଇଁ ନିମନ୍ତ୍ରଣ ଆସିଥାଏ । କଲେଜ ତରଫରୁ ମୁଁ ଓ ସିନିୟର୍ ଛାତ୍ରଜଣେ ଗଲୁ ଓ ଚାଂପିୟନ୍ ସିଲ୍ଡ୍ ନେଇ ଫେରିଲୁ । ପ୍ରିନ୍ସିପାଲ୍ କହିଲେ – 'କଲେଜ ପାଇଁ ଗୌରବ ଆଣିଛ, ତେଣୁ ଏଥରକ ଛାଡ଼ିଦେଲି, ପରେ ଯଦି ଧର୍ମଘଟରେ ଲାଗିବ, ଆଉ ଶୁଣିବିନି, ତୁମକୁ କଲେଜ ଛାଡ଼ି ଚାଲିଯିବାକୁ ପଡ଼ିବ, ହଁ ।'

## ୧୩

ବସ୍‌ରେ ସେଦିନ ଭୀଷଣ ଭିଡ଼ । ଦୁଇଦିନପରେ ପୁରୀ ରଥଯାତ୍ରା । ସମସ୍ତେ ପୁରୀ ଯିବାରେ ବ୍ୟସ୍ତ । ବିରାଟ ଜନସମୁଦ୍ରରେ ଏକାକାର ହୋଇଯିବାକୁ ଯେମିତି ସମସ୍ତଙ୍କର ଇଚ୍ଛା । ମୁଁ କୌଣସି ଏକ ବସ୍‌ରେ ଉଠୁ ଉଠୁ ପୁରୀ (ସ୍ପେଶାଲ୍) ବସ୍‌ରେ ଉଠି ପଡ଼ିଛି । ସିଧା ଚକାଉପର ସିଟ୍ ମୋ ଭାଗ୍ୟକୁ ପଡ଼ିଗଲା । ଚଢ଼ିତ ଯାଇଛି, ଟିକେଟ୍‌ଖଣ୍ଡକ ପକେଟ୍‌ରେ, ବସିଗଲି । ଘଣ୍ଟାଏ ଖଣ୍ଡେ ଝର୍କାବାହାରେ ମାଡ଼ି ଚାଲିଥିବା ଅନ୍ଧାରକୁ ଅନାଇ ରହିଲି । ଭାବିଲି, ଭଲ ହେଲା, ରାତିଟାଯାକତ ବସ୍‌ରେ କଟିଯିବ । ଭାବିଯିବି ପଛଆଗ ଜୀବନ ବିଷୟରେ । ବେଶ୍ ଭଲ ଲାଗିବ । ଚିହ୍ନା ତ କେହି ନାହାନ୍ତି, ତେଣୁ ମଝିରେ ମଝିରେ ମୋ' ଭାବନାଚିଂତାରେ କେହି ଦଖଲ ଦେବେନି, ୟାଡୁ ସ୍ୟାଡୁ କିଛି ପଚାରିବେନି, ମୋ' ରାତିଟି ଭଲରେ କଟିଯିବ । ଖାଲି ଭାବି ଚାଲିବି ।

ବସ୍ ବାହାରେ ଅନ୍ଧାର, ବସ୍ ଭିତରେ ଅନ୍ଧାର । ମୁଁ କିନ୍ତୁ ପରିଷ୍କାର ଦେଖିପାରୁଛି ଜୀବନକୁ, ଜୀବନର ଘଟଣାସ୍ରୋତକୁ । ଭଲ ଭାବରେ ଦେଖିପାରୁଛି, କିନ୍ତୁ ବୁଝିପାରୁନି । କିଛି ବୁଝିପାରୁଛି, ସବୁ ବୁଝିପାରୁନି । ମନେ ତ ରହିଛି ସବୁ ।

ତା' ହେଲେ ଏଂଜିନିୟରିଂ ପାଠ ଗଲା ? ଏବେ ପଢ଼ିବି କ'ଣ ? କେଉଁ କଲେଜ ନେବ ମୋତେ ? ବି.ଏସ୍.ସି. ପଢ଼ିବି, ନା ବି.ଏ. ? ହଠାତ୍ ହସି ପକେଇଲି । ଶଂଭୁ କଥା

ମନେ ପଡ଼ିଗଲା । ରେଭେନ୍‌ସା କଲେଜ ବଟାନି ଡିପାର୍ଟମେଣ୍ଟ ବଗିଚାରେ ଶଂଭୁ ଗୋଲାପଟିଏ ଛିଡ଼ାଇଲାବେଳେ ପ୍ରିନ୍ସିପାଲ୍ ଧରିପକାଇଲେ, ଆଉ ତା' ହାତକୁ ଜୋର୍‌ରେ ଚିମୁଟିଦେଲେ ।

'ଆଃ, ସାର୍ କାଟୁଛି' ବୋଲି ଶଂଭୁ ବଡ଼ ପାଟିକଲା । ଡଃ ସାମଂତରାୟଂକ ପାଟିରୁ ବାହାରି ପଡ଼ିଲା – 'ତୁମକୁ କାଟୁଛି ? ଫୁଲଟିଏ ଛିଂଡାଇଲା ବେଳେ ଗଛକୁ କାଟୁନି ?'

ସତେ ତ, କେଡ଼େ ବଡ଼ ଅନୁଭବ, କେତେ ଅନୁକମ୍ପା ?

ବସ୍ ଧୀରେ ଧୀରେ ରହିଲା । କ'ଣ ଗୋଟେ ସହର ଆସିଲା ବୋଧେ । ଦଳେ ଓହ୍ଲେଇ ପଡ଼ିଲେ ଖାଇବାକୁ । ମୁଁ ବି । ଢାବା ଭଳି ଦୋକାନଟି ଦିଶୁଛି । ନାନ୍ ଦୁଇଟି, ଅଧାପ୍ଲେଟ୍ ଅଣ୍ଡାତଡ଼୍କା ମଗେଇଲି । ଅନେଇଲାବେଳକୁ ମ୍ୟାନେଜର୍ ଚଉକିରେ ବସିଛି ଝିଅଟିଏ । କୋଉଠି ଦେଖିଲା ଦେଖିଲା ପରି ମନେ ହେଲା । କୋଉଠି ?

ପୁଣିଥରେ ଅନେଇଲି – ଝିଅଟି ଖାଲି ଟଂକା ରଖି ପକାଉଥାଏ, ଖୁଚୁରା ଫେରଉଥାଏ, କାହାକୁ ଅନେଇବା ପାଇଁ ତା'ର ବେଳ ନାହିଁ ।

ମୁଁ ବିଲ୍ ଦେଲାବେଳକୁ ସେ କିନ୍ତୁ ଅନେଇଲା । କହିଲା –'ପଚାଶ ତଳକୁ ନାହିଁ ?'

ମୁଁ କହିଲି 'ନାହିଁ', ପ୍ରକୃତରେ କିନ୍ତୁ ଥିଲା ।

'ଆଚ୍ଛା ତୁମକୁ କେଉଁଠି ଦେଖିଛି କହିଲ ?'

ଆବଶ୍ୟକତାରୁ ଅଧିକ ଆଶ୍ଚର୍ଯ୍ୟ ହେବାର ଛଳନାକରି କହିଲି – 'ମୋତେ ?'

ସେ କହିଲା – 'ଆରେ ତମେତ ଗଲା ସପ୍ତାହରେ ଭାଷଣ ମାରୁଥିଲ ନା ? କଲେଜପିଲାଙ୍କ ସଭାରେ ? ହଁ ତ !'

'ବସ୍ ଛାଡ଼ିବାକୁ ବସିଲାଣି । ବାକି ଟଂକାଟା ଫେରେଇଲେ...'

'ଆଚ୍ଛା, ଆଚ୍ଛା ନିଅ' ଟେବୁଲ୍ ଉପରେ ପଡ଼ିଥିବା ଖବରକାଗଜ ମୋ ଆଡ଼କୁ ବଢ଼େଇଦେଇ କହିଲା – 'ହେଇପା, ତୁମମାନଙ୍କ ବିଷୟରେ ବାହାରିଛି, ସେ ଦିନ ଯେଉଁ ଭାଷଣ ମାରୁଥିଲ !'

ମୁଁ ଟିକେ ଅପ୍ରସ୍ତୁତ ହେଇଗଲି । ପରୀକ୍ଷା ସରିବା ଆଗରୁ ଫଳ ବାହାରିଗଲେ ଯେମିତି ଲାଗେ । ଖବରକାଗଜରେ ନାଁ ବାହାରିଛି ! ପୁଣି ବାହାରିଛି ଦକ୍ଷିଣ ଓଡ଼ିଶା ଛାତ୍ରସମାଜ, ସମାଜ ଓ ରାଜନୀତିରେ ଚାଲିଥିବା ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରଖିବ, ଇତ୍ୟାଦି ଇତ୍ୟାଦି ।

ଝିଅଟିକୁ ଆଉଥରେ ଅନାଇବାକୁ ଇଚ୍ଛା ହେଲା । ଡ୍ରାଇଭର୍ ତେଣେ ହର୍ଣ୍ଣ ବଜେଇଲାଣି । ମୁଁ ବସ୍‌କୁ ଉଠିଗଲି । ବସ୍ ଆଗକୁ ମାଡ଼ିଚାଲିଲା । କଣ୍ଡକ୍‌ଟର ପାଖକୁ ଆସିବାରୁ କହିଲି ଲାଇଟ୍‌ଗୁଡ଼ା ଲିଭେଇଦେବାକୁ ।

ଅନ୍ଧାର ହୋଇଗଲା ପୁଣି । ଆଗଠାରୁ ଆହୁରି ଭଲ ଲାଗିଲା । ପାଖରେ ବସିଥିବା ଭଦ୍ରଲୋକ ବୋଧେ ଓହ୍ଲେଇଗଲେଣି । ମୁଁ ବେଶ୍ ଗୋଡ଼ହାତ ଲମ୍ବେଇ ବସିଲି । କ'ଣ ଭାବିବି ଭାବୁଭାବୁ ନିଦ ଲାଗିଗଲା । ହଠାତ୍ ଏକ ଶବ୍ଦରେ ନିଦ ଭାଙ୍ଗିଗଲା – ବସ୍ ଆସି ବଡ଼ଦାଣ୍ଡରେ ।

ବସ୍‌ରୁ ସିଧା ଓହ୍ଲେଇପଡ଼ି ରିକ୍‌ସାଟେ ଧରିଲି । କହିଲି – 'ଚାଲ, ସମୁଦ୍ରକୂଳକୁ ଯିବା ।' କିଛିସମୟ ଆଗେଇଯିବାପରେ ମୁଁ ଲକ୍ଷ୍ୟ କଲି ରିକ୍‌ସା ଚଳାଉଛି ପିଲାଟେ – ବୟସ ସତର/ଅଠର ଖଣ୍ଡେ ହେବ, ବେଶ୍ ଭଲ ସ୍ୱାସ୍ଥ୍ୟ । ଗୁଣୁ ଗୁଣୁ ଗୋଟେ ଗୀତ ଗାଇଲାପରି ଶୁଭୁଥାଏ ।

'କେତେଦିନ ହେଲା ରିକ୍‌ସା ଚଳାଉଛୁ ?' ପଚାରିଲି । ସେ କହିଲା – 'ଏଇ... ଚାରିବର୍ଷ ହେଲା ।' ତା ସ୍ୱରରେ ଆନନ୍ଦ ବା ଆତ୍ମସଂତୋଷ ନଥିଲା ନିଶ୍ଚୟ, କିନ୍ତୁ ନିଶ୍ଚିତଭାବେ ଦୁଃଖ ବା ବିରକ୍ତି ନଥିଲା । ପିଲାଟି ଜୀବନକୁ ଅନେକ ସହଜ ଭାବେ ଗ୍ରହଣ କରିଥିଲାପରି ମୋର ମନେହେଲା ।

ସମୁଦ୍ରକୂଳରେ ମୁଁ ସେତେବେଳେ ପହଞ୍ଚି ସାରିଥିଲି ।

'କେତେ ହେଲା' – ପଚାରିବାରୁ ସେ ଟିକେ ହସିଲା ଓ କହିଲା – 'ବାବୁ, ଯାହା ଦବ... ବାବୁ ତମେ କ'ଣ କଲେଜପିଲା ? ନା ଚାକିରି କଲଣି ?'

ହସିବା ପାଳି ଏଥର ମୋ'ର । 'ଚାକିରି ?' ଶବ୍ଦଟିକୁ ଶୁଣିବାକୁ କେବେ ଭଲ ଲାଗିନି । ଅଥଚ ପୁଅ ଚାକିରି ପାଇଲେ ବାପ, ମା ଖୁସି ହୁଅନ୍ତି । 'ସରକାରୀଚାକିରି' ଆହୁରି ଆକର୍ଷଣୀୟ ବ୍ୟବସ୍ଥାଟିଏ । ସରକାରଙ୍କ ଗୋଲାମ ହେବ, ସେଥିରେ ପୁଣି 'ପ୍ରଥମ ଶ୍ରେଣୀ'/ 'ଦ୍ୱିତୀୟ ଶ୍ରେଣୀ' ଷ୍ଟେଟସ୍ ରହିଛି । କେତୋଟି ଡିପାର୍ଟମେଣ୍ଟରେ ଫେବୃୟାରୀ/ ମାର୍ଚ୍ଚ ମାସରେ ବେଶ୍ କିଛି ଉପୁରି ଆୟର ବ୍ୟବସ୍ଥା ରହିଛି – ମିଛ ବିଲ୍‌ରେ ଦସ୍ତଖତ କରି ବିଭିନ୍ନ ସ୍ତରରେ, ବିଭିନ୍ନ ଭାବରେ ରୋଜଗାରର ସୁନିୟନ୍ତ୍ରିତ ଯୋଜନାମାନ ରହିଛି । ଥରେ ସେ ଭିତରେ ପଶିଲେ ଆଗକୁ ରାସ୍ତା ବୋଧହୁଏ ଆପେ ଆପେ ଦେଖାଯାଏ । ଧରାପଡ଼ିବାର ଦୃଷ୍ଟାନ୍ତ ରହିଛି ସତ, କିନ୍ତୁ ସେ କାଁ ଭାଁ, ଶହେରେ ନୁହେଁ, ହଜାରରେ ଗୋଟେ, ଦୁଇଟା । ତା' ବି ବେଶୀ ହେଲେ ସସ୍‌ପେନ୍‌ସନ୍, ବର୍ଷେ ନ ପୂରୁଣୁ ପୁଣି କାମରେ ପୁନର୍ନିଯୁକ୍ତି, ରିଇନ୍‌ଷ୍ଟେଟେଡ୍ ହେବାର ସମସ୍ତ ସୁବିଧା ରହିଛି, ବେଳେ ବେଳେ କ୍ଷତିପୂରଣ ସହ ।

ଗଣତନ୍ତ୍ର ଶାସନରେ ଦୁର୍ନୀତି ବିଭିନ୍ନ ସ୍ତରରେ ବସା ବାନ୍ଧିଥାଏ । ଖବର କାଗଜରେ ତ ପୃଷ୍ଠା ପରେ ପୃଷ୍ଠା ଦୁର୍ନୀତି – ରାଜନୀତିରେ, ବିଶ୍ୱବିଦ୍ୟାଳୟ ପରୀକ୍ଷାରେ, ଟେକ୍‌ନିକାଲ୍ କଲେଜ ଆଡ୍‌ମିସନ୍‌ରେ, ସରକାରୀ ଚାକିରିରେ – ଦୁର୍ନୀତି ଧରାବନ୍ଧା ନୀତି ହୋଇଗଲାଣି ।

ହଠାତ୍ ନିଜକୁ ପ୍ରଶ୍ନ କଲି – ତେବେ ବକ୍ତୃତା/ ପ୍ରବନ୍ଧ ପ୍ରତିଯୋଗିତାରେ ଯେଉଁ ନୀତି, ଆଦର୍ଶ ସପକ୍ଷରେ ବଳିଷ୍ଠ ଯୁକ୍ତି ବାଢୁଥିଲୁ ଆମେ, ସେ' ଗୁଡ଼ା କ'ଣ ସବୁ ମିଛ ? ସେ ସାର୍ଟିଫିକେଟ୍, ସେ ପୁରସ୍କାର... ?

ସମୁଦ୍ରବାଲିରେ ସ୍ୱିମ୍-ସୁଟ୍ ପିନ୍ଧା ଦମ୍ପତିଟି ମୋର ଦୃଷ୍ଟି ଆକର୍ଷଣ କଲେ । ସ୍ୱାମୀ ବୋଧେ । ବେକରେ ଝୁଲୁଛି କ୍ୟାମେରାଟି... ଆଉ ପତ୍ନୀ ସମୁଦ୍ର ଭିତରକୁ ପଶି ଯାଉଛନ୍ତି । ନୋଳିଆ ମଝିପାଣିରୁ ଡାକୁଛି । ପତ୍ନୀ ଶୁଣୁନାହାନ୍ତି । ପାଣି ଭିତରକୁ ମାଡ଼ି ଚାଲୁଛନ୍ତି । ସ୍ୱାମୀଜଣଙ୍କ ମୋତେ ଦେଖି କ୍ୟାମେରାଟି ବଢ଼େଇ ଦେଲେ ଓ ନିଜେ ମିହିର ସେନ୍ ପରି ପାଣି ଭିତରକୁ ଡେଇଁ ପଡ଼ିଲେ ।

ମୁଁ କ୍ୟାମେରାଟିକୁ ଦେଖିବାରେ ବ୍ୟସ୍ତ । ଇଟାଲି ତିଆରି କ୍ୟାମେରା – ହାତ ଆଙ୍ଗୁଠିକୁ ସଜାଗ କରିନେଲି, କାଳେ କେଉଁ ସଟର୍‌ରେ ବାଜିଯିବ, ଚିପି ହୋଇଯିବ । ରିଲ୍ ଏକ୍ସପୋଜ୍ ହୋଇଯିବ ?

## ୧୪

ରାତି ଦଶଟା ଖଣ୍ଡେ ହେବ । ସମୁଦ୍ରକୂଳ ନିଛାଟିଆ ହୋଇଗଲାଣି । ମୁଁ ଏକା । ତିରିଶ ଚାଳିଶ ଫୁଟ ଦୂରରେ ତିନି ଚାରିଜଣ ବସିଲାପରି ମନେହେଲା । ସମୁଦ୍ରର ଥଣ୍ଡା ପବନ ଶରୀର ଭିତରକୁ ଭେଦି ଗଲାଣି । ମୋ' ଦୃଷ୍ଟି ଦୂର ଦିଗ୍‌ବଳୟର ଅନ୍ଧକାର ପର୍ଯ୍ୟନ୍ତ । ମୁଁ ନିଜକୁ ପଚାରିବାରେ ଲାଗିଛି –

'ପୁରୀ କାହିଁକି ଆସିଛି ? ନିଶ୍ଚୟ ରଥଯାତ୍ରା ଦେଖିବାକୁ ନୁହେଁ । ସମୁଦ୍ରକୂଳରେ ଦୁଇ ତିନୋଟି ସଂଧ୍ୟା ବିତେଇ ଦେବାକୁ, ନା ପୁରୀ କଲେଜରେ ପଢ଼ିବାକୁ ?'

ଆସ୍ତେ ଆସ୍ତେ ମୋର ମନେ ପଡିଲା – ନା, ସେଭଳି କିଛି କାରଣ ତ ନାହିଁ । ବସ୍‌ରେ ଚଢ଼ିଗଲି, ବସ୍‌ଟି ପୁରୀ ଆସିଲା, ତେଣୁ ମୁଁ ବି । ମୁଁ ତ କିଛି ସ୍ଥିର କରି ଆସିନି, ନିଜ ଇଚ୍ଛାରେ ଆସିନି, ଆସୁ ଆସୁ ଆସିଗଲି । ଜୀବନରେ କ'ଣ ଏମିତି କିଛି ସ୍ପଷ୍ଟ ବିଚାର ନକରି, କିଛି ସ୍ଥିର ନକରି, କିଛି ଇଚ୍ଛା ନକରି , କାମସବୁ କରୁ କରୁ କରିଯିବି ? ମୁଁ ସ୍ୱାଧୀନ, ଆଉ କାହାର ପରାମର୍ଶ ନେବା କ'ଣ ଦରକାର ? ଏପରିକି, ଭାବିବା କ'ଣ ଦରକାର ? ବେଶି ଭାବିଲେ, ଖୋଳି ତାଡ଼ି, ଲାଭ-କ୍ଷତି ତଉଲିଲେ ଶେଷରେ କାମ କିଛି ହୁଏନା ।

ମୁଁ କ'ଣ କରିବି ? କ'ଣ ପଢ଼ିବି ? ପୁରୀ କଲେଜରେ ପ୍ରିନ୍ସିପାଲ୍‌ଙ୍କୁ ଦେଖା କରିବି । କେଉଁ ପରିସ୍ଥିତିରେ ଏଂଜିନିୟରିଂ କଲେଜ ଛାଡ଼ିଲି, କହିବି । ସେ ମୋତେ ବି. ଏସ୍.ସି./ ବି.ଏ. କ୍ଲାସରେ ଦେବେନି ସିଟ୍ ?

'ଏ ବାବୁ, ଏଠି ଆଉ ବସନାହିଁ । ରାତି ବହୁତ ହେଲାଣି ।' ଦେଖିଲି ଜଣେ ପୋଲିସ୍ କନ୍‌ଷ୍ଟେବ୍‌ଲ୍ ମୋ' ଆଗରେ ।

ମୁଁ କହିଲି – 'ପୁରା ରାତିଟା ଏଠି ଯଦି ମୁଁ ଶୋଇରହେ ?'

'ନା, ଆଲାଉ ନାହିଁ ।'

ମୋତେ ଲାଗିଲା ହାଟରେ ପରିବାବାଲା କୌଣସି ଏକ ପରିବା ନାହିଁ ବୋଲି କହୁଛି । ଦେଖିଲି – ପରିସ୍ଥିତିକୁ ନାଟକୀୟ କରିବାର କୌଣସି ଆବଶ୍ୟକତା ନାହିଁ । ଧୀରେ ଉଠି ପଡ଼ିଲି ଓ ଷ୍ଟେସନ୍ ଆଡ଼କୁ ଚାଲିଲି । ଷ୍ଟେସନ୍ ପ୍ଲାଟଫର୍ମ୍‌ରେ ଶୋଇଗଲେ ହେବ, ଭାବିଲି । ନା ଭଲ ହେବନି । କିଛି ଭଲ ଲାଗିଲାନି । ଷ୍ଟେସନ୍ ଡର୍ମିଟୋରୀରେ ଖାଲି ଜାଗା ଥିଲା, ପାଞ୍ଚ ଟଙ୍କାରେ ବୁକିଂ – ଲମ୍ବା ହୋଇ ଖଟରେ ଶୋଇପଡ଼ିଲି । ନିଦ ବି ହୋଇଗଲା ।

ପାଞ୍ଚଟାରେ ସକାଳ ହୋଇଗଲା, ଏକା ନିଶ୍ୱାସରେ ଦଉଡ଼ିଲି ସମୁଦ୍ରକୂଳକୁ । ଶାଂତ ପରିବେଶ । ଖାଲି ବାଲି ଓ ପାଣି । ପୂର୍ବ ଦିଗରେ ସୂର୍ଯ୍ୟୋଦୟର ପ୍ରତିଶ୍ରୁତି । ଡଂଗାଟିଏ ବାଲି ଭିତରେ ଶୋଇରହିଛି । ବୋଧେ ପାଞ୍ଚବର୍ଷତଳେ, ଦଶବର୍ଷ ତଳେ – କଲିକତାରୁ ନୂଆ ବାହା ହୋଇଥିବା ସ୍ୱାମୀ ସ୍ତ୍ରୀ ଦୁଇଜଣ ଆସି ଏହି ଡଙ୍ଗାରେ, ନୋଳିଆକୁ ନ ନେଇ, ସମୁଦ୍ର ଭିତରକୁ ଯାଇଥିଲେ । ସମୁଦ୍ରରେ ଝଡ଼ ଆସିଲା ଓ ସେମାନେ ଆଉ ତାଙ୍କ ପୁରୁଣା ପୃଥିବୀକୁ ଫେରି ପାରିଲେନି ।

ବା ଏହି ଡଂଗାରେ ଦୁଇଜଣ ସ୍କୁଲପିଲାଙ୍କୁ ନେଇ ମାମୁଁ ସମୁଦ୍ର ଭିତରକୁ ଯାଇଥିଲେ । ଖୁବ୍ ମଜାରେ କଟିଲା ତିନି ଚାରି ଘଣ୍ଟା ଓ ସେମାନେ ଫେରି ଆସିଥିଲେ କୂଳକୁ - ନୂତନ ଉନ୍‌ମାଦନା ଓ ଆନନ୍ଦରେ । ଡଙ୍ଗାଟିକୁ କେହି ବ୍ୟବହାର କଲାପରି ମନେହୁଏନା, ଅନ୍ତତଃ ଚାରି ପାଞ୍ଚ ବର୍ଷ ହେଲା । ଡଙ୍ଗାପାଖର ଛାଇ ମୋତେ ଟାଣିନେଲା, ପାଖକୁ ଗଲି । ଦେଖିଲି, ବିଦେଶୀ ଯୁବକ ଜଣେ ଧ୍ୟାନମଗ୍ନ – ଡାହାଣ ଗୋଡ ଡାହାଣ ହାତ ଓ ମୁହଁରୁ ଫାଳେ ଛାଇରେ, ବାକି ଶରୀରର ଅଂଶ ଖରାରେ । ଅଦ୍ଭୁତ ଦୃଶ୍ୟ ! ମୁଁ ଅବାକ୍ ହୋଇଗଲି – ଜୀବନର ଆଉ ଏକ ନୂଆ ରୂପଟିଏ ଦେଖିଲାପରି ମନେ ହେଲା ।

ଏଇ ତା' ହେଲେ ଜୀବନ ଯାହାକୁ ସମ୍ପୂର୍ଣ୍ଣ ବୁଝିବାକୁ ହେଲେ ବାସ୍ତବତାର ଉଭୟ ଦିଗ ମୋତେ ଦେଖିବାକୁ ପଡ଼ିବ – ଅନ୍ଧାର ଓ ଆଲୁଅ, ଦୁଃଖ ଓ ଆନନ୍ଦ, ଲୋଭ ଓ ବିକାର, 'ନା' ଓ 'ହଁ', ମୃତ୍ୟୁ ଓ ଜୀବନ ? ଗୋଟିଏ ଦିଗକୁ ଅନେଇଲେ, ଗୋଟିଏ କଣରେ ବସା ବାନ୍ଧି ନେଲେ, ଜୀବନର ଗୋଟିଏ ଭାଗ ହିଁ ଦେଖିହେବ, ବୁଝିହେବ – ଅନ୍ୟଭାଗଟି ନୁହେଁ । ମୋତେ ଲାଗିଲା ଆମେ ସମସ୍ତେ ଅସମ୍ପୂର୍ଣ୍ଣ ହୋଇ ରହୁଛେ, କାରଣ ଜୀବନକୁ ଅସମ୍ପୂର୍ଣ୍ଣ ଭାବେ, ଭାଗ ଭାଗ କରି ବଞ୍ଚି ଚାଲିଛେ, ବୁଝି ଚାଲିଛେ । କୌଣସି ସତ୍ୟକୁ ଆମେ ଆବିଷ୍କାର କରିପାରିବାନି, ବୁଝିପାରିବାନି, ଯେତେଦିନ ପର୍ଯ୍ୟନ୍ତ ଆମେ ସେହି ସତ୍ୟର ଦୁଇଟି ବିପରୀତମୁଖୀ ଭାଗକୁ ବୁଝିପାରିନାହୁଁ ।

ଯୁବକ ପ୍ରକୃତିସ୍ଥ ହେଲେ ଓ କିଛି ନକହି ମୋ ଆଡ଼କୁ ଅନେଇଲେ, ତା' ପରେ ସମୁଦ୍ରକୁ ।

ମୁଁ ପାଖରେ, ଛାଇରେ ବସିଲି ।

'ନିଶ୍ଚୟ ଭଲ ଲାଗୁଛି ଏଠାକୁ ଆସିବାପରେ ?' ଇଂରାଜୀରେ ପଚାରିଲି । ସେ ହସିଲେ ଓ ତା'ପରେ ଗମ୍ଭୀର ହୋଇଗଲେ ।

ମୁଁ ବି ଗମ୍ଭୀର ହୋଇଗଲି । ଆଗରେ ବାଲି, ତା'ପରେ ସମୁଦ୍ର, ସମୁଦ୍ରରେ ଢେଉ, କିନ୍ତୁ ଶାନ୍ତ ଓ ସ୍ୱଚ୍ଛ ଢେଉ – ମୋ' ପାଦ ପର୍ଯ୍ୟନ୍ତ ଆସିଯାଉଛି, ଡଙ୍ଗାର ତଳ ଭାଗକୁ ଛୁଇଁ ପୁଣି ଫେରି ଯାଉଛି ସମୁଦ୍ରର କୋଳକୁ ।

ସମୁଦ୍ର ଭିତରେ ଦିଗ୍‌ବଳୟ ତଳକୁ ମୋ' ଦୃଷ୍ଟି ଲମ୍ବି ଯାଇଥିଲା । ସନ୍ଧ୍ୟା ହୋଇଗଲାଣି । ସୂର୍ଯ୍ୟଙ୍କ ଶେଷରଶ୍ମି ପାଣିସହିତ ଲୁଚକାଳି ଖେଳି ବସିଲାଣି । ମୁଁ ଆସ୍ତେ ଆସ୍ତେ ଉଠିଲି ।

ପୁଣି ପରଦିନ ସକାଳେ ମୁଁ ସମୁଦ୍ରକୂଳରେ ହାଜର । ଖରାବେଳେ ଡଙ୍ଗା ପାଖରେ । ସମୁଦ୍ରରେ ଗାଧୁଆ, ପୁଣି ଅପେକ୍ଷା, ଦେଖିବାପାଇଁ କେମିତି ଆକାଶ ଓ ସମୁଦ୍ରର ରଂଗ ଧୀରେ ଧୀରେ ବଦଳୁଛି । ସୂର୍ଯ୍ୟ ଅସ୍ତ ଯାଉଛନ୍ତି ଦିଗ୍‌ବଳୟ ତଳେ ସମସ୍ତ ଅଂଧକାରକୁ ଏକଜୁଟ୍ କରିଦେଇ । ଆଉ ସେହି ଅନ୍ଧାର ଭିତରେ ମନେହେଲା ମୋର ଅନେକ ପ୍ରଶ୍ନର ଉତ୍ତର ଲୁଚି ରହିଛି ।

ପୂର୍ବରୁ ଆହୁରି ସଜାଗ, ଆହୁରି ଆଶାୟୀ ହୋଇ ଉଠିଲି । ନା, ଅନ୍ଧକାର ସହିତ ମୋତେ ଗୋଟେ ବୁଝାମଣା କରିବାକୁ ପଡ଼ିବ । ପାଖରେ ଥିବା ଟଙ୍କା ସରିବା ଉପରେ... କଲେଜରେ ପ୍ରିନ୍ସିପାଲ୍ କୌଣସି ଆଗ୍ରହ ଦେଖେଇଲେ ନାହିଁ । ଶେଷରେ ମୁଁ ପୁରୀ ଛାଡ଼ିଲି ।

## ୧୫

ମୁଁ ପୁଣି ବସ୍ ଭିତରେ । ଯେ ଆଉ ଏକ ପୃଥିବୀ । କେହି କାହାକୁ ଜାଣନ୍ତି ନାହିଁ, ଅଥଚ ଗୋଟିଏ ପରିବାର ପରି ଦିଶନ୍ତି, ଗୋଟିଏ ପରିବାର ପରି ବସନ୍ତି, ହସନ୍ତି, ବିରକ୍ତ ହୁଅନ୍ତି । ଚିହ୍ନା ଲୋକପରି ଆଲୋଚନାଟିଏ ଆରମ୍ଭ କରି ଦିଅନ୍ତି । ମୋ ମନରେ ଜୀବନର ଏକ ଅସଂପୂର୍ଣ୍ଣ, ଅସ୍ପଷ୍ଟ ମାନଚିତ୍ର । ସେ ସବୁ ଭଲ ଲାଗେନା, କିନ୍ତୁ ମୁଁ ଚଳେଇ ନିଏ, ଭାବେନା ସେମାନଙ୍କ ବିଷୟରେ । ବଞ୍ଚିଲାବେଳେ, ଜୀବନର ଛୋଟବଡ଼ ଘଟଣାକୁ ଓଲଟେଇ, ଏପାଖ ସେପାଖ କରି ଭାବିଲାବେଳେ, ସବୁ କ'ଣ ଭଲ ଲାଗେ ? ଭଲ ଲାଗିବା କ'ଣ ଦରକାର ? ନିଜକୁ ପଚାରେ, ଆଉ ମନେ ମନେ ହସେ ସରଳିଆ, ହାଲୁକା ହସଟିଏ ।

ମୋ ପାଖରେ ବଡ଼ ମଣିଷ ଜଣେ, ମୁଁ ତାଙ୍କୁ ଭଲକରି ଦେଖିନି । ଦେଖିବାର ଇଚ୍ଛା ନଥିଲା, ତେଣୁ । ଦୁହେଁ କୌଣସି ଗୋଟେ ଷଡ଼ଯନ୍ତ୍ରରେ ଲିପ୍ତ ରହିଥିଲା ପରି ବସିଥାଉ । ନୀରବରେ ଅପେକ୍ଷା କରିବାର ଛଳନା କଲାଭଳି ଅପେକ୍ଷା କରିଥାଉ ସୁଯୋଗଟିଏ ପାଇଁ । ମୁଁ କିନ୍ତୁ ଅପେକ୍ଷା କରୁଥାଏ ସମସ୍ତେ ଓହ୍ଲାଇଯିବାର ପରମୁହୂର୍ତ୍ତକୁ, ଯେତେବେଳେ ଆଉ କେହି ନଥିବେ ବସ୍‌ରେ, କେବଳ ଡ୍ରାଇଭର୍, କଣ୍ଡକ୍ଟର୍, କ୍ଲିନର୍, ଓ ମୁଁ – ବାସ୍ ।

ମନ୍ଦିରଟିଏ ଆସିଲା । ବସ୍ ରହିଗଲା । ପୁରୋହିତ ଆସି କଣ୍ଡକ୍ଟର୍‌ଠାରୁ କିଛି ପଇସା ନେଇଗଲେ ବୋଧେ ! ଗୁଡ଼ାଏ ଲୋକ ଧଡ଼ାଧଡ୍ ଓହ୍ଲେଇପଡ଼ି ମାଡ଼ିଗଲେ ଦେବୀଙ୍କ ମୂର୍ତ୍ତିଆଡ଼କୁ । ମୁଁ ସେମିତି ଅବିଚଳିତ ବସିଥାଏ ଓ ଲକ୍ଷ୍ୟ କରୁଥାଏ - ଏମାନେ ଏମିତି କାହିଁକି ହେଉଛନ୍ତି ? ଛୋଟ ପିଲାଙ୍କ ପରି ? ପାଖ ଲୋକ ଯାହା କରୁଛି, କରିଯାଅ, ଯାହା ଭାବୁଛି ଭାବିଚାଲ, ଯେଉଁଠି ସେ ନଇଁ ପଡୁଛି, ତୁମେ ବି ନଇଁଯାଅ, ସିଧା ଛିଡ଼ାହୋଇ ଯାଉଛି ? ତୁମେ ବି ସିଧା ହେଇଯାଅ । କିନ୍ତୁ ଛୋଟ ପିଲାଟିଏ ଜାଣିବାକୁ ଚାହେଁ, ବୁଝିବାକୁ ଚାହେଁ – ହୁଏତ ଜାଣିବାର ଆନନ୍ଦ, ବୁଝିବାର ଆନନ୍ଦ ଏକା ନୁହେଁ । ମୋତେ ଲାଗିଲା, ଖବରକାଗଜ ପଢ଼ି, ଗପଟିଏ ପଢ଼ି, ନାଟକ ବା ସିନେମାଟିଏ ଦେଖି ଜାଣିବାର ଆନନ୍ଦ ମିଳିପାରେ, କିନ୍ତୁ ବୁଝିବାର ଆନନ୍ଦ ପାଇଁ ବୁଝିବାର ଇଚ୍ଛା ଦରକାର । ଇଚ୍ଛା ଜରିଆରେ ହିଁ ଆନନ୍ଦ ଉପଲବ୍ଧ ହୁଏ । ଯେପରିକି ପିଲାଦିନେ ପାହାଡ଼ ଉପରେ ବୁଦ୍ଧଙ୍କ ଜୀବନୀ ପଢ଼ି ମୋତେ କେମିତି କେମିତି ଲାଗୁଥିଲା, ବୁଝିବାର ଇଚ୍ଛା ନିଶ୍ଚିତ ଭାବେ ଥିଲା, କିନ୍ତୁ କିଛି ଫଳ ହେଲାନି, ବୁଝିପାରିଲିନି ଅନେକ କଥା,ସାରମର୍ମ ବାହାରେ ବାହାରେ ରହିଗଲା । ତା ହେଲେ କ'ଣ ନିଜେ ଅନୁଭବ ନ କରିବା ଯାଏ ମଣିଷ

ଅନୁଭୂତିକୁ ବୁଝିପାରେନା ? ଏଇ ସେହିଦିନ ହର୍ମାନ୍ ହେସେଙ୍କ ''ସିଦ୍ଧାର୍ଥ'' ଉପନ୍ୟାସ ପଢୁଥିଲି । ବୁଦ୍ଧଙ୍କ ବାଣୀ ଶୁଣି ଗୋବିନ୍ଦ ରହିଗଲା, ସବୁ ପ୍ରଶ୍ନର ଉତ୍ତର ତାକୁ ମିଳିଗଲାପରି ଲାଗିଲା, କିନ୍ତୁ ସାଙ୍ଗ ସିଦ୍ଧାର୍ଥ ବୁଦ୍ଧଙ୍କୁ ଛାଡ଼ି ସଂସାର ଭିତରକୁ ଆଗେଇଗଲା ନିଜେ ନିଜର ଅନୁଭୂତି ଜରିଆରେ ବୁଦ୍ଧଙ୍କ ବାଣୀର ସତ୍ୟାସତ୍ୟ ଜାଣିବା ପାଇଁ, ବୁଝିବା ପାଇଁ । ବୁଝିବାର ଇଚ୍ଛା ସିଦ୍ଧାର୍ଥର ଜୀବନକୁ ଯେପରି ସଂପୂର୍ଣ୍ଣ ଗ୍ରାସ କରିନେଲା ! ମୁଁ ଭାବିଲି – ଏଇ ଇଚ୍ଛା ଜରିଆରେ ହିଁ ଶେଷରେ ଆନନ୍ଦ ମିଳିବ ।

ତେବେ କଥା ହେଉଛି – ଏମାନେ ଏମିତି ଉନ୍ମାଦନାରେ ପାଗଳ ପରି ହେଲେ କାହିଁକି ? ସେସବୁ କିଛିଟା ଛଳନା, କିଛିଟା ଆତ୍ମ-ପ୍ରତାରଣା ପରି ଲାଗିଲା । ଠାକୁରଙ୍କ ପାଖକୁ କ'ଣ ମଣିଷ ଅଣାନୁଷ୍ଠାନିକ ଭାବେ – ନାଟକୀୟ ଉତ୍ସାହ ଓ ପରିସ୍ଥିତି ସୃଷ୍ଟି ନକରି – ନୀରବରେ, ଏକା ଏକା ଯାଇପାରେନା ? ଠାକୁର ଓ ମଣିଷ ଭିତରେ ଏତେ ହୋ ହଲ୍ଲା, ବେସୁରା ସଂଗୀତ ଓ ଅସରନ୍ତି ଗଦ୍ୟମୟ ଉପଚାରର ଉତ୍ସବ କାହିଁକି ?

ଠାକୁରଙ୍କ ପ୍ରତି ମଣିଷର ଅଛି କ'ଣ – ଶ୍ରଦ୍ଧା, ନା ଭୟ ?

ଏତୁଟିଏ ହେଲିଣି, ଉତ୍ସବମୟ ଜୀବନ ସହିତ ଏତେ ପାଦ ଆଗେଇ ଆସିଲିଣି – କାଇଁ, ମୁଁ ତ ମନ୍ଦିର ଭିତରକୁ ଏପର୍ଯ୍ୟନ୍ତ ଯାଇନି ? ବାପା ନେଇଗଲା ବେଳେ ମୁଁ ଗେଟ୍ ପାଖରେ ଯାଡ଼େସ୍ୟାଡ଼େ ଅନାଏ, ଲୋକମାନଙ୍କୁ ଦେଖେ, ନଡ଼ିଆ, ଧୂପକାଠି ଦୋକାନ ଆଡ଼କୁ ଅନାଏ, କିଏ କେମିତି କିଣୁଛି । ପୁରୋହିତଙ୍କ ଖୋଲାପେଟ ଓ ପଇତ ଆଡ଼େ ମୋ' ନଜର ସବୁବେଳେ । ମୁଣ୍ଡିଆଟିଏ ମାରେ ନିଶ୍ଚୟ, କିନ୍ତୁ ସବୁବେଳେ ଭୁଲ୍ ଜାଗାରେ, ଭୁଲ୍ ବେଳାରେ । କେହି ହସନ୍ତିନି, କେହି ଦେଖନ୍ତିନି । ବାପା ହାତ ଧରି ମୋତେ ଫେରାଇ ଆଣନ୍ତି ଘରକୁ ।

ହଁ; ମନ୍ଦିର ଭିତରକୁ ଯାଇଥିଲି ଥରେ – ମନେ ପଡୁଛି । କାରଣ କିନ୍ତୁ ଅଲଗା ଥିଲା – ଶମ୍ଭୁର ଚଟି ପୁରୁଣା ହୋଇଯାଇଥିଲା । ଦୁହେଁ ଗୁରୁବାର ଦେଖି ଯାଇଥିଲୁ । କାର୍ଯ୍ୟଟି ଅତି ସୁରୁଖୁରୁରେ ହୋଇଗଲା । ଆଉ ଶମ୍ଭୁ ପ୍ରତିଶ୍ରୁତି ଅନୁସାରେ କଟକ ଚଣ୍ଡିମନ୍ଦିର ଛକରେ ମୋତେ ଗୁଡ଼ାଏ ବରା ଓ ଆଳୁଦମ୍ ଖୋଇଥିଲା । ଏବେ ଭାବୁଛି – ମୋତେ ଖୋଇବା ଖର୍ଚ୍ଚରେ ସେ ନୂଆ ବାଟା ଚଟିହଳେ କିଣିପାରିଥାଆନ୍ତା – ଆରାମ୍‌ରେ ।

ସବୁ ଭକ୍ତ ବସ୍ ଭିତରକୁ ଫେରି ଆସିଲେଣି । କଣ୍ଡକ୍ଟର୍ ହ୍ୱିସିଲ୍ ମାରିଲାଣି । ମୁଁ ସେମିତି ମୋ ଜାଗାରେ ବସି ରହିଥାଏ । ହଠାତ୍ ଗୋଟେ ପାଦ ଥଣ୍ଡା, ଥଣ୍ଡା ଲାଗିଲା । ମୁଁ ତଳକୁ ଅନେଇଲି, ମୋ'ର ପାଳେ ଚଟି ନାହିଁ, ଦିଶୁନି ।

ବଡ଼ ଅସୁବିଧା କଥା । ଗୋଟେ ଗୋଡ଼ରେ ଚଟି, ଆଉ ଗୋଟେ ଗୋଡ଼ ଖାଲି, କରିବି କ'ଣ ? ଯିବି କେମିତି ? ବସ୍‌ଟା ମାଡ଼ି ଚାଲିଲାଣି... ମୁଁ ଦୁଇଟା ଗୋଡ଼କୁ ଯେତେ ସମ୍ଭବ ଲମ୍ବାଇ ବସ୍‌ର ବିଭିନ୍ନ ଦିଗ ଅଣ୍ଡାଳି ଚାଲିଛି, କିନ୍ତୁ ଚଟିଟି ନିଖୋଜ... କରିବି କ'ଣ ଏବେ ?

ହଠାତ୍ ଟିକେ ଦୁଷ୍ଟାମି କରିବାକୁ ମନହେଲା । ମୋ ବାଁ ଓ ଡାହାଣ ଗୋଡ଼ରେ ଯାହାର ଚଟି, ଜୋତା ବାଜିଲା, ମୁଁ ସେଗୁଡ଼ାକୁ ଆସ୍ତେ ଦୂରକୁ – ଫୁଟ୍‌ବଲ୍ ପାସ୍ କଲାପରି – ସଟ୍ ସବୁ ମାରିଲି । ଶେଷ ଆଡ଼କୁ ଗୋଟେ ଓଜନିଆ ହିଲ୍‌ଥିବା ଜୋତା ଗୋଡ଼କୁ ଆସିଗଲା, ତାକୁ ବି । ଭାବିଲି ମୁଁ କାହିଁକି ମୋ' ଚଟି ଖାଲି ଖୋଜିବି ? ଯିଏ, ଯାହାର – ସବୁ ଖୋଜନ୍ତୁ ? ଶେଷରେ 'ସାଗର ମନ୍ଥନ'ରୁ ମୋ' ଚଟିଖଣ୍ଡକ ମିଳିଯିବନି ? କମ୍ ପରିଶ୍ରମରେ ?

ଗୋଟାଏ ବଡ଼ ଷ୍ଟପ୍ ଆସିଗଲାପରି ମନେ ହେଲା । ବସ୍‌ର ଗତି କମିଗଲା, ଶେଷରେ ରହିଗଲା । ମୋ ଆଗ ପଛ ଲୋକ ଉଠି ପଡ଼ିଲେଣି, ସମସ୍ତଙ୍କ ମୁହଁର ହସ ଲିଭିଗଲାଣି । ଚାରୋଟି ଶବ୍ଦ – 'ମୋ ସ୍ଲିପର୍', 'ମୋ ଜୋତା ?'

ମୁଁ ଖୁବ୍ ଖୁସିରେ ସମସ୍ତଙ୍କୁ ଲକ୍ଷ୍ୟ କରୁଥାଏ ।

'ଏଇଟା ତମର ?' ହଠାତ୍ ଝିଅଟିର କଣ୍ଠସ୍ୱର, ଆଗ ସିଟ୍‌ରୁ । ମୁଁ ଅନେଇଲି – ସୁନ୍ଦର ଝିଅଟିଏ, ଜଣାପଡୁଛି ଡେଙ୍ଗାଟେ ହେବ । ହାତ ଲଙ୍ଗଳା, ଡାହାଣ ହାତରେ ରିଷ୍ଟ୍‌ୱାଚ୍ – ଫରେନ୍-ମେକ୍ ଦିଶୁଛି । ମୋ' ଫେଭରିଟ୍ ନେଳି ଶାଢ଼ୀଟିଏ ପିନ୍ଧିଛି । କାନରେ ଇମିଟେସନ୍ ପର୍ଲ୍‌ର କାନଫୁଲ, ହାତରେ 'ଫେମିନା' ମ୍ୟାଗାଜିନ୍ । ଏତେ ପାଖରେ ଏତେ ସୁନ୍ଦର ଝିଅଟିଏ ଦେଖି ନଥିଲି ଆଗରୁ – ଯିଏ କି, ଘଣ୍ଟା ଘଣ୍ଟା ଧରି ପାଖରେ ବସି ବସ୍‌ରେ ମୋ' ସାଙ୍ଗରେ ଆସୁଥିଲା... ଭାବି କେମିତି କେମିତି ଲାଗିଲା ।

ଦାନ୍ତଟିକେ କାମୁଡ଼ି ସିଧା ମୋତେ ପଚାରିଲା – 'କ'ଣ ଶ୍ରୀମାନ୍ ମୋତେ ଚିହ୍ନି ପାରୁନ ?'

ମୁଁ ତଟସ୍ଥ ହୋଇ ଅନେଇ ଥାଏ – ୟେ' ପୁଣି କିଏ, ଏତେ ଫ୍ୟାମିଲେରିଆ କାହିଁକି ? ମୁଁ ତ ୟାକୁ ଆଗରୁ କେବେ ଦେଖିଲାପରି ମନେ ହେଉନି । କିଏ ସେ ? ସେ ଯିଏ ହେଉ, ଭାବିଲି ତା ସହିତ ଦୋସ୍ତି କରିବା, ବସ୍ ଯାତ୍ରାଟି ବେଶ୍ ଜମିଯିବ । ବହୁତ କଷ୍ଟରେ କହିବାକୁ ଚେଷ୍ଟା କଲି –

'ଆଉ କିଏ ଭାବି ମୋତେ... ?'

'ଆହା... ଏତେ ଆକ୍ସିଂ କାହିଁକି ? ସତରେ ଯଦି ଚିହ୍ନି ପାରୁନ, ତା ହେଲେ କହିଦେଉଛି – ଭଲ ନାଁ, ଡାକନା ପରେ ପଚାରିବନି, ହେଲା ?'

'ସ...ମୀ...କ୍ଷା... ?' ମୋ ପାଟିରୁ ବାହାରି ଆସିଲା ।

ଚିହ୍ନିପାରିଲାପରେ ସମୀକ୍ଷା ଆହୁରି ସୁନ୍ଦର ଦିଶିଲା । ଦଶପନ୍ଦର ମିନିଟ୍ ଯାତ୍ରୁ ସ୍ୟାତ୍ରୁ ଗପିବାରେ ଲାଗିଗଲୁ ଦୁହେଁ । ହଜିଥିବା ଚଟି ମିଳିଗଲା ପରି ମନେହେଲା । ତା ପାଖ ସିଟ୍‌ରେ କେହି ନଥିଲେ, ସମୀକ୍ଷା ପାଖରେ ବସିବାକୁ ଡାକିଲା । ମୋ ଚଟି-ଉପାଖ୍ୟାନ ଶୁଣି ଖୁବ୍ ଜୋର୍‌ରେ ହସିଲା – ହସି ଚାଲିଛି, ହସର ଶେଷନାହିଁ । ମୁଁ ପଚାରିଲାରୁ, ମୋ ଡାହାଣ ଗୋଡ଼ ତା ହାତରେ ଧରିନେଇ ଗୋଟାଏ କଣକୁ ନେଇଗଲା–ମୁଁ ଅନୁଭବ କଲି ପୁରା ବାଟା ଦୋକାନଟେ –ଏତେ ଗୁଡ଼ାଏ ଚଟି, ଜୋତାର ସମାରୋହ ।

ତା ହେଲେ ସମୀକ୍ଷା କିଛି ବଦଳିନି, ତା ଦୁଷ୍ଟାମି ସେମିତି ରହିଛି । ଚିଲିକାକୂଳରେ ସେଦିନ ସନ୍ଧ୍ୟା ପୁଣିଥରେ ମନେ ପଡ଼ିଗଲା । ତା ହାତ ପାପୁଲିର ଉଷ୍ମତା, ଆଉ ଓଠରେ ଅଭିମାନ ଓ ଆବେଗର ସ୍ପର୍ଶ । ସମୀକ୍ଷା ସତରେ ଅନେକ ବଡ଼ ହୋଇ ଯାଇଛି, ଅନେକ ସୁନ୍ଦର ହୋଇ ଯାଇଛି । ଏବେ ମେଡ଼ିକାଲ୍ କଲେଜରେ ପଢୁଛି, କଲିକତାରେ । ଥରେ ନୂଆବର୍ଷରେ କାର୍ଡ଼ ପଠେଇଥିଲା, ମୋ ଠିକଣା ଅନୁମାନ କରି । ମୁଁ ତ କାର୍ଡ଼, ଚିଠି – ତାଠୁଁ କିଛି ପାଇନି ? ପାଇଥିଲେ ଉତ୍ତର ବୋଧହୁଏ ଦେଇଥାଆନ୍ତି । ସମ୍ପର୍କଟି ରହିଥାଆନ୍ତା, ବଢ଼ି ଥାଆନ୍ତା ହୁଏତ, କିନ୍ତୁ ଏତେ ବର୍ଷପରେ ଦେଖାହେବାର ଆକସ୍ମିକତା ଓ ରୋମାଞ୍ଚ କ'ଣ ଦୁଇଜଣଯାକ ଏମିତି ଅନୁଭବ କରି ପାରିଥାନ୍ତୁ ?

ବସ୍ ଆଗେଇ ଚାଲିଥାଏ ଆଗକୁ । ସନ୍ଧ୍ୟାହୋଇ ଆସିଲାଣି । ପାଖରେ ଆଉ ସହର ଥିଲାପରି ମନେହେଉନି । କଲିକତାର ନ୍ୟାସ୍‌ନାଲ ଲାଇବ୍ରେରୀ, ଆମେରିକାନ୍ ସେଣ୍ଟର୍, ଫ୍ୟାନ୍ସି ମାର୍କେଟ୍, ଗ୍ଲୋବ୍ ସିନେମା, ସବୁଠିଁ,ସମୀକ୍ଷା କହିଲା, ମୋତେ ଖୋଜିଛି, ମୋ ବିଷୟରେ ଭାବିଛି... । ମୁଁ ନିଜକୁ ପଚାରିଲି – ମୁଁ କେବେ ସମୀକ୍ଷାକୁ ଖୋଜିଛି କି ? ହୁଏତ ମନେ ମନେ, କିନ୍ତୁ ମୋ ପୃଥିବୀର ପରିଚିତ ଚରିତ୍ରମାନଙ୍କ ଭିତରେ ତ ସେ ରହିବା କଥା, ରହିନି କାହିଁକି ?

ଅନ୍ୟ କାହାର ଉପସ୍ଥିତି ବା ଆବଶ୍ୟକତା କ'ଣ ମୁଁ ଅନୁଭବ କରେନା ? ଭାବେନା, ଆଉ ଜଣେ ଥିଲେ ହୁଏତ ଜୀବନଯାତ୍ରାଟି ଆହୁରି ସହଜ ଓ ଘଟଣାବହୁଳ ହୁଅନ୍ତା ?

କ'ଣ ମନକୁ ଆସିଲା, ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା-

'ଆଚ୍ଛା ସମୀକ୍ଷା, ତୁମେ ଯଦି ଏମ୍.ବି.ବି.ଏସ୍. ପଢ଼ା ଛାଡ଼ିଦିଅନ୍ତ ?'

'କାଇଁ, ତମେ ଏଂଜିନିୟରିଂ ଛାଡ଼ିଦେଇଛ ବୋଲି ?'

'ହୁଁ,' ମୁଁ କହିଲି ।

'ସମାନ ହୋଇଯିବା ନା ?'

ଅନ୍ଧକାର ପୁଣିଥରେ ଫେରି ଆସିଲାଣି ବସ୍ ବାହାରୁ ବସ୍ ଭିତରକୁ । ଅଜାଣତରେ ମୋ ହାତ ପୁରା ସିଟ୍ ଉପରକୁ ଲମ୍ବି ଯାଇଛି, ସମୀକ୍ଷା ମୋ ହାତ ଉପରେ ମୁଣ୍ଡ ରଖିଛି ଓ ମୋ ଆଙ୍ଗୁଠିଗୁଡ଼ିକୁ ଫୁଟେଇବାରେ ବ୍ୟସ୍ତ ।

ହଠାତ୍ ପବନ ଜୋର୍‌ରେ ମାଡ଼ିଆସିଲା, ତା ପରେ ପରେ ବର୍ଷା । ବର୍ଷା ମାନେ, ପ୍ରବଳ ବର୍ଷା । ଝରକା କାଚ ଲଗାଉ ଲଗାଉ – ସମୀକ୍ଷା ଓ ମୁଁ – ଅଧାରୁ ବେଶି ଭିଜିଗଲୁଣି । ମୁଁ ପାଖକୁ ଟାଣିଆଣିଲି ସମୀକ୍ଷାକୁ, ନହେଲେ ପୁରା ତିନ୍ତି ଯିବ ଯେ ! ତା ପରେ ପୁଣି ପୁରୁଣା ଆଲୋଚନା – କ'ଣ ନୂଆବହି ମୁଁ ପଢ଼ିଛି ? ସୋଫିଆ ଲରେନ୍, ଡସ୍ଟିନ୍ ହଫ୍‌ମ୍ୟାନ୍, ସୁଚିତ୍ରା ସେନ୍, ଉତ୍ତମ କୁମାରଙ୍କ କ'ଣ କ'ଣ ନୂଆ ସିନେମା ସମୀକ୍ଷା ଦେଖିଛି, ଇତ୍ୟାଦି, ଇତ୍ୟାଦି ।

ଏ ଭିତରେ ଆମ ଦି ଜଣଙ୍କ ଅଧା-ଶୁଖିଲା, ଅଧା-ଓଦା ଶରୀର ଏକାକାର ହୋଇଯିବାକୁ ବସିଲାଣି । ମୋତେ ଲାଗିଲା, ପ୍ରତି ସେକେଣ୍ଡରେ, ପ୍ରତି ମିନିଟ୍‌ରେ ମୋର ବୟସ ବଢ଼ିଚାଲିଛି – ଶରୀରର ବୟସ ଓ ମନର ବୟସ ଯଥାକ୍ରମେ ଆରିଥ୍‌ମେଟିକ୍ ଓ ଜିଓମେଟ୍ରିକ୍ ପ୍ରୋଗ୍ରେସନ୍‌ରେ...ସମୀକ୍ଷାର ବେକ ଉପରେ ଝୁଲୁଥିବା ଚେନ୍‌ର ଅଧାଭାଗ ମୋ ପାଟି ଭିତରେ, ମୋ ଦାନ୍ତ ମଝିରେ... ମୁଁ ଜାଣିପାରୁନି ମୁଁ ବସ୍ ଭିତରେ, ମୋ ପଛରେ ଆଗରେ କେତେ ଜଣ ଲୋକ ବସିଛନ୍ତି । କାଲି କେଉଁଠି ଥିଲି, କ'ଣ କରୁଥିଲି, ମନେ ପଡୁନି । କାଲି କୁଆଡ଼େ ଯିବି, କ'ଣ କରିବି – ଭାବିବା ଦରକାର ହେଉନି । ଖାଲି ଗୋଟିଏ ସତ୍ୟ – ମୋ ଆଗରେ, ମୋ ଉପରେ, ମୋ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ସେ ହେଉଛି ସମୀକ୍ଷା, ସ୍ୱପ୍ନ ଓ ବାସ୍ତବତାକୁ ଏକତ୍ରିତ କରିବାର, ଭାବକୁ ଭାଷାରୁ ଛଡ଼େଇ ନେଇ, ଶରୀରରେ ବିଦ୍ୟୁତ୍ ସୃଷ୍ଟି କରିବାର ସଫଳ ନାୟିକା – ସମୀକ୍ଷା ।

ଆଖି ଥାଇବି ମୁଁ କିଛି ଦେଖି ପାରୁନାହିଁ, ଭାଷା ଥାଇ ବି ମୁଁ କିଛି କହିପାରୁ ନାହିଁ... ସମୀକ୍ଷା ଛାତିରେ ମୁଣ୍ଡ ରଖି ମୁଁ ଶୁଣିପାରୁଛି ପାହାଡ଼ରୁ ଖସି ଆସିବାର ଏକ ଶବ୍ଦ...ପଥର ଖସି ଆସିଲାପରି – ତଳକୁ, ବହୁତ ତଳକୁ, ଅପେକ୍ଷାକରି ରହିଥିବା ସିସିଫସ୍ ପାଖକୁ...

ମୁଁ କେଉଁଠି ?

ସମୀକ୍ଷା ଓଠ ଭିତରେ ମାଇଲ୍ ମାଇଲ୍ ରାସ୍ତା ମୁଁ ଅତିକ୍ରମ କରି ପାରୁନି । ସବୁଠି ଝରଣା, ସବୁଠି ଆଗକୁ ଗଡ଼ି ଯାଉଥିବା ପାଣି – ଉଷ୍ମ, ମଧୁର । ନା, ଆଉ ସହ୍ୟ କରି ହେବନି ଏତେ ଗୁଡ଼ାଏ ଉତ୍ତେଜନା, ଏତେ ବେଶୀ ପ୍ରାଚୁର୍ଯ୍ୟ... । ମୋତେ ଫେରି ଆସିବାକୁ ପଡ଼ିବ ମୋର ପରିଚିତ, ନିଃସଙ୍ଗ ଜୀବନକୁ, ଫେରି ଆସିବାକୁ ପଡ଼ିବ ଜୀବନ ସହିତ, ଅନ୍ଧକାର ସହିତ ବର୍ଷ ବର୍ଷ ଧରି କରିଥିବା ବୁଝାମଣାକୁ ।

ହଠାତ୍ ଲାଇଟ୍ ଜଳିଲା ବସ୍ ଭିତରେ । ପଛରୁ ଶୁଭିଲା– 'ବରହମ୍‌ପୁର୍' ଆସିଲା । ଗାଡ଼ିର ବେଗ କମିଗଲାଣି, ସିଟ୍ ପାଖରେ ଝରକା ଖୋଲିଗଲାଣି, ସମୀକ୍ଷା ବେଶ୍ କିଛି ମୋଠୁଁ ଦୂରେଇ ଗଲାଣି...

## ୧୬

'ବ୍ରହ୍ମପୁର' ବା 'ବରହମ୍‌ପୁର' ମୋ ପାଇଁ ଆଉ ଏକ ନୂଆ ସହର । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଆଗରୁ ଏହାର ବେଶ୍ କିଛି ଅଂଶ ମାଡ୍ରାସ୍ ପ୍ରେସିଡେନ୍‌ସିରେ ଥିଲା । ସେଦିନ ଉଦୁଉଦିଆ ଖରା, ଖଲିକୋଟ୍ କଲେଜ ପ୍ରାଙ୍ଗଣରେ ବିରାଟ ଛାତ୍ରସଭା । ଭାରତ-ପାକିସ୍ଥାନ ତିକ୍ତତା ବହୁତ ବଢ଼ି ଯାଇଥାଏ, ଯୁଦ୍ଧ ହେବା ଉପରେ । ଦିନ ଗୋଟାଏ ବେଳେ ଖବର ପ୍ରଚାର ହୋଇଗଲା ଯେ ଖଡ଼ଗ୍‌ପୁର ପାଖ କଲେଇକୁଣ୍ଡା ବିମାନଘାଟିରେ ପାକିସ୍ଥାନ ବୋମା ପକାଇ ସାରିଲାଣି । ତେଣୁ ବିରାଟ ମିଟିଂ, କଲେଜ ଅଧ୍ୟକ୍ଷ ବିଶିଷ୍ଟ କବି ମାୟାଧର ମାନସିଂ ସଭାପତି ଚେୟାର୍‌ରେ । ଚିହ୍ନା, ଗଣ୍ଡଗୋଳିଆ ପିଲାଦଳେ ମୋତେ ଦେଖି ମୋ ନାଁ ମାଇକ୍ରୋଫୋନ୍‌ରେ ଡାକିଲେ, ମୁଁ ବି କହିବା ପାଇଁ ଆଗେଇଗଲି । ପ୍ରଧାନମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରିବା ପାଇଁ ହେଲା ଡକରା – ପୁଅ, ଝିଅ ସବୁ ମାଡ଼ି ଆସିଲେ – ସୁନାହାର, କାନଫୁଲ, ସୁନାମୁଦି, ଘଣ୍ଟା, ନଗଦ ପଚାଶ/ଶହେ... ଚାଲିଲା ସ୍ରୋତ । ତେର ହଜାର ଟଙ୍କା ମୂଲ୍ୟର ଦାନ ପାଇବାପରେ କଲେଜ ୟୁନିୟନ୍ ଅଫିସ୍‌କୁ ଆସିଲା ସ୍ୱତନ୍ତ୍ର ଚିଠି, ନିଜେ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର୍ ଶାସ୍ତ୍ରୀ ଲେଖିଥିଲେ । ସେତିକିବେଳେ ବୋଧହୁଏ ମୋତେ ଖୋଜାପଡ଼ିଲା ।

ସୁଯୋଗ ଆଖି ଆଗରେ, ଛାଡ଼ିବାର କଥା ନୁହେଁ । ସମୀକ୍ଷା ଓ ତା ମାଉସୀ ମୋତେ ମତେଇ ଦେଲେ । ମୁଁ ବି ଆଉ ହେଳା ନ କରି ପ୍ରିନ୍ସିପାଲ୍‌ଙ୍କୁ ସବୁ କହିଗଲି, ମୋତେ ବି.ଏସ୍.ସି. ଫିଜିକ୍ସ୍ (ଅନର୍ସ) କ୍ଲାସରେ ସିଟ୍‌ଟିଏ ମିଳୁ । ଡଃ ମାନସିଂ କିନ୍ତୁ କହିଲେ – ନା, ମୋତେ ଇଂଲିଶ୍ (ଅନର୍ସ) ନେବାକୁ ହେବ । ଶେଷରେ ତାହାହିଁ ହେଲା, ମୁଁ କଲେଜରେ ଇଂଲିଶ୍ (ଅନର୍ସ) କ୍ଲାସରେ ନାଁ ଲେଖେଇଲି ।

ଆସ୍ତେ ଆସ୍ତେ ଦେଖିଲି, ଏ'ତ କଲେଜ ନୁହେଁ, ଗୋଟିଏ ପୁରା ୟୁନିଭର୍ସିଟି – ସାଢ଼େ ତିନିହଜାର ପିଲା, ରେଭେନ୍‌ସାରେ ତ ମାତ୍ର ଅଢ଼େଇ ହଜାର । ଏଠି ପୁଣି ପାଞ୍ଚଟି ଫ୍ୟାକଲ୍‌ଟି ଗୋଟିଏ କମ୍ପାଉଣ୍ଡ ଭିତରେ– ଏମ୍.ଏ. (ଆର୍ଟ୍ସ), ଏମ୍.ଏସ୍.ସି. (ସାଇନ୍‌ସ୍), ଏମ୍.କମ୍ (କମର୍ସ), ଲ. (ଆଇନ୍), ଓ ବି.ଇଡି./ଏମ୍.ଇଡ଼ି. (ଶିକ୍ଷା) । ଦେଶରେ ଅନ୍ୟ କୌଣସି କଲେଜରେ ଏଭଳି ବ୍ୟବସ୍ଥା ଥିବାର ମୁଁ ଜାଣିନି ।

ସେ ଯା'ହେଉ ବର୍ଷଦୁଇଟି କେମିତି କଟିଗଲା, ମୁଁ ଜାଣି ପାରିଲିନି । କଲେଜ ନାଟ୍ୟସଂସଦ ବାର୍ଷିକ ଉତ୍ସବ । ନାଟକରେ ନିର୍ଦ୍ଦେଶନା ଦେଉଛନ୍ତି ନିଜେ ଅଧ୍ୟକ୍ଷ ଡଃ. ମାନସିଂ । ହିରୋ, ହିରୋଇନ୍, ଭିଲେନ୍ ମିଳିଗଲେ, କିନ୍ତୁ ନାଟକର ଗୋଟେ ପାଗଳ ଚରିତ୍ର ପାଇଁ କେହି ସ୍କ୍ରିନ୍ ଟେଷ୍ଟ୍ ଦେଲେନି । ପ୍ରତିଯୋଗିତା ଅଭାବରୁ ରୋଲ୍‌ଟି ଖାଲି ପଡ଼ିଥାଏ । ମୁଁ ସାର୍‌ଙ୍କୁ କହିଲି – 'ଚେଷ୍ଟା କରିବି ?'ସାର୍ 'ହଁ' କଲେ । କେହି ଆଶା କରି ନଥିଲେ ଦଶମିନିଟ୍ ପାଇଁ ଷ୍ଟେଜ୍‌କୁ ଆସୁଥିବା ଏହି ପାଗଳ ଚରିତ୍ର 'ଶ୍ରେଷ୍ଠ କଳାକାର' ପୁରସ୍କାର ପାଇବ । ସବୁଠୁଁ ବେଶି ଆଶ୍ଚର୍ଯ୍ୟ ହେଲି ମୁଁ । ସ୍କୁଲଦିନ ଗୁଡ଼ିକ ମନେ ପଡ଼ିଗଲା । 'ଗୁରୁଦିବସ' ଦିନ ମୋତେ ଗୋଟେ ରୋଲ୍ ଦିଆଯାଇଥିଲା । ଅତି ଶୋଚନୀୟ ଅବସ୍ଥା ହୋଇଥିଲା ମୋର – ଷ୍ଟେଜ୍ ଉପରୁ ଖସି ପଡ଼ିଥିଲି । ଏହି ଦୁର୍ଘଟଣାଟି ପରେ ଆଉ ନାଟକରେ ମୁଁ ଗୋଡ଼ ଦେଇନି । ଏତେ ବର୍ଷ ପରେ ପୁରସ୍କାର ସିଲ୍‌ଡ଼୍‌ଟିକୁ ଧରିଲାବେଳେ ଭାରି ଖୁସି ଲାଗିଲା । ହୃଦୟରେ ଆତ୍ମବିଶ୍ୱାସ ଆସିଲା । ଭଲ ଲାଗିଲା – ଅଭିନୟର ଅନୁଭୂତି, ପରେ ପରେ କରତାଳି, ପ୍ରଶଂସା ଓ ସିଲ୍‌ଡ଼୍ ।

ବୁଝିଲି ଜୀବନର ଇଏ ଆଉ ଏକ ଅଂଶ – ତାରି ଭିତରେ ନିଜକୁ ହଜେଇବା ଓ ପାଇବା ପାଇଁ କେତେ ଉଲ୍ଲାସ, କେତେ ଉତ୍ତେଜନା ! ବଞ୍ଚିବାପାଇଁ କେତେ ଯୋଜନା, କେତେ ପ୍ରସ୍ତୁତି !

ବଞ୍ଚିବାର କେତେ ନାମ !

## ୧୭

ମୋ ମନକୁ ଘରଟିଏ ସହ ବେଳେ ବେଳେ ତୁଳନା କରିଛି । ଘରର ବଖରା, ବଖରା ପରି ମନକୁ ବି ବଖରା, ବଖରା କରିହେବ । ଘରଭିତରେ ବିଭିନ୍ନ ବଖରାରେ ଭିନ୍ନ ଭିନ୍ନ ଜିନିଷ ରଖିଲାପରି, ମନର ବିଭିନ୍ନ ବଖରାରେ ବି ଭିନ୍ନ ଭିନ୍ନ ଭାବନାକୁ ରଖି ହେବ ।

କିନ୍ତୁ ସେ ସବୁକୁ ସଜେଇ ହେବ କି ? ଯେମିତି - ବସାଘରେ ଖବରକାଗଜ, ଟି.ଭି., ପଢ଼ାଘରେ ବହି, ବିଭିନ୍ନ ସାଇଜ୍‌ର, ବିଭିନ୍ନ କିସମ୍‌ର ଚଉକି, ଟାଇପ୍ ରାଇଟର୍,

ବିଭିନ୍ନ ରଙ୍ଗର ବଲପେନ୍, ଧଳାକାଗଜ, ଡିକ୍ସନାରି, ଟେବ୍ଲ୍ କ୍ୟାଲେଣ୍ଡର୍ ଇତ୍ୟାଦି, ଶୋଇବାଘରେ ମ୍ୟୁଜିକ୍ ସିଷ୍ଟେମ୍, କିଛି ବେଷ୍ଟ୍ ସେଲର୍ ବହି ଓ ମ୍ୟାଗାଜିନ୍ – 'ଭୋଗ୍', 'ଭ୍ୟାନିଟି ଫେୟାର୍', 'ଟାଇମ୍' ବା 'ରିଡର୍ସ୍ ଡାଇଜେଷ୍ଟ୍','ନିଆଁଖୁଣ୍ଟା', 'ଇଲଷ୍ଟ୍ରେଟେଡ୍ ଉଇକ୍ଲି' । ସେମିତି ମନର ବଖରାରେ କେଉଁ ଭାବନା, କେଉଁ ଅନୁଭୂତିକୁ ସଜେଇ ରଖିବାକୁ ହେବ, ମୁଁ ଠିକ୍ କରିପାରୁନି – ସବୁ ଗୋଳମାଳ ହୋଇଯାଉଛି । ସେଥିରେ ପୁଣି ସମୟର ସୀମାରେଖା ରହିଛି । ଅତୀତର ସବୁ ଅନୁଭୂତି ତ ପୁଣି କେବଳ ଅତୀତର ନୁହେଁ – କିଛି ବର୍ତ୍ତମାନ ଭିତରକୁ ମାଡ଼ିଆସିଛି, ବର୍ତ୍ତମାନକୁ ଜାବୁଡ଼ି ଧରିଛି ।

ଅତୀତ ଓ ବର୍ତ୍ତମାନକୁ ସମୟର ସୀମାରେଖା ଭିତରେ ପୃଥକ୍ କରି ରଖି ହେଲାନି, ରଖି ହେବନି ।

ଗୋପାଳପୁର ସମୁଦ୍ରକୂଳ, ପୁରୀଠାରୁ ଭିନ୍ନ । ଏଠି ବେଶୀ ଦୋକାନ ନାହିଁ, ଲୋକ ବି ଏତେ ନାହାନ୍ତି । ଚିହ୍ନା, ଦୋଦଚିହ୍ନା, ଅଚିହ୍ନା ମୁହଁମାନେ ଲଦି ହୋଇ ପଡ଼ନ୍ତିନି ମନ ଭିତରେ, ହୃଦୟ ଭାରାକ୍ରାନ୍ତ ହୁଏନା ଅଯଥା ଦୁଃଖ ବା ଆନନ୍ଦରେ । ଏଠି ଖାଲି ସତର୍କ ପ୍ରହରୀମାନେ ଘୁରି ବୁଲୁଛନ୍ତି । ମାଇଲ୍ ମାଇଲ୍ ଲମ୍ବି ଯାଇଥିବା ନୀରବତାରେ ତିଆରି ହୋଇଛି ସମୁଦ୍ର ।

ଜିପ୍‌ଟା ବାଲି ଭିତରକୁ ପଶିଗଲା, ଆଉ ବାହାର କରି ହେଲାନି । ଡ୍ରାଇଭିଂ ଶିଖା ଆଜିହିଁ ଆରମ୍ଭ ହୋଇଥିଲା । ବାପା ଟୁର୍‌ରେ । ଅଫିସ୍ ଜିପ୍‌କୁ ଡ୍ରାଇଭର୍ ନେଇ ଆସିଥିଲା ମେଡିକାଲ୍ କ୍ୟାମ୍ପସ୍ ଆଡ଼କୁ ମୋତେ ଡ୍ରାଇଭିଂ ଶିଖାଇବା ଲାଗି । ଗିଅର୍, ବ୍ରେକ୍, ଆକ୍ସିଲିରେଟର୍ ବ୍ୟବହାର ଜାଣୁ ଜାଣୁ, ଥରେ ଦି ଥର ଏପାଖ ସେପାଖ କରୁ କରୁ, ଡ୍ରାଇଭର୍‌କୁ ପାନଖାଇବା ପାଇଁ ଛକରେ ଓହ୍ଲେଇ ଦେଇ ମୁଁ ସିଧା ପଳେଇ ଆସିଛି ଗୋପାଳପୁର । ଚାରୋଟି ଚକ ଉପରେ ବସି ଆକ୍ସିଲିରେଟର୍‌କୁ ଶହେ ଉପରେ ଦବେଇ ଆଗକୁ ଏକାକୀ ମାଡ଼ିଯିବାର ଅନୁଭୂତି ମୋ ପାଇଁ ନୂଆ । କିନ୍ତୁ ଯେ କ'ଣ ? ଗାଡ଼ି ଯାଇ ଏକାବେଳକେ ସମୁଦ୍ରବାଲି ଭିତରେ । କରିବି କ'ଣ ? କେମିତି ବାଲିରୁ ଚକ ବାହାର କରିବାକୁ ହେବ ଜାଣିନି, ଶିଖିନି ।

ଭାବିଲି – ପରେ ଦେଖିବା । ସକାଳୁ ନୋଳିଆ କେତେ ଜଣଙ୍କୁ ଡାକି ଚା ପାଣି କିଛିଦେଇ ଗାଡ଼ିଟିକୁ ପେଲାପେଲି କରି ବାହାର କରିବାକୁ କହିବି । ରାତିଟା କଟେଇ ଦେବି ସମୁଦ୍ରବାଲିରେ ବା ଜିପ୍ ଭିତରେ, ଅସୁବିଧା ସେମିତି କିଛି ହେବନି ।

ଅନ୍ଧକାର ମାଡ଼ି ଆସିଲାଣି । ଦୂରରେ କାଁ ଭାଁ ବତୀ କେତୋଟି ଜଳିଲା ପରି ଦିଶୁଛି । ଅନ୍ଧକାର ଭିତରେ ଅବ୍‌ଦୁଲ୍‌ର ଚଗଲା ମୁହଁ ସହ ମିଶି ଯାଉଛି ସମୀକ୍ଷାର ତାତିଲା

ଶବ୍ଦଗୁଡ଼ା, ଶରତର ଆତ୍ମବିଶ୍ୱାସ ସହ ସୁପ୍ରିୟର ସଙ୍କୋଚ ଓ ଭୟ – ନ ଜାଣିବାର ଆନନ୍ଦସହ ମିଶିଯାଉଛି ଜାଣିବାର ଦୁଃଖ... ସବୁକିଛି ଗୋଳିଆମୋଳିଆ ହୋଇଯାଉଛି, ଗୋଟାକରୁ ଅନ୍ୟଟାକୁ ବାଛି ହେଉନି ।

ବରଗଛ ପରି ମନେ ହେଉଛି । ଉପରକୁ ଅନେଇଲି – ହଁ ତ ! କେତେ କାଳର, କେତେ ସ୍ମୃତିକୁ କୋଳେଇ, କେତେ ଆଡ଼କୁ ଚେର ଲମ୍ବେଇ, ଗଛଟି ଛିଡ଼ା ହୋଇଛି । ମୁଁ ଆହୁରି ଉପରକୁ ଅନେଇଲି – ଅନ୍ଧାରରେ ଅଳ୍ପ କିଛି ଅଂଶ ହିଁ ଦିଶୁଛି । ପାଖରେ ଗୋଟେ ଧଳା କୋଠା – ବରଫପରି ଧଳା – କିନ୍ତୁ ବହୁବର୍ଷର, ବହୁ ପୁରୁଣା ଜଣା ଯାଉଛି । ପାଖକୁ ଗଲି । କାଠଗ୍ରିଲ୍‌ର ଫାଟକ, ଝରକା ଲମ୍ବା ଲମ୍ବା, ଫ୍ରେଞ୍ଚ୍ ଉଇଣ୍ଡୋ ଯେମିତି ହୋଇଥାଏ । ଘରର ନାଁ 'ହ୍ୱାଇଟ୍‌ହର୍ଟ'... ଏ ପୁଣି କ'ଣ ? ଓଡ଼ିଆରେ ଅନୁବାଦ କରିପକେଇଲି 'ହ୍ୱାଇଟ୍ ହର୍ଟ' ମାନେ 'ଶ୍ୱେତ ଆଘାତ' ... ବାଃ ଚମତ୍କାର ପରିକଳ୍ପନା । ଆଘାତ ପୁଣି ଧଳା, ରଙ୍ଗୀନ୍ ହୋଇପାରେ ? ନାଁ 'କୁଟୀର' ବା 'ହଟ୍' ଲେଖୁ ଲେଖୁ 'ହର୍ଟ' ହୋଇଯାଇଛି—ଭାବିଲି, କାହିଁକିନା 'ହ୍ୱାଇଟ୍ ହଟ୍' ବା 'ଶ୍ୱେତ କୁଟୀର' ଏକ ଅପରିଚିତ, ହେଲେ ବି ସୁନ୍ଦର ଛବିଟିଏ ମନ ଭିତରେ ଆଙ୍କି ଦେଉଛି । ତେବେ ଅନେକ ବର୍ଷ ପୂର୍ବେ, ଏମିତି ବି ହୋଇପାରେ, କୋଠାର ମାଲିକ ଥିଲେ – 'ହ୍ୱାଇଟ୍‌ହର୍ଟ' ନାମକ ଜଣେ ସାହେବ ?

ଫାଟକ ଖୋଲିବା ଦରକାର ହେଲାନି, ଆଗରୁ ଖୋଲାଥିଲା । ଲମ୍ବା ଲନ୍ ପୁଣି ଜଣାପଡୁଛି । ବଗିଚାରେ ଅନେକ ଫୁଲଗଛ, କୃତ୍ରିମ ପାହାଡ଼, ଝରଣା ସବୁ ଏକଦା ଥିଲା । ସିମେଣ୍ଟ୍ ବେଞ୍ଚ୍‌ଟିଏ ଦେଖି ବସି ପଡ଼ିଲି । ବେଞ୍ଚ୍‌ରେ ଧୂଳି, ବାଲି ତ କିଛି ଜଣାପଡୁନି – କେହି ଏ ଜାଗାଟିକୁ ପରିଷ୍କାର କରିଥିଲା କି ? ଗୋଡ଼ହାତ ଲମ୍ବେଇ ଶୋଇବାକୁ ଚେଷ୍ଟାକଲି । ଉପରେ ଖୋଲା, ମେଘମୁକ୍ତ ଜହ୍ନର ଆକାଶ । ନିଦ ଲାଗିଗଲା । ତାପରେ...

ମୁଁ କୋଠାର ଛାତରେ । କେନ୍‌ଚେୟାର୍ ତିନି ଚାରୋଟି... ମୁଁ ବସିଛି... ମୋ ପାଖରେ ଆଉ ଏକ ଚେୟାର୍‌ରେ ବସିଛନ୍ତି ଜଣେ ଭଦ୍ର ମହିଳା... ପିନ୍ଧିଛନ୍ତି ଜିନ୍ସ ଓ ଟି ସାର୍ଟ, ଧଳା ରଙ୍ଗର... ଲମ୍ବା ମୁହଁ, ଜହ୍ନ ଆଲୁଅ ଥାଇ ବି ଗଛ ଛାଇର ଆଢୁଆଳରେ ମୁହଁ ବାରି ହେଉନି । ଖାଲି ଅନୁମାନ କରି ହେଉଛି ସେ ନିଶ୍ଚୟ ବିଦେଶୀ ନାରୀ... ଫ୍ରେଞ୍ଚ୍ ପର୍‌ଫ୍ୟୁମ୍‌ର ବାସ୍ନା । ମୁଁ କ'ଣସବୁ କହିଚାଲିଛି, ସେ ଖାଲି ହସୁଛନ୍ତି । ମୁଁ ବି ତାଙ୍କ ସହ ହସି ଚାଲିଛି । କିଛି ସମୟ ପରେ ଯିଏ ଆସିଲେ, ସିଏ ତାଙ୍କ ସ୍ୱାମୀଙ୍କ ପରି ମନେହେଲା – ବେଶ୍ ସୁନ୍ଦର ଶରୀର, ଆଉ କଥା କହିବା ଢଙ୍ଗ ପୁରା ଜଣେ ଆର୍ମି ଅଫିସରର । କୁଆଡୁ ସେ ଆସିଲେ ମୋତେ ଜାଣି ହେଲାନି । ଆସିଲେ କିନ୍ତୁ ହଠାତ୍, ଭଦ୍ର ମହିଳାଙ୍କୁ ନାଟକୀୟ ଭାବରେ ଚୁମ୍ବନ କଲେ ଓ ମୋ ସହିତ ହାତ ମିଳେଇଲେ ।

ତାପରେ... ଆମେ ତିନିହେଁ ତଳକୁ ଗଲୁ । କାଠ ଷ୍ଟେୟାର୍‌କେଶ୍ ବାଟେ ଓହ୍ଲାଇଲାବେଳେ ସେ ଦୁହିଙ୍କୁ କାଇଁ ମୁଁ ତ ଦେଖିଲିନି ? ମୁଁ ହିଁ କେବଳ ତଳକୁ ଓହ୍ଲାଉଥିଲି । ତଳେ ସିମେଣ୍ଟ ଲନ୍ ପାଖରେ ସେ ଦୁହିଙ୍କୁ ପୁଣି ଦେଖିଲି ମୋରି ସହ ଚାଲୁଛନ୍ତି । ଅଦ୍ଭୁତ ! ମଝିରେ ସେମାନେ ଉଭାନ୍ ହୋଇଗଲେ କୁଆଡ଼େ ? ଓହ୍ଲେଇଲେ କେଉଁବାଟେ ?

ଫାଟକ ବାହାରେ ଆମେ ତିନିଜଣ ସମୁଦ୍ରକୂଳ ଆଡ଼କୁ ଚାଲିଛୁ । ବିଥୋବେନ୍ ବା ସୁବର୍ଟ୍‌ଙ୍କ ସିଂଫୋନି ଶୁଣିଲା ପରି ଲାଗିଲା । ରାତି ଦୁଇଟା ଖଣ୍ଡେ ହେବ । ସମୁଦ୍ରକୂଳରେ କେହି ନାହାନ୍ତି । ଖାଲି ଆମେ ତିନିଜଣ । ହଠାତ୍ ମୁଁ ଲକ୍ଷ୍ୟକଲି ସେ ଦୁହେଁ ନିବିଡ଼ ଆଲିଙ୍ଗନରେ–ପାଣି ଭିତରେ–ଆଉ ମୁଁ, କୂଳରେ, ଦର୍ଶକ ଭୂମିକାରେ ।

କିଛି ସମୟ ବିତିଗଲା । ମୁଁ ସମୁଦ୍ରକୂଳର ଜହ୍ନ ଓ ପବନକୁ ଉପଭୋଗ କରିଚାଲିଥାଏ । 'କ୍ଲାରା'... 'କ୍ଲାରା'... ବୋଲି ବଡ଼ପାଟିରେ ଡାକ ଶୁଭିଲା । ମୁଁ ଯାଡ଼େ ସ୍ୟାଡ଼େ ଧାଇଁବାକୁ ଲାଗିଲି, ପାଣି ଭିତରକୁ ମାଡ଼ିଗଲି, କିନ୍ତୁ କାଇଁ ସେ ଦୁଇଜଣଙ୍କ ଚିହ୍ନବର୍ଣ୍ଣ ତ କେଉଁଠି ନାହିଁ ? କ'ଣ ମନେ ହେଲା, ମୁଁ ହ୍ୱାଇଟ୍‌ହର୍ଟ ଭିତରେ ପୁଣି ପଶିଲି – ଉପର ମହଲାରୁ ଇଂରାଜୀରେ କଥାବାର୍ତ୍ତା ଶୁଭିଲା । ଷ୍ଟେୟାର୍‌କେଶ୍‌ଦେଇ ଉପରକୁ ଉଠିଲି ।

ନା, ଶବ୍ଦ ତ ଛାତ ଉପରୁ ଆସୁଛି । ଛାତ ଉପରକୁ ଗଲି । ପୁଣି ସେହି ଚଉକିସବୁ ପଡ଼ିଛି, କିନ୍ତୁ କେହି ନାହାନ୍ତି ! ମୁଁ ଟିକେ ଡରିଗଲି । ଡରିବାର ଅନୁଭୂତି ଆଗରୁ ଠିକ୍ ନଥିଲା । ନିଜକୁ କିଛିଟା ସମ୍ଭାଳି ତଳକୁ ଗଲି । ବାଟରେ ଅନ୍ଧାର... ବେଶୀ ଡର ମାଡ଼ିଲା । ସେ ଯାହାହେଉ, କୌଣସିମତେ ତଳେ ଲନ୍‌ରେ ପହଁଚିଛି, ଦେଖିଲି, ସିମେଣ୍ଟ ବେଞ୍ଚ୍‌ରେ ମୁଁ ଯେଉଁଠି ଶୋଇଥିଲି, ସେଠି ଗୁଡ଼ାଏ ଫୁଲ ବିଞ୍ଚିହୋଇ ପଡ଼ିଛି । ଫୁଲଗଛ ତ ପାଖରେ ନଥିଲା, ଘଣ୍ଟାଏ ଦି ଘଣ୍ଟା ଭିତରେ ଏତେଗୁଡ଼ାଏ, ଏତେ ରଙ୍ଗର ଫୁଲସବୁ ଆସିଲା କେଉଁଠୁ ?

ମୋର ଛାତିର କମ୍ପନ ବଢ଼ିଚାଲିଛି । ମୁଁ ଆସ୍ତେ ଆସ୍ତେ ଦୁର୍ବଳ ଓ ନିଃସହାୟ ଅନୁଭବ କଲି । ବେଞ୍ଚ୍ ଉପରେ ଠିଆହୋଇ ଅନେଇଲି ଗାଡ଼ିଟି ଅଛି କି ନାହିଁ । ନା, ମୋତେ ଏ ଜାଗା ଛାଡ଼ି ଗାଡ଼ିପାଖକୁ ଯିବାକୁ ପଡ଼ିବ । ବେଶୀ ସମୟ ଏ କୋଠାଭିତରେ ରହିଲେ ମୁଁ ଅଣନିଶ୍ୱାସୀ ହୋଇଯିବି, ହାର୍ଟ ଫେଲ୍ କରିଯାଇ ପାରେ । ସ୍କୁଲ ଦିନର ମଶାଣିର ଅନୁଭୂତି ମନେ ପଡ଼ିଗଲା । ନା, ଆଉ ନୁହଁ – ମୋତେ ଶୀଘ୍ର ବାହାରିଯିବାକୁ ପଡ଼ିବ ।

ତାହାହିଁ ହେଲା । ଯାଇ ଦେଖେ, ଜିପ୍ ଭିତରେ କିଏ ଜଣେ ଶୋଇଥିଲା ପରି ମନେ ହେଲା । ନୋଳିଆ ଭଳି ଦିଶୁଛି । ଉଠେଇଲି ।

ଉଠିଗଲା ପରେ ସେ ପଚାରିଲା – 'ବାବୁ ତମ ଗାଡ଼ି ? ଏଠାକୁ କେମିତି ଆସିଲା ?'

'ଆଚ୍ଛା କହିଲ, ଏ ଧଳା କୋଠାରେ କିଏ ରହେ ?'– ମୋ ପାଟିରୁ ବାହାରି ପଡ଼ିଲା ।

'ଓ ସେଇ ବଙ୍ଗଳା ? ବାବୁ, ସେଠି କେହି ରହନ୍ତିନି, କି ସେଠାକୁ କେହି ଯାଆନ୍ତିନି...'

'ମାନେ ?' ମୁଁ ଆଶ୍ଚର୍ଯ୍ୟହୋଇ ପଚାରିଲି ।

'ମୁଁ ଛୋଟବେଳେ ବାପାଠୁଁ ଶୁଣିଛି, ସେଠି ଜଣେ ସାହେବ ଓ ମେମ୍‌ସାହେବ ରହୁଥିଲେ । ସାହେବ୍ କ'ଣ ସବୁ ବଜାଏ, ଆଉ ମେମ୍‌ସାହେବ ସବୁବେଳେ ମଦପିଇ... କାଇଁ ତମେ ସିଆଡ଼େ ଯାଇଥିଲ କି ?'

ତାହେଲେ ଯାହାସବୁ ଘଟିଗଲା... ମୁଁ ସ୍ୱପ୍ନରେ ଦେଖିଲି, ନା ବାସ୍ତବରେ ଘଟିଗଲା ? ଅନୁଭବ ବାସ୍ତବ ନା ଭୌତିକ ? ପ୍ରଶ୍ନସବୁ ପ୍ରଶ୍ନରେ ହିଁ ରହିଗଲା । ଫର୍ଚ୍ଚା ହୋଇଗଲାଣି... ସକାଳର ସୂର୍ଯ୍ୟ ଉଙ୍କି ମାରିଲେଣି... ସମୁଦ୍ରବାଲିରେ କେତେଜଣ ଦଉଡ଼ା ଦଉଡ଼ି ଆରମ୍ଭ କରିଦେଲେଣି ।

ନୋଳିଆଜଣକ ଯାଇ ଆଉ ଚାରି ପାଞ୍ଚଜଣ ସାଥୀଭାଇଙ୍କୁ ନେଇ ଜିପ୍‌କୁ ପଛରୁ ପେଲିବାରେ ବ୍ୟସ୍ତ । ଶେଷରେ ଗାଡ଼ି ରାସ୍ତା ଉପରକୁ ଆସିଗଲା । ମୁଁ ପକେଟ୍‌ରେ ଯାହା ଖୁଚୁରା ଥିଲା, ସେମାନଙ୍କୁ ଧରେଇଦେଲି । ସେମାନେ ବୋଧେ ସବୁ ଚା ଦୋକାନ ଆଡ଼କୁ ମୁହେଁଇଲେ – ମୁଁ ବରହମ୍‌ପୁର ରାସ୍ତାରେ ।

ରାସ୍ତାରେ ଭାବୁଛି, ମନର କେଉଁ ବଖରାରେ ଏହି ନୂତନ ଅନୁଭୂତିକୁ ସାଇତି ରଖିବି ? ନିଶ୍ଚିତ ଭାବରେ ଏହା ଏକ ଅଦ୍‌ଭୁତ ଅନୁଭୂତି – ଜେଜେମା'ଠାରୁ ଶୁଣିଥିବା, ବର୍ଷ ବର୍ଷ ଧରି ଛୋଟ ପିଲାଙ୍କ ମନ ସୁହେଇବା ଭୂତ ଗପ ନୁହେଁ – ଶବ୍ଦରେ ବା କଳ୍ପନାରେ ତିଆରି ଅନୁଭୂତି ନୁହେଁ ।

ମୁଁ ବରହମ୍‌ପୁର ଫେରୁଛି ସତ, କିନ୍ତୁ ମୁଁ କ'ଣ ସେହି ସରଳମନା ପିଲାଟିଏ ହୋଇ ରହିପାରିବି ? ଦଣ୍ଡରେ ଗାଡ଼ି ଚାଲିଥାଏ – ସାଇକ୍ଲ, ରିକ୍‌ସା, ବସ୍ ସବୁ ମୋତେ ପଛରେ ପକେଇ ଆଗକୁ ମାଡ଼ି ଯାଉଥାଆନ୍ତି । ମୋ ଗୋଡ଼ କାହିଁକି ଆକ୍‌ସିଲିରେଟର୍‌କୁ ଦବେଇ ପାରୁ ନ ଥାଏ । ହାତ ଷ୍ଟିଅରିଂରେ ଯେପରି ଅସହାୟ ! ଭାବନା, ପ୍ରଶ୍ନ, ସନ୍ଦେହ – ସମୁଦ୍ରର ବିଭିନ୍ନ କୋଣରୁ ଆସୁଥିବା ଲହଡ଼ିପରି ଏକଜୁଟ୍ ହୋଇ ମନଭିତରେ ଏ ଯାଏ ନଷ୍ଟ ନହୋଇ ରହିଥିବା ଭାରସାମ୍ୟକୁ ହଲାଇଦେବାରେ, ନଷ୍ଟ କରିବାରେ ଲାଗିଲେଣି ।

ଇସ୍, ଆଗରେ ଟ୍ରକ୍‌ଟା ମାଡ଼ି ଆସିଥାନ୍ତା ମୋ ଆଡ଼କୁ... ଟିକେ ଏ'ପାଖ ସେ'ପାଖ ହୋଇଥିଲେ ଦୁର୍ଘଟଣା ନିଶ୍ଚୟ ଘଟି ଯାଇଥାଆନ୍ତା । କିଏ ରହିଥାଆନ୍ତା, କିଏ ଯାଇ ଥାଆନ୍ତା ମୁଁ, ନା ଟ୍ରକ୍ ଡ୍ରାଇଭର୍ ? – କହିବା ମୁସ୍କିଲ୍ ।

ମୁଁ ସଜାଗ ହେଲି, ଗାଡ଼ି ଚଳେଇବାରେ ଧ୍ୟାନ ଦେଲି । ଡ୍ରାଇଭର କଥା ମନେ ପଡ଼ିଗଲା । ବାପାଙ୍କ କଥା ମନେ ପଡ଼ିଗଲା । ସକାଳ ହୋଇଗଲାଣି, ଚା ପିଇବାକୁ ଇଚ୍ଛା ହେଲାଣି – କଡ଼ା ଗରମ, ଅଦାଦିଆ ଚା । ନା, ଏକାଥରକେ ଘରକୁ ଫେରିଯିବା, ଚା ସେଇଠି ।

ସନ୍ଧ୍ୟାରେ ବିରାଟ ଜନସଭାର ଆୟୋଜନ ହୋଇଛି । ବରହମ୍ପୁରରେ ଏକ ନୂଆ ବିଶ୍ୱବିଦ୍ୟାଳୟ ପାଇଁ ଛାତ୍ର ଆନ୍ଦୋଳନର ସୂତ୍ରପାତ ଆମେ ମାସ ମାସଧରି କରି ସାରିଥିଲୁ । ଆଜି ସରକାରଙ୍କୁ ଆମେ ଶେଷ ଚେତାବନୀ ଦେବୁ । ସମାଜରେ ଶୋଷଣ ଚାଲିଛି । ଶାସକ, ଅମଲାତନ୍ତ୍ର, ବ୍ୟବସାୟୀ, ପୋଲିସ୍ – ସମସ୍ତେ ସାଧାରଣ ନାଗରିକଙ୍କୁ ଶୋଷି ଚାଲିଛନ୍ତି । ଦୁର୍ନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ଦକ୍ଷିଣ ଓଡ଼ିଶା ଛାତ୍ର ସମାଜ ସଂଗ୍ରାମ କରୁଛି । ପରିଣତି ଯାହା କିଛି ହୋଇପାରେ – ସେଥିପାଇଁ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ ।

ବାପା ନ କହିଲେ ବି ମନେ ମନେ ବିରକ୍ତ ହେବେଣି – ପୁଅ କରୁଛି କ'ଣ ? ଖାଲି ବକ୍ତୃତା, ସଭା, ଆନ୍ଦୋଳନ । ଭାବୁଥିବେ, ଏକା ଏକା ତ ସବୁବେଳେ ଥାଏ, ଘରକୁ କିଏ ଆସିଲେ – ଅଧ୍ୟାପକପରିବାର ବା ଓକିଲପରିବାର ବା ପୋଲିସ୍‌ପରିବାର – ଝରକା ବାଟେ, ବା ପଛବାଟେ ବାହାରକୁ ଖସି ପଳେଇଯାଏ । ଲାଜକୁଳା ପିଲାଟି ସେ' ଦିନର... ଆଜି ଏତେ ସାଙ୍ଗ, ଏତେ ସମର୍ଥକ ତାର ଆସିଲେ କୁଆଡୁ ? ନିଶ୍ଚୟ ସେ ଭାବୁଥିବେ – ଯେ କରିବ କ'ଣ ? ଓକିଲାତି ନା ରାଜନୀତି ? ଆଇ.ଏ.ଏସ୍. ବା ଆଇ.ପି.ଏସ୍. ପରୀକ୍ଷାରେ କ'ଣ ସେ କେବେ ବସିବ ? ଏଂଜିନିୟରିଂ କଲେଜରୁ ତ ପଳେଇ ଆସିଲା, ବି.ଏ. ଏବେ ପାଶ୍ କରିବ ତ ? ଅନର୍ସ ରଖି ପାରିବ ତ ? ଭଲ ୟୁନିଭର୍ସିଟିରେ, ବାହାରେ, ଏମ୍.ଏ.ରେ ସିଟ୍ ପାଇପାରିବ ତ ?

ଜିପ୍ ପହଞ୍ଚିଲାଣି ବିଜିପୁର ଛକରେ... କ'ଣ କରିବି ଏବେ ? 'ୟୁ' ଟର୍ନ୍ ତ ଶିଖିନି, ଗାଡ଼ିକୁ ଘର ଫାଟକ ଦେଇ ଗାରାଜ୍ ଭିତରେ ପୁରେଇ ପାରିବି ? ଦେଖାଯାଉ... ଷ୍ଟିଅରିଂ ଦେଲି ମୋଡ଼ି, ସ୍ପିଡ୍ କମାଇ ଭିତରକୁ ନେଲି – ବେଶ୍ ସୁନ୍ଦର... ଚାଲିଗଲା ତ ! ମନେ ମନେ ଭାବିଲି ଠିକ୍ ଅଛି, କିଛି ନ ହେଲେ ଯଦି ଡ୍ରାଇଭର୍ ଚାକିରି ହାତକୁ ଆସିଯାଏ, ଚଳେଇ ନେବି ନିଶ୍ଚୟ ! ହସ ଲାଗିଲା, ମନେ ମନେ ହସିଲି ।

ଗାଡ଼ିରୁ ଓହ୍ଲେଇଚି କି ନାହିଁ, ଡ୍ରାଇଭର୍ କୁଆଡୁ ଆସି ହାଜର, ପାଟିରେ ଖଣ୍ଡେ କଡ଼ା ପାନ ।

କହିଲା 'ଆଜ୍ଞା ମୋ ଚାକିରି ଗଲା... ବାବୁ ଯଦି ଜାଣନ୍ତି ?'

'ରହ କାହିଁକି ସେମିତି ହଉଚ ? କ'ଣ ହେଲା ? ବାବୁ ଟୁର୍‌ରୁ ଫେରି ଆସିଲେଣି ?'

'ନା ।'

'ମା ?'

'ଆଜ୍ଞା ଭିତରେ... ରାତିରେ ଆଜ୍ଞା କେଉଁଠି ଥିଲେ ?'

'ହଉ, ଏଇ ଗାଡ଼ି ରହିଲା, ଚାବି ରଖ । ସେଗୁଡ଼ା ପରେ । ବେଳ ଦେଖି... ବୁଝିଲ ? ମୁଁ ଚାଲିଲି... ଘରେ କିଛି କହିବନି... ହେଲା ? ହଷ୍ଟେଲରେ ଗାଧାପାଧା କରିବି... ପରେ ଦେଖା ହେବ ।'

ବାପା ଘରେ ନ ଥିଲେ ମୋତେ ମୋଟେ ଭଲ ଲାଗେନା । ଘରଟା ଖାଲି ଖାଲି ଲାଗେ । ଛୋଟ ଛୋଟ ଭାଇ ଭଉଣୀ ତିନିଜଣ, ଭୀଷଣ ଭଲ ପାଆନ୍ତି ମୋତେ । ମୋତେ ବି ଭଲ ଲାଗେ – ସେମାନଙ୍କ ସହ ଖେଳିବା ପାଇଁ, ସେମାନଙ୍କୁ ଗପ କହିବା ପାଇଁ । କିନ୍ତୁ ଘରେ ମୁଁ ରହେନା ବେଶୀ ସମୟ, ବୋଉସହ ଚାଲିଥିବା ଶୀତଳ ଯୁଦ୍ଧରୁ ରକ୍ଷା ପାଇବା ପାଇଁ । ସମସ୍ତେ କହନ୍ତି ନିଜ ବୋଉଥିଲେ ମୋର କଣ ଏଭଳି ଅବସ୍ଥା ହୋଇଥାଆନ୍ତା ? ବାପାଙ୍କୁ ସରକାରୀ ଅଫିସ୍ ସହ ଘର ମିଳିଥିଲେ ମଧ୍ୟ ମୁଁ କଲେଜ ହଷ୍ଟେଲରେ ରହିଥାନ୍ତି ? ମାସର ଅଧାଦିନ ବୁଲି ବୁଲି ହୋଟେଲରେ, ସାଙ୍ଗସାଥିଙ୍କ ଘରେ ଖାଇଥାନ୍ତି ?

ମନେ ପଡୁଛି, ସେତେବେଳେ ଷଷ୍ଠ ଶ୍ରେଣୀରେ ପଢୁଥିଲି । ବାପା ଟୁର୍‌ରେ ଯାଇଥିଲେ । ବୋଉ ତା ଛୋଟ ଝିଅକୁ ବୁଲେଇ ବୁଲେଇ ଖୁଆଉଥିଲା । କିଛି ସମୟ ପରେ ମୋ ବଡ଼ ଭଉଣୀ ହାତରେ ତାକୁ ଦେଇ ରୋଷେଇଘର ଆଡ଼କୁ ଗଲା । ଟିକି ଝିଅଟି କେମିତି . କ'ଣ ଭଉଣୀ ହାତରୁ ଖସି ତଳେ ପଡ଼ିଗଲା । ପିଲାଟି ସ୍ୱାଭାବିକ କାନ୍ଦିବା କଥା – ସେ କାନ୍ଦିଲା, ରଡ଼ି ଛାଡ଼ିଲା । ବୋଉ ରୋଷେଇଘରୁ ଦଉଡ଼ିଆସି ଅତ୍ୟାଚାର ଆରମ୍ଭ କରିଦେଲା ଭଉଣୀ ଉପରେ । ମୁଁ ସହି ପାରିଲିନି – ଟେବୁଲ୍ ଉପରେ ଥିବା ଗୋଟେ ପେପର୍-ଉଏଟ୍ ଉଠେଇ ବୋଉ ଆଡ଼କୁ ଲକ୍ଷ୍ୟ କରି ଫିଙ୍ଗିଲି । ତା'ର ଭାଗ୍ୟ ଭଲ କାଚଗୁଳାଟି ତା ମୁଣ୍ଡରେ ନ ବାଜି, କାନ୍ଧରେ ବାଜିଲା... ତା ପରେ... ଅବସ୍ଥା ଅସମ୍ଭାଳ !

ବାପା ଫେରି ଆସିଛନ୍ତି ଅଧା ରାସ୍ତାରୁ । ତାଙ୍କୁ କୁଆଡ଼େ ବାଟରେ ଅସ୍ୱସ୍ତି ଲାଗିଲା, ତେଣୁ ଘରକୁ ଫେରି ଆସିଲେ । ଘରେ ଆସି ପରିସ୍ଥିତି ଦେଖି ସେ ଆହୁରି ବିବ୍ରତ ହୋଇପଡ଼ିଲେ । ବାପା ବିବ୍ରତ ହେଲେ ବନ୍ଦ ଥିବା ଝରକା ଓ କବାଟସବୁ ପ୍ରବଳ ଶବ୍ଦକରି ଖୋଲି ପକାନ୍ତି ଓ ବିଭିନ୍ନ କବାଟ ପାଖରେ ଯାଇ ଦୀର୍ଘ ନିଶ୍ୱାସ ନିଅନ୍ତି... ଭୀଷଣ ରାଗି ଯାଆନ୍ତି ଓ ହଠାତ୍ କିଛି କାହାକୁ କହନ୍ତି ନାହିଁ । ମୁଁ ଡରିଯାଇ ମୋ ପଢ଼ାଘରକୁ ଚାଲିଗଲି – ଦୁଇଟାଯାକ ହାତ ଗାଲତଳେ ତ୍ରିଭୁଜ ଆକାରରେ ଦେଇ ଅପେକ୍ଷା କରିଥାଏ ପରିସ୍ଥିତି କେତେ ନାଟକୀୟ ହେଉଛି ।

ତାପରେ ମୋ ସହିତ ସମସ୍ତଙ୍କ କଥାବାର୍ତ୍ତା ବନ୍ଦ । ପିଲାମାନେ ବି ଡରି ଯାଇଥାଆନ୍ତି । ଏହି ଡର ହିଁ ସେମାନଙ୍କର ଓ ମୋ ଭିତରେ ଏକ ଅଦ୍ଭୁତ ସମ୍ପର୍କ ସୃଷ୍ଟି କରେ । ଡର ବା ଭୟ ସହିତ ଥାଏ ଅସହାୟତା, ସଂକୋଚ । ଦୁର୍ଘଟଣା ଘଟି ସାରିଲା ପରେ, କ୍ଷୟକ୍ଷତି ଭୁଲିଯିବାପରେ, ପୁଣି କିଛି ରହିଯାଏ ସ୍ମୃତିରୁ, ଜୀବନରୁ – ଯାହାକି ପରେ ଏକ ନିର୍ଦ୍ଦିଷ୍ଟ ଆଘାତ ବା ଆନନ୍ଦ ଆଣେ । ମନର କେଉଁ ବଖରାରେ ସେ ସ୍ମୃତି ଲୁଚି ରହି ଥାଏ, ଆଉ କେଉଁ ପରିସ୍ଥିତିରେ, କିଭଳି ଭାବରେ ଜୀବନର ଦୃଷ୍ଟିକୋଣ ଓ ମୂଲ୍ୟବୋଧକୁ ପ୍ରଭାବିତ କରେ – ତାହା କେବଳ ମନସ୍ତାତ୍ତ୍ୱିକ ଜଣେ ବୁଝିପାରିବ ବା କହିପାରିବ, ବାରବର୍ଷର ପିଲାଟିଏ ନୁହେଁ ।

ସେ ଏକ ବିଚିତ୍ର ପରିସ୍ଥିତି –ମୋତେ ବହୁତ ସମୟରେ ଦୁଃଖ ଦେଇଛି, ଆଘାତ ଆଣିଛି । ନ ପଚାରି, ଅନେକଟା ବୁଝି ଯାଉଥିବା ପିଲାଟିର ମନରେ ନୂତନ ସଙ୍କେତ, ନୂତନ ପ୍ରଶ୍ନ ଆଣିଛି । ହଁ ମୋ ବୋଉ ଥିଲେ ପରିସ୍ଥିତି ଭିନ୍ନ ମୋଡ଼ ନେଇଥାନ୍ତା ବୋଧେ... ମୁଁ ଅନ୍ୟମାନଙ୍କ ପରି ଘରମୁହାଁ ହୋଇ ଜଣେ ମେଧାବୀ, ସଫଳ ଛାତ୍ରଭାବେ ସମ୍ଭବତଃ ଏଂଜିନିୟର୍‌ଟିଏ ହୋଇ ବା ପ୍ରଶାସକ ହୋଇ ନିହାତି ସ୍ୱାର୍ଥପର ଜୀବନଟିଏ ବଞ୍ଚିଥାଆନ୍ତି ।

ପାରିଲିନି କାହିଁକି ? ସେଥିପାଇଁ ନିଜ ମା'ର ଅଭାବ କ'ଣ କେବଳ ଦାୟୀ ? ନା, ମୋ ଭିତରେ ଲୁଚି ରହିଥିବା ଜଣେ ନୀରବ ବିଦ୍ରୋହୀର ମନ ଦାୟୀ ? ସେ ଯାହା ହେଉନା କାହିଁକି, ମୋ ଜୀବନରେ ସ୍ଥୂଳ ଗତାନୁଗତିକତା ଓ ଅନ୍ୟାୟକୁ ପ୍ରତିରୋଧ କରିବାର ଭାଷା ଓ ଶକ୍ତି ଆସ୍ତେ ଆସ୍ତେ ଗଢ଼ି ଉଠୁଥାଏ ମୋର ଅବଚେତନ ମନରେ । ଏହି ଭାଷାକୁ ଅଧ୍ୟୟନ କରିବା ପୂର୍ବରୁ ବୋଧହୁଏ ମୁଁ ଶିଖିଯାଇଛି । ଏହି ଶକ୍ତିକୁ ହୃଦୟଙ୍ଗମ କରିବା ପୂର୍ବରୁ ବୋଧହୁଏ ମୁଁ ଅକ୍ତିଆର କରିପାରିଛି । ଆଉ ଭାବିଛି, ଏହି ଭାଷାହିଁ ମୋରି ଭିତରେ ତିଆରି କରିବ ମାନସିକ ଶକ୍ତି, ଯାହାକୁ ନେଇ ମୁଁ ଅନ୍ୟମାନଙ୍କଠାରୁ ଭିନ୍ନ ହେବି, ଅନ୍ୟମାନେ ମାଡ଼ି ଯାଉଥିବା, ଭିଡ଼ ଜମାଉଥିବା ରାସ୍ତାକୁ ଛାଡ଼ି ଏକ ନୂଆ, ଅବ୍ୟବହୃତ

ରାସ୍ତାରେ ଆଗେଇ ଯିବି । ଅନ୍ୟଭାବେ ଜୀବନକୁ ଦେଖିବି, ବୁଝିବି ଓ ବଞ୍ଚିବି । ଗୋଟିଏ ନାଁରେ ଜୀବନକୁ ଡାକିବିନି, କାରଣ ଜୀବନର ଓ ବଞ୍ଚିବାର କେବଳ ଗୋଟିଏ ନାଁ ନୁହେଁ, କେତେ ନାଁ ଅଛି । ମୋତେ ସେଗୁଡ଼ିକୁ ଖୋଜିବାକୁ ହେବ, ଆବିଷ୍କାର କରିବାକୁ ହେବ, ନିଜର କରିନେବାକୁ ହେବ ।

## ୧୮

ଆମ ଆନ୍ଦୋଳନ କାମ ଦେଲା । ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ – ଦୁହେଁ ବରହମ୍ପୁର ସାର୍କିଟ୍ ହାଉସ୍‌ରେ । ଡାକରା ଆସିଛି । ମେଡିକାଲ୍ କଲେଜ, ଏଂଜିନିୟରିଂ ସ୍କୁଲ, ଖଲିକୋଟ୍ କଲେଜ ଛାତ୍ର ୟୁନିୟନ୍ ତରଫରୁ ଆମେ ଚାରି ପାଞ୍ଚଜଣ ଗଲୁ । ବିଚାର ଆଲୋଚନା ପରେ ଆମକୁ ପ୍ରତିଶ୍ରୁତି ଦିଆଗଲା ପରବର୍ଷ ଜାନୁୟାରୀରୁ ବରହମ୍ପୁରରେ ନୂତନ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯିବ ।

ଭଲ ହେଲା । ପଢ଼ାପଢ଼ି ନଷ୍ଟକରି ଆନ୍ଦୋଳନରେ ମାତି ଯା'ହେଉ କିଛି ଭଲ ଫଳ ହେଲା । ତା' ସାଙ୍ଗକୁ ସମ୍ବଲପୁରରେ ମଧ୍ୟ ନୂଆ ବିଶ୍ୱବିଦ୍ୟାଳୟର ଘୋଷଣା । ଏଥର ଦକ୍ଷିଣ ଓ ଉତ୍ତର ଓଡ଼ିଶାର ପିଲାମାନଙ୍କୁ ଆଉ ବାଣୀବିହାର ଦଉଡ଼ିବାକୁ ପଡ଼ିବନି – ମାର୍କସିଟ୍ ପାଇଁ, ମାଇଗ୍ରେସନ୍ ସାର୍ଟିଫିକେଟ୍ ପାଇଁ, ଏମ୍.ଏ./ ଏମ୍.ଏସ୍.ସି. ପଢ଼ିବାପାଇଁ ।

ଭାବିଲି ବି.ଏ. ପରୀକ୍ଷା ମୁଣ୍ଡଉପରେ, ଏଥର ପଢ଼ାପଢ଼ି ଆରମ୍ଭ କରିଦେବି । ବି.ଏ.ଟା ପାଶ୍ କରିବାକୁ ପଡ଼ିବ, ଅନର୍ସ୍ ରଖିବାକୁ ପଡ଼ିବ – ତା ପରେ ଯାଇ ଅନ୍ୟ କଥା । ଏ ନାଟକ, ବକ୍ତୃତା, ଆନ୍ଦୋଳନ – ଆଉ ନୁହେଁ । ହୃଦୟ ଭିତରେ ଥିବା ଓ ପ୍ରତିମୁହୂର୍ତ୍ତରେ ଭାଙ୍ଗି ଯାଉଥିବା ଓ ପୁଣି ଗଢ଼ି ଉଠୁଥିବା ଆତ୍ମବିଶ୍ୱାସର ବହୁ ପରୀକ୍ଷା ସରିଲାଣି । ମୁଁ ନିଶ୍ଚିତଭାବେ ଅନ୍ୟମାନଙ୍କ ପରି ବଞ୍ଚିବି ନାହିଁ, ଅନ୍ୟମାନଙ୍କ ତଥାକଥିତ ସଫଳ ଜୀବନ କଥା ଭାବିବି ନାହିଁ, ତାଙ୍କ ଜୀବନ ଓ ମୋ ଜୀବନ ସହ ତୁଳନା କରି ଦୁଃଖରେ ଭାଙ୍ଗିପଡ଼ିବି ନାହିଁ ।

କିନ୍ତୁ ତା କ'ଣ ସମ୍ଭବ ?

ଜିଡ୍ଡୁ କୃଷ୍ଣମୂର୍ତ୍ତୀଙ୍କ କଥା ମନେ ପଡ଼ିଗଲା । ନର୍ପୁଥର କଥା ମଧ୍ୟ । 'ନର୍ପୁଥର'– ଅଖାଡୁଆ ନାଁଟେ, ଶୁଣିଲାବେଳେ କିନ୍ତୁ ଅଖାଡୁଆ ଲାଗେନା, ଡାକିଲାବେଳେ ବି ନୁହେଁ – ବରଂ ଭଲ ଶୁଭେ, ଭଲ ଲାଗେ – ବୁଝି ନ ହେଉଥିବା ସ୍ପେନ୍ ବା ବ୍ରାଜିଲ୍‌ର ସଙ୍ଗୀତ ପରି । ଅସଲ କଥା ହେଉଛି, ନାଁଟିକୁ ଓଲଟାଇ ଡାକୁ ଡାକୁ 'ପୂର୍ଣ୍ଣରଥ' 'ନର୍ପୁଥର' ହୋଇଗଲା । ନାଁକୁ ଓଲଟେଇବାରେ, ବାକ୍ୟକୁ ଓଲଟେଇବାରେ ବନ୍ଧୁ ବିଦ୍ୟାଭୂଷଣଙ୍କ ଖ୍ୟାତି

କଲେଜରେ, ତାଙ୍କରି ଯୋଗୁ 'ନର୍ପୁଁଥର'ର ସୃଷ୍ଟି । କେମିତି ଗୋଟେ ଏପିକ୍ ବା ପୁରାଣର ଛଦ୍ମବେଶୀ ଚରିତ୍ରଭାବରେ ଆମେ ତାକୁ ଗ୍ରହଣ କରିଥିଲୁ । ଓଡ଼ିଶା ସେକ୍ରେଟେରିଏଟ୍ ଲାଇବ୍ରେରୀରୁ ବା ଭୁବନେଶ୍ୱର ଫୁଟ୍‌ପାଥରେ ଶସ୍ତାରେ ବିକ୍ରୀ ହେଉଥିବା ବହି ଭିତରୁ କୃଷ୍ଣମୂର୍ତ୍ତିଙ୍କ ପ୍ରଶ୍ନୋତ୍ତର ସମ୍ବଳିତ ବହି 'କମେଂଟେରିଜ୍ ଅନ୍ ଲିଭିଂ' ନେଇ ଆସିଥିଲା ସେ ।

ବହିଟି ମୋ ଉପରେ ଅଦ୍ଭୁତ ପ୍ରଭାବ ପକାଇଥିଲା । ଲୋକଟି ବି ଅଦ୍ଭୁତ – ଯେମିତି ତାଙ୍କ ନିଜ ଜୀବନ ଓ ଚିନ୍ତାଧାରା । ଆନୁଷ୍ଠାନିକ ଶିକ୍ଷା ସେ କେବେ ପାଇ ନ ଥିଲେ । ଆନିବେସାନ୍ତ ତାଙ୍କ ପଢ଼ାପଢ଼ି ଦାୟିତ୍ୱ ନେଇଥିଲେ । ମାଟି ଉପରର ପିମ୍ପୁଡ଼ି ଓ ଆକାଶର ମେଘ – କୃଷ୍ଣମୂର୍ତ୍ତିଙ୍କୁ ସବୁବେଳେ ଆକୃଷ୍ଟ କରିଥିଲା । ଏକା ଏକା ସେ ଜୀବନ ଓ ପ୍ରକୃତିକୁ ଖୁବ୍ ନିକଟରେ ଦେଖି ପାରୁଥିଲେ ଓ ବୁଝି ପାରୁଥିଲେ । ଆଉ ବଡ଼ କଥାହେଲା, ଯାହା ବୁଝିଥିଲେ, ହୃଦୟଙ୍ଗମ କରିଥିଲେ – ତାକୁ ଅତି ସୁନ୍ଦର ଭାବେ ଯୁକ୍ତିସହ, ପର୍ଯ୍ୟାୟକ୍ରମେ ଶ୍ରୋତା ମାନଙ୍କୁ ବୁଝେଇ ପାରୁଥିଲେ । ନର୍ପୁଁଥର କିନ୍ତୁ ଯାହା ଠିକ୍ ଭାବେ ବୁଝି ନ ଥିଲା, ହୃଦୟଙ୍ଗମ କରି ନଥିଲା ବା ଆଂଶିକ ବୁଝିଥିଲା ଓ ହୃଦୟଙ୍ଗମ କରିଥିଲା, ତାକୁ ଅତି ସୁନ୍ଦର ଭାବେ, ଚରମ ନାଟକୀୟ ଢଙ୍ଗରେ ଅନ୍ୟମାନଙ୍କୁ ବୁଝାଇ ପାରୁଥିଲା । ଥରେ ଗୋଟେ ସାଧାରଣ ସଭାରେ ମୁଁ ନର୍ପୁଁଥରକୁ 'ଭାରତର ସକ୍ରେଟିସ୍' ବୋଲି କହିଥିଲି । ଜୋର୍ ତାଳି ହୋଇଥିଲା ।

ନର୍ପୁଁଥର ଦେଖିବାକୁ କୃଷ୍ଣମୂର୍ତ୍ତିଙ୍କ ଭଳି – ସେମିତି ଲମ୍ବା ମୁହଁ, ଲମ୍ବା ନାକ, ଆଉ ସୁନ୍ଦର ଜକ୍‌ଜକ୍ ଆଖି ଦିଓଟି... ଖୁବ୍ ଦୂରକୁ ଲମ୍ବି ଯାଇଥାଏ... ପ୍ରଚଣ୍ଡ ଜ୍ୟୋତି ସେଥିରେ ।

କୃଷ୍ଣମୂର୍ତ୍ତିଙ୍କ କହିବାନୁସାରେ ମଣିଷ ନିଜ ଅତୀତର ପଞ୍ଜୁରୀରେ ଆବଦ୍ଧ ରହିଥିବାରୁ ସବୁ ଅସୁବିଧା । ଅତୀତର ସ୍ମୃତି, ଅନୁଭୂତି ଓ ଜ୍ଞାନରୁ ନିଜକୁ ମୁକ୍ତ କରିବାକୁ ପଡ଼ିବ, ରକ୍ଷା କରିବାକୁ ପଡ଼ିବ । କାରଣ ଶୈଶବରେ ବା ଯୁବାବସ୍ଥାରେ ହେଉ – ସେହି ସ୍ମୃତି, ସେହି ଅନୁଭୂତି ମଣିଷ ମନ ଭିତରେ ଏକ ନିର୍ଦ୍ଦିଷ୍ଟ ଭୟ ଓ ସ୍ୱପ୍ନ ତିଆରି କରେ । ଏଭଳି ଏକ କଣ୍ଡିସନିଂ ବା ଅନୁବନ୍ଧନରୁ ନିଜକୁ ମୁକ୍ତ ନ କରିବା ପର୍ଯ୍ୟନ୍ତ, ଗତାନୁଗତିକ ଦୃଷ୍ଟିଭଙ୍ଗୀ ନ ବଦଳାଇବା ପର୍ଯ୍ୟନ୍ତ – ମଣିଷ ନିଜ ଜୀବନ ଓ ଭାବନାର ସ୍ରୋତକୁ ଚିହ୍ନି ପାରିବ ନାହିଁ ବା ବୁଝି ପାରିବ ନାହିଁ ।

, ଏବେ ମୋ ପାଖରେ କେତୋଟି ପ୍ରଶ୍ନ ଜୀବନର ସ୍ମୃତି ଓ ଅନୁଭୂତିରୁ ଜନ୍ମ ନେଇଛି, ମନର ବିଭିନ୍ନ କୋଠରିକୁ ମାଡ଼ିବସିଛି । ପ୍ରଶ୍ନ ହେଲା: ମୁଁ କେତେଟା ମୁକ୍ତ ? କେତେଟା ସ୍ୱାଧୀନ ? ଯେତେବେଳେ ଜୀବନଯାକ ସମସ୍ୟା ଲାଗି ରହିଛି, ସମାଜରେ ସମସ୍ୟା – ଶୋଷଣ, ଦୁର୍ନୀତି, ଭ୍ରଷ୍ଟାଚାର, ପାରିବାରିକ ଜୀବନରେ ସମସ୍ୟା – ମତାନ୍ତର,

ଅନ୍ୟାୟ, ଭୁଲ ବୁଝାମଣା... ମୁଁ ଏହି ସମସ୍ୟାଗୁଡ଼ିକୁ କେମିତି ଦେଖୁଛି ? ଅନ୍ୟମାନେ ଯେମିତି ଦେଖୁଛନ୍ତି ? ମୁଁ ସେଗୁଡ଼ିକୁ ସମାଧାନ କରୁଛି କି ? ଯଦି କରୁଛି, କେମିତି ? ଅନ୍ୟମାନେ ଯେମିତି କରୁଛନ୍ତି ? ମୁଣ୍ଡ ପାତି ? ନଇଁ ନଇଁ... ? ଭିତରେ ଗୋଟିଏ କଥା ଭାବି, ବାହାରେ ଆଉ ଗୋଟିଏ କଥା କହି ? ଯେଉଁ ପ୍ରଶ୍ନ ସମସ୍ୟା ଭାବରେ ଛିଡ଼ା ହୋଇଛି, ତା ପାଇଁ ଖାମ୍‌ଖିଆଲି ଉତ୍ତରଟିଏ, କାମଚଳା ସମାଧାନଟିଏ ବାହାର କରି ଖୁସି ହେବାର, ମୁଁ ଭାବୁଛି, କିଛି କାରଣ ନାହିଁ ।

ସବୁ ପ୍ରଶ୍ନର ମୂଳକୁ ଯିବି ମୁଁ ସ୍ଥିର କରିଛି । ଉତ୍ତର ବା ସମାଧାନ ତରବରରେ ମୁଁ ଖୋଜିବି ନାହିଁ । ଉତ୍ତର, ସବୁ ପ୍ରଶ୍ନର ନଥାଏ, ଯେମିତି କିଛି ରାସ୍ତାର ଶେଷ ନ ଥାଏ – ରାସ୍ତା ହିଁ ରାସ୍ତା ।

ମୋ ରାସ୍ତା ମୁଁ ବାଛି ନେଇଛି – ଆଗକୁ ଯିବାର ରାସ୍ତା, ଆଗେଇଯିବାର ରାସ୍ତା, ଅଙ୍କାବଙ୍କା, ଅନୁଭୂତିର ରାସ୍ତା – କୌଣସି ନିର୍ଦ୍ଦିଷ୍ଟ ତତ୍ତ୍ୱ ବା ଆଦର୍ଶର ନୁହେଁ । ଅନୁଭୂତିର ବିଭିନ୍ନତା ଓ ବିଚ୍ଛିନ୍ନତା କେତେଟା ମୁଁ ବୁଝିଛି ଜାଣେନା, କିନ୍ତୁ ଏତିକି ଜାଣିପାରୁଛି, ଅବୁଝା ଅନୁଭୂତି କେବେ ଜୀବନରେ ଆନନ୍ଦ ଦେବ ନାହିଁ । ସବୁ ନ ହେଲେ ବି କିଛି ଅନୁଭୂତିକୁ ବୁଝିବାକୁ ପଡ଼ିବ – ବ୍ୟବହାରିକ ଶବ୍ଦ ଜରିଆରେ ନୁହେଁ, ପାରମ୍ପରିକ ଭାଷା ଜରିଆରେ ନୁହେଁ, ବରଂ ବଞ୍ଚିବାର ମୁହୂର୍ତ୍ତମାନଙ୍କରେ, 'ହଁ' 'ନାହିଁ' ର ଦ୍ୱନ୍ଦ୍ୱ ମଝିରେ, ଅନୁଭୂତିକୁ ବୁଝିବାକୁ ପଡ଼ିବ ମନଭିତରେ ଜମୁଥିବା ଅଳନ୍ଧୁସବୁ ପରିଷ୍କାର କରିବା ସମୟରେ ।

ଜୀବନର ବିଭିନ୍ନ କୋଣରୁ କେତେପ୍ରକାର ଅନୁଭବକୁ ନେଇ ଅନୁଭୂତିସବୁ ଆସିଛି । ମୁଁ ମନର ସବୁ ବଖରା ଖୋଲା ରଖି ଆଗେଇ ଯାଉଛି – ନିଜ ଇଚ୍ଛାରେ । ତେଣୁ ମୁଁ ଭାବୁଛି – ହଁ, ମୁଁ ସ୍ୱାଧୀନ, କାରଣ ସବୁବେଳେ ଆଗେଇ ଯାଉଛି, ମାଡ଼ି ଚାଲିଛି ନିଜ ଇଚ୍ଛାରେ । ଯେମିତି ରେଭେନ୍‌ସାରେ ସାଇନ୍‌ସ୍ ପଢ଼ିଲି, ଘରଛାଡ଼ି, ବାପାଙ୍କୁ ଛାଡ଼ି, ଆସି ହଷ୍ଟେଲରେ ରହିଲି ନିଜ ଇଚ୍ଛାରେ, ତା ପରେ ଭଲ ଲାଗିଲାନି, କଟକ ଛାଡ଼ି ରାଉରକେଲା ଗଲି ମୋ ଇଚ୍ଛାରେ । ଏଂଜିନିୟରିଂ କଲେଜ ଭଲ ଲାଗିଲାନି, ଛାଡ଼ିଲି ମୋ ଇଚ୍ଛାରେ । ଛାତ୍ର ଆନ୍ଦୋଳନରେ ମାତିଲି, ବି.ଏ. ପଢ଼ିଲି, ପୁଣି ହଷ୍ଟେଲକୁ ଗଲି, ପୁଣି ଆନ୍ଦୋଳନରେ ଲାଗିପଡ଼ିଲି । ନାଟକ, ଅଭିନୟ, ବକ୍ତୃତା ପ୍ରତିଯୋଗିତା, ଗାଁ ଗାଁରେ ବୁଲି ରାଜନୀତିରେ ଦେଖା ଦେଇଥିବା ଦୁର୍ନୀତି, ଶୋଷଣ ବିରୁଦ୍ଧରେ ଲୋକମାନଙ୍କ ଭିତରେ ପ୍ରତିକ୍ରିୟା ସୃଷ୍ଟି କରେଇବା ଇତ୍ୟାଦି ସବୁ କାର୍ଯ୍ୟକ୍ରମ ହାତକୁ ନେଲି ନିଜ ଇଚ୍ଛାରେ । ଅନ୍ୟ କାହାର ଅନୁରୋଧ ବା ପ୍ରରୋଚନାରେ ନୁହେଁ । ମୋତେ ସବୁବେଳେ ଆଗକୁ ଟାଣିଲା, ଆଗେଇ ଯିବାର ଆନନ୍ଦ, ଯାହା ଭିତରେ ଲୁଚି ରହିଥାଏ ଗୋଟିଏ ପ୍ରକାର ଆକସ୍ମିକତା – କୌଣସି

ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଏକ ଅନିର୍ଦ୍ଦିଷ୍ଟ ଘଟଣା ଘଟିବାର ଆକସ୍ମିକତା... ଯେପରି ସେଦିନ ସକାଳେ ଘଟିଗଲା :

ଥାନାରେ ଗିରଫ ହୋଇଥିବା ସାଙ୍ଗଙ୍କୁ ଦେଖିବାକୁ ଯାଇ ମୁଁ ରହିଗଲି – ଫେରି ପାରିଲିନି ହଷ୍ଟେଲକୁ । ଥାନା ଅଫିସର କହିଲେ – ମୋ ନାଁ ରେ ଆରେଷ୍ଟ୍ ୱାରେଣ୍ଟ୍ ଅଛି । ଡି.ଏସ୍.ପି. ବାପାଙ୍କ ସାଙ୍ଗ । ଆସିଲେ, ଦୋସା, କଫି ମଗେଇଲେ । ସହରର ଶାନ୍ତିଭଙ୍ଗ, ୧୪୪ ଧାରା ଜାରି ହୋଇଥିବା ଅଞ୍ଚଳରେ ସଭା କରିବା ଇତ୍ୟାଦି ଅପରାଧରେ ଆମକୁ ଗିରଫ କରାଯାଇଥିଲା ।

ସନ୍ଧ୍ୟାରେ ଆଉ ଦଶଜଣ କଲେଜଛାତ୍ର ଆସିଲେ । ରାତି ଦଶଟାବେଳେ ଆମକୁ ପୋଲିସ୍ ଭ୍ୟାନ୍‌ରେ କୌଣସି ପାହାଡ଼ିଆ ରାସ୍ତାରେ ଦୂରଯାଗାକୁ ନିଆଗଲା ପରି ମନେହେଲା । ଭୀଷଣ ଥଣ୍ଡା ଲାଗିଲା , ହୁଏତ ତିନି ଚାରି ହଜାର ଫୁଟ ଉଚ୍ଚ ପାହାଡ଼ ଉପରେ ଆମ ଗାଡ଼ି ଚାଲୁଥିଲା ।

ମନେ ମନେ ରାଗିଲି ବସନ୍ତ ଉପରେ । କ'ଣ ଦରକାର ଥିଲା ସେଦିନ ? ଏଂପ୍ଲୟମେଣ୍ଟ୍ ଅଫିସର୍, ନାଁ କ'ଣ ମନେ ପଡୁନି – ଆପ୍ପାରାଓ ବା ଜଗ୍ଗାରାଓ – ତାଙ୍କୁ ଧରି ଜବରଦସ୍ତ ତାଙ୍କ ଇସ୍ତଫାପତ୍ର ଟାଇପ୍ କରି ତାଙ୍କ ଦସ୍ତଖତ କରେଇ... ଏ ସବୁ କରିବା କଣ ଦରକାର ଥିଲା ? ସେ ଏଂପ୍ଲୟମେଣ୍ଟ୍ ଏକ୍‌ସଚେଞ୍ଜ୍‌ରୁ ନାଁ ପଠେଇବାରେ ତେଲୁଗୁ-ଓଡ଼ିଆ ପ୍ରାର୍ଥୀମାନଙ୍କ ଭିତରେ ପାତର ଅନ୍ତର କରୁଥିଲେ । ଫଳ କ'ଣ ହେଲା ? ସେ ଥାନାରେ ଆମ ନାଁରେ ପରେ ଗୋଟେ ଏଫ୍.ଆଇ.ଆର୍ କରିଦେଲେ । ଆମ ବିରୁଦ୍ଧରେ ପୁଣି ଗୋଟେ କେଶ୍ ।

ମୁଁ ଭାବିନେଲି – ଗଲା ସବୁ । କୋର୍ଟକେଶ୍‌ରୁ ମୁକ୍ତି ପାଉ ପାଉ ପାଞ୍ଚ ଛ ବର୍ଷ ଲାଗିଯିବ । ତା ପରେ ଯାହା ଚାକିରି ମିଳିବ ସହଜରେ ଅନୁମାନ କରିହେଉଛି । କଳା କୋଟ୍ କେତୋଟି ସିଲେଇ କରିବାକୁ ପଡ଼ିବ । ଓକିଲଟିଏ ହିଁ ଶେଷରେ ହେବାକୁ ପଡ଼ିବ ।

ତେବେ ମନ୍ଦ ନୁହେଁ । ଓକିଲାତି – ସ୍ୱାଧୀନ ଜୀବିକା ! କ୍ଷତି କ'ଣ ? ପରିଶ୍ରମ କଲେ, ଥରେ ନାଁ ଫିଟିଗଲେ, ହାଇକୋର୍ଟ, ସୁପ୍ରିମ୍ କୋର୍ଟ ପର୍ଯ୍ୟନ୍ତ ମାଡ଼ିଯାଇହେବ । ରୋଲ୍‌ମଡେଲ୍ ତ ଆଖି ଆଗରେ ଅଛନ୍ତି – ବାରିଷ୍ଟର ବୀରେନ୍ଦ୍ର ପଟ୍ଟନାୟକ, ରଣଜିତ୍ ମହାନ୍ତି, ଅଶୋକ ଦାସ... ଆଉ ଟିକେ ଦୂରକୁ ଗଲେ, ନାନା ପାଲ୍‌ଖିବାଲା, କ୍ରିଷ୍ଣା ଆୟାର୍, ସୋଲି ସରାବ୍‌ଜି, ସିଦ୍ଧାର୍ଥ ଶଙ୍କର ରାୟ... । କିନ୍ତୁ ମନରେ ଆଶଙ୍କା ଆସିଲା – ମୁଁ ଖାଲି ଓକିଲାତି ଜୀବନର ସୁନ୍ଦର ଓ ରଂଗୀନ୍ ପାଖଟିକୁ ଦେଖି ଚାଲିଛି ଯେ ! ଅନ୍ୟ

ପାଖଟି କଳା-ଧଳା, ବାଦାମଖିଆ ଚାକିରିଟିଏ... ଏଫିଡେଭିଟ୍ କରିବାକୁ ଆସିଥିବା ଲୋକ ଟଙ୍କା ନଦେଇ ଖସି ପଳାନ୍ତି । ବାପାଟିଏ ହାଇକୋର୍ଟ ବା ସୁପ୍ରିମକୋର୍ଟରେ ନ ଥିଲେ, ପୁଅ କ'ଣ ଉପରକୁ ଯାଇପାରିବ ?

ଛାଡ଼, ବେଶି ସେଗୁଡ଼ା ଭାବିବିନି । ପଛକୁ ଚାହିଁଲି, ଅତୀତକୁ । ନା, ମୋର ଏତେଟା ବିକଳିଆ ଅବସ୍ଥା ହେବନି । ବକ୍ତୃତା ପ୍ରତିଯୋଗିତାରେ କେତେ କେତେ ଜାଗାରେ ପୁରସ୍କାର ପାଇଛି, ସିଲ୍ଡ୍ ଆଣିଛି, ମୁଁ ଜଣେ ସଫଳ ଓକିଲ ହୋଇ ପାରିବିନି ?

## ୧୯

ବସ୍ ଶେଷରେ ଗୋଟିଏ ଜାଗାରେ ରହିଲା । ଆମେ ଓହ୍ଲେଇଲୁ । ପୁଣି ପଶିଲୁ ଜେଲ୍ ଭିତରେ । ବାରଜଣଯାକ ପାଖାପାଖି ରହିଲୁ – ଗୋଟିଏ ଗୋଟିଏ ସେଲ୍‌ରେ ଦୁଇଜଣକରି । ସିମେଣ୍ଟ ବିଛଣା – ଥଣ୍ଡା ଯେ କାହିଁରେ କ'ଣ । ଆମ ସେଲ୍‌ରେ ବୋଲହାକ କରିବାକୁ ଜଣେ ଆସିଥାଏ – କଏଦୀ ଜଣେ – ଆମପରି ବିଚାରାଧୀନ ଅପରାଧୀ ବା ଅଣ୍ଡର୍-ଟ୍ରାଏଲ୍ ପ୍ରିଜ୍‌ନର୍ ନୁହେଁ । ନାଁ ତାର 'କିନୋ' । ଚାରି ଫୁଟିଆଟେ, ରଙ୍ଗ କଳା ମଚ୍ ମଚ୍ । ହସ ତାର ଖୁବ୍ ସୁନ୍ଦର – ପାହାଡ଼ିଆ ରାତିର ବିଜୁଳିପରି । ସେ କିନ୍ତୁ କେବେ ହସେନା । ଯାହା କହିଲେ କିନୋ କହେ 'ହଇ' । ସବୁ ପ୍ରଶ୍ନ ଠିକ୍ ବୁଝି ପାରେନା । କିଛି ପ୍ରଶ୍ନକୁ ଏପାଖ ସେପାଖ ଦୋହରେଇ ପଚାରିବାକୁ ପଡ଼େ ।

ପ୍ରଥମ ଦିନହିଁ ତାକୁ ମୁଁ ପଚାରିଲି – 'କିନୋ, ତୁ କଣ କରିଥିଲୁ, ତୋତେ ଜେଲ୍ ହେଲା ?'

ସେ କିଛି ନ କହି ତଳକୁ ଅନେଇଲା ।

'ତୁ ବାହା ହୋଇଛୁ ?' ମୋ ସାଙ୍ଗରେ ରହୁଥିବା ବନ୍ଧୁ ପ୍ରଶାନ୍ତ ସିହ୍ନା ପଚାରିଲେ ।

କିଛି ଉତ୍ତର ନାହିଁ ।

ସନ୍ଧ୍ୟା ଆସିଗଲାଣି । ବାଣ ଫୁଟିବା ଆରମ୍ଭ ହୋଇଗଲା ଜେଲ୍ ବାହାରେ । ଆମର ମନେ ପଡ଼ିଗଲା, ଦୀପାବଳୀ ତ ! ଆଜି ଦୀପାବଳୀ ଅମାବାସ୍ୟା ।

ଆମ ସହିତ ଦି'ଜଣ ସ୍କୁଲପିଲା ବି ଥିଲେ – ବେବୀ, ବାଚୁ... ଦିଭାଇ । ସାନଟା ବାଚୁ – ବହୁତ କାନ୍ଦୁଥାଏ । ଘରକଥା ମନେ ପଡୁଥାଏ – ଅନ୍ୟ ଭାଇ ଭଉଣୀ ସବୁ ଆଜି ବାଣ ଫୁଟେଇଥିବେ, କେତେ ମଜା କରୁଥିବେ ଭାବି କାନ୍ଦୁଥିଲା । ଆମେ ସବୁ ତାକୁ ବୁଝେଇବାରେ ଲାଗି ପଡ଼ିଲୁ – 'ଦେଖ୍, ତୋ ନାଁ କାଲି ଖବରକାଗଜରେ ବାହାରିବ । ବ୍ୟସ୍ତ

ହ'ନି । ଓଡ଼ିଶାସାରା ସମସ୍ତେ ଜାଣିବେ । ଲୋକମାନଙ୍କ ପାଇଁ, ସମାଜ ପାଇଁ ବିପ୍ଲବ କରି ଦୁର୍ନୀତିଗ୍ରସ୍ତ ସରକାର ଓ ଅମଲାତନ୍ତ୍ର ବିରୁଦ୍ଧରେ ଆନ୍ଦୋଳନ କରି ତୁ ଜେଲ୍ ଆସିଛୁ, କୌଣସି ମଣିଷ ମାରି ଆସିନୁ, ବା ଚୋରି କରି ଆସିନୁ । ଲୋକେ ଫୁଲମାଳ ପିନ୍ଧେଇବେ । ତାପରେ ଏତେ କମ୍ ବୟସରେ ଏତେ କଥା କରି ପକେଇଛୁ... ତୋ ଉପରେ ଲେଖା ବାହାରିବ, ତୋ ଫଟୋ ବାହାରିବ... କାଲି ତୁ ନେତା ହେବୁ, ମନ୍ତ୍ରୀ ହେବୁ, ଦେଶର ଶାସକ ହେବୁ ?'

ବାଚୁର ଲୁହ ଶୁଖିଗଲା, ମୁହଁରେ ବିଶ୍ୱାସର ହସ ।

ପରଦିନ ସକାଳେ ଜେଲର୍ ଆସିଲେ – ରାଙ୍ଗୁଆ ଲୋକଟେ, ଅଧାବାଳ ଧଳା । ହାତରେ ଟିଫିନ୍ କ୍ୟାରିୟର୍ । ପିଲାମାନଙ୍କୁ ଜେଲ୍‌ରେ ଦେଖି ଆଉ ଥୟଧରି ରହିପାରିଲେନି ବୋଧେ ।

ଟିଫିନ୍ କ୍ୟାରିୟର୍‌ରେ ଆଳୁଦମ୍, ଚକୁଳି ପିଠା, ପୋଦନା ଚଟଣି ! ଚଶମା ପୋଛୁ ପୋଛୁ କହିଲେ – 'ତୁମ ମାଉସୀ ଏଗୁଡ଼ା ପଠେଇଛନ୍ତି, ଖାଇନିଅ ।'

ଚବିଶଟା ହାତ କାମରେ ଲାଗିଗଲା । ମିନିଟ କେତୋଟିରେ ଟିଫିନ୍ କ୍ୟାରିୟର୍ ସଫା – ଆଉ ଧୋଇବାକୁ ପଡ଼ିଲାନି ।

ଆହୁରି ଏକ ସକାଳ । ପୁଣି ସେଇ କିନୋ । ମୋର ପୁରୁଣା ପ୍ରଶ୍ନ । ଏଥର ପରିସ୍ଥିତିକ୍ରମେ, ଆମେ ଦୁଇଜଣ ଏକା, ବଗିଚା କଣରେ ।

'ସତରେ କହିଲୁ, ତୁ କଣ କରି ଏଠିକୁ ଆସିଛୁ ?' ମୁଁ ପଚାରିଲି ।

'ଦଶ ବର୍ଷ ହେଲା...' କିନୋ ପ୍ରଥମ ଥର ମୁହଁ ଖୋଲିଲା ।

'ଆରେ – କାହିଁକି ଆସିଲୁ କହ ଆଗେ । କାହାକୁ ଗୋଟେ ହାଣି ଦେଇଛୁ, ନିଶ୍ଚୟ ?' ଓକିଲ ଜେରା କଲାଭଳି ମୁଁ ପଚାରିଲି ।

'ହଁ, ମୋ ତିରିଲାକୁ ।'

'ମାନେ, ତୋ ସ୍ତ୍ରୀକୁ ତୁ ହାଣିଦେଲୁ ? କାହିଁକି ?'

କିନୋ କହିଲା – 'ଗୋଟେ ଦିନ ଘର୍‌କୁ ଆସି ଦେଖିଲି ସେ ଆଉ ଗୁଟେ ଲୋକ୍ ସାଙ୍ଗରେ ଶୋଇଛି...'

'ତା' ପରେ ?'

'ତା' ପରେ... ହାତରେ କୁରାଢ଼ି ଥିଲା... ଗଲି ଦି ଜଣଙ୍କୁ ହାଣି ଦେଲି । ସାଥେ ସାଥେ ଥାନାକୁ ଗଲି । ଥାନା ବାବୁକୁ ସତ୍‌କଥା କହିଦେଲି... ତା' ପରଠୁଁ ମୁଁ ଏଇଠି ।'

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କିନୋ ମୋ ପୃଥିବୀର ବାସିନ୍ଦା ପରି ଲାଗିଲା ନାହିଁ, ଯେଉଁଠି ସତକୁ ସବୁବେଳେ ଲୁଚା ଯାଇଥାଏ, ବେଳେ ବେଳେ ହତ୍ୟା କରାଯାଇଥାଏ, କାରଣ ସତ ବାହାରି ଆସିଲେ ମଣିଷ—ମଣିଷର ସମ୍ପର୍କ ପୂର୍ବପରି ରହେନାହିଁ । ସତକୁ ସମ୍ମାନ ଦେବା ଦୂରେ ଥାଉ, ବରଦାସ୍ତ କରିବାକୁ ସମାଜ ପ୍ରସ୍ତୁତ ନଥାଏ । ଯୀଶୁ, ସକ୍ରେଟିସ୍, ଗାଲିଲିଓଙ୍କ ଠାରୁ ଆରମ୍ଭ କରି ଗାନ୍ଧି, ଲୁମୁମ୍ବାଙ୍କ ପର୍ଯ୍ୟନ୍ତ – ସତ ଇତିହାସର ପରଦା ପଛରେ ହିଁ ରହିଥାଏ । କେଡ଼େ ସହଜ ଓ ସୁନ୍ଦର ଭାବେ କିନୋ ତା ଦୋଷ ସ୍ୱୀକାର କରିନେଲା, ଆଉ ଦଣ୍ଡକୁ ମୁଣ୍ଡପାତି ସହିନେଲା । ଭିନ୍ନ ଏକ ପୃଥିବୀର ଜୀବ ଏଇ କିନୋ, ମୋ' ପୃଥିବୀର ନୁହଁ – ଯେଉଁଠି ପରିବାରରେ, ଅନୁଷ୍ଠାନରେ, ସମାଜରେ, ଶାସନକ୍ଷେତ୍ରରେ, ରାଜନୀତିରେ, ସତର ସ୍ଥାନ ନାହିଁ । ଯଦି ଅଛି ତାହା ଛଦ୍ମବେଶୀ ମିଛର । ମଣିଷର ସମସ୍ତ ଜ୍ଞାନ ଓ କୌଶଳ ଖର୍ଚ୍ଚ ହେଉଛି ମିଛକୁ ସତ ଭାବରେ ପ୍ରମାଣ କରିବା ଲାଗି, ପ୍ରତିଷ୍ଠା କରିବା ଲାଗି ।

ବୁଧବାର ଦିନ ସକାଳେ କିନୋ ଦଉଡ଼ି ଦଉଡ଼ି ଆସି କହିଲା – 'ବାବୁ ଆଜି ମାଂସ...'

ତା ହେଲେ ବୁଧବାର ଦିନ ଜେଲ୍‌ରେ ମାଂସ ହୁଏ – ଆମେ ରହିଲୁ ପ୍ରତୀକ୍ଷାରେ । ଠିକ୍ କରିଥିଲୁ ଖବରକାଗଜ ଓ ରାଜନେତାମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଅନଶନ କରିବା । 'ସି' କ୍ଲାସ୍ ଅପରାଧୀ କରି ରଖିଛନ୍ତି, 'ହୋ ହା' ନ କଲେ ସେମିତି ରହିଯିବୁ । ଜାତୀୟ ନିରାପତ୍ତା ଆଇନ୍ ଅପରାଧୀ ହେଲେ କୁଆଡ଼େ ଷ୍ଟେଟସ୍ ବଢ଼ିଯାଏ – ସକାଳେ ଅଣ୍ଡା, ପାଉଁରୁଟି, କଦଳୀ, ଖବରକାଗଜ ଇତ୍ୟାଦି ଦିଅନ୍ତି, ତେଣୁ ଅନଶନ ଫନଶନ ପ୍ରୋଗ୍ରାମ ସବୁ ଥାଉ, ବୁଧବାର ପରେ ଦେଖିବା ।

କିନୋର ଓ ମୋର ସମ୍ପର୍କ ବଢ଼ି ଚାଲିଲା । ଦିନେ ସେ ମୋତେ କହିଲା – ସେ ବଜାରକୁ ପରିବା କିଣିବା ପାଇଁ ଯାଉଛି ସର୍ଦାର୍ ସହ । 'ସର୍ଦାର୍' କଏଦୀଙ୍କ ପ୍ରତିନିଧି ଓ ନେତା । ଭଲ ପୋଷ୍ଟ୍‌ଟାଏ ତ ! ମନେ ମନେ ଭାବିଲି । ଏହି ଦି ଜଣଙ୍କ ଉପରେ ଜେଲର୍‌ଙ୍କ ଅଗାଧ ବିଶ୍ୱାସ । ଚାହିଁଲେ କିନୋ ତ ପୁରା ଜେଲ୍‌ରୁ ପଳେଇ ଯାଇ ପାରନ୍ତା, ମୁଁ ତାକୁ ପଚାରିଲି ।

କିନୋର ଉତ୍ତର ଶୁଣି ମୋତେ ଦୁଃଖ ଲାଗିଲା । ସତରେ ସେ କୁଆଡ଼େ ବି ଯିବ ? କେହି ନାହାନ୍ତି ତାର ବାହାର ଦୁନିଆରେ । ଜେଲ୍ ଭିତରେ ସେ ଘର ବସେଇ ସାରିଲାଣି । ଅନ୍ୟ କଏଦୀଙ୍କ ସହ କେତେ ସୁନ୍ଦର ସମ୍ପର୍କ ଓ ବୁଝାମଣା ତାର ହୋଇଯାଇଛି । ମୋତେ ଦେଖିଲେ ଘରର ଲୋକଟିଏ ପରି, ପରିବାରର ଜଣେ ପରି, ସେ କେତେ ଖୁସି ହୋଇ ଯାଉଛି !

ଶେଷରେ ବୁଧବାର ଆସିଲା । ମାଂସ ତରକାରିଟି ଘଟିଲା । ଅବଶ୍ୟ ସମୁଦ୍ର-ମନ୍ଥନରେ ଅମୃତ ଖୋଜିଲା ପରି, ତରକାରିରୁ ମାଂସ ଖୋଜିବାକୁ ପଡ଼ିଲା । ସେଇ ତରକାରିକୁ 'ଶାଗୁଆତି' କୁହାଯାଇପାରେ, ଯେମିତି ରଜରେ ଗାଁ ମାନଙ୍କରେ ହୁଏ । ଅଧ କିଲୋ ମାଂସ ସହିତ ଥାଏ ଦୁଇ କିଲୋ ଆଳୁ, ଆଉ ତା ସହିତ 'ଭାରତର ପାଣି' ଅର୍ଥାତ୍ ଉଆଟର୍ ଅଫ୍ ଇଣ୍ଡିଆ, ଯେଉଁ ପାଣି କେବେ ସରେନାହିଁଯାଦୁକର ପି.ସି.ସର୍କାରଙ୍କ କୁହୁକ ପାତ୍ରରୁ । ଆଉ ରୁଟିକୁ ଛିଡ଼େଇବାକୁ ରୀତିମତ୍ କସରତ୍ କରିବାକୁ ପଡ଼ିଲା – କଲେଜ ସ୍ପୋର୍ଟ୍‌ସ୍‌ରେ 'ଟଗ୍-ଅଫ୍-ୱାର୍' ପରି – ସିହ୍ନା ଓ ମୁଁ । ସେଇଟା କାହିଁକି ଛିଡ଼ିବ ? କେଉଁ ଅଟାରେ ତିଆରି କେଜାଣି ! ସେ ଯା ହେଉ ଝୋଳରେ ବତୁରେଇ ରୁଟି ଦୁଇଟା ବହୁ କଷ୍ଟରେ ଉଦରସ୍ଥ କରି ଯେଞ୍ଜା କୋଠରିକୁ ଫେରିଲୁ ସେଦିନ ରାତିରେ । ମୋତେ ଏକା ଦେଖି କିନୋ କଣ ଗୋଟେ କହିବ ବୋଲି ଇସାରା ଦେଲା । ମୁଁ ତା ପାଖକୁ ଗଲି । ସେ କହିଲା – 'ବାବୁ, କାଲି ଖରାବେଳେ ଆସିବ, ବଗିଚା ସେ ପାଖ ସେଲ୍‌କୁ ଯିବା । ତମ୍‌କୁ ଗୋଟେ ଭଲ ଜାଗାକୁ ନେଇଯିବି ।'

ଜେଲ୍ ବାହାରକୁ, ଅନ୍ୟ କେଉଁ ସେଲ୍ ଆଡ଼େ ଯିବା ମନା – ମୁଁ ଜାଣିଛି । କିନୋ କାହିଁକି ଡାକୁଛି, ମୁଁ ଭାବିଲି । କାହାକୁ କିଛି ନକହି ଶୋଇବାକୁ ଚେଷ୍ଟାକଲି, ଆଉ ନିଦ ବି ଆସିଗଲା...

ବରଫ ପରି ଧଳା ପାହାଡ଼ । ପାହାଡ଼ତଳକୁ ଲମ୍ବି ଯାଇଛି ଝରଣା । ସେ ପୁଣି ଗୋଟାଏ ଦିଟା ନୁହେଁ, ଦଶଟା । ଆଉ ଥରେ ଗଣିଲି – 'ଏକ୍, ଦୁଇ, ତିନ୍... ନ, ଦଶ, ଏଗାର,' ହଁ, ଏଗାରଟି ଝରଣା... ସବୁଗୁଡ଼ା ପାତାଳକୁ ଲମ୍ବି ଗଲାଭଳି ଲମ୍ବି ଯାଇଛି । କି ସୁନ୍ଦର ! ଅପୂର୍ବ ଦୃଶ୍ୟଟିଏ ! ଦେହ ହାତ ଅଣ୍ଡା ହୋଇଗଲାଣି । ନୂଆ ଜନ୍ମ ନେଇଥିବା ଛୁଆଟିଏ ପରି ମୁଁ ଅନୁଭବ କରୁଥାଏ । ବାହାର ଦୁନିଆ କଣ ଏତେ ପରିଷ୍କାର, ଏତେ ବଢ଼ିଆ ! ମୁଁ ଘୁସୁରି ଘୁସୁରି ଆଗେଇ ଯାଉଛି, ତା ସହିତ ବୟସ ମୋର ବଢ଼ି ବଢ଼ି ଚାଲିଛି... ହଠାତ୍ ଆଖି ଆଗରେ ପତ୍ର – ଗୋଟେ, ଦୁଇଟା, ତିନିଟା... କଅଁଳିଆ, ସବୁଜ ପତ୍ର – ହାତ ମାରିଲି, ଏଯାଡ଼େ ସେଯାଡ଼େ ଅନେଇଲି... କାଇଁ କୌଣସି ଗଛ ତ ନିକଟରେ ନାହିଁ, ଏ ପତ୍ରସବୁ ଆସିଲା କେଉଁଠୁ ? ପୁଣି ଆଗେଇଲି । ଏ ଭିତରେ ମୁଁ ବଡ଼ ହୋଇଗଲିଣି । ପାଞ୍ଚ ଫୁଟ ଉପରେ ଉଚ୍ଚ ହୋଇଗଲିଣି... ଉପରକୁ ଅନେଇଲି, ତଳକୁ ଚାହିଁଲି – ଶାନ୍ତ ବାତାବରଣ... ଭାରି ଭଲ ଲାଗିଲା – ଏକ ଆନନ୍ଦ, ହୃଦୟର କୌଣସି ଏକ କୋଣରେ ଅନୁଭବ କଲି, ଯେଉଁଟା ଆଗରୁ କେବେ ଅନୁଭବ କରି ନ ଥିଲି । ତଳକୁ ଯିବାକୁ ମନ ହେଲା, ଖସିଯିବାକୁ ଇଚ୍ଛା... କିନ୍ତୁ ଯିବି କେମିତି ? ତଳକୁ ଯିବାକୁ ସିଧା ବାଟ ନାହିଁ ?

ଖସି ଖସି ଯିବାକୁ ପଡ଼ିବ । ତାହାହିଁ କଲି । ବାଃ କି ସୁନ୍ଦର... ଘାସରେ ଖସୁ ଖସୁ ମୁଁ ଝରଣା ଭିତରକୁ ଚାଲିଗଲି । ତାପରେ... ହଠାତ୍ କାହାର ଏକ ସ୍ପର୍ଶ... ଯେ ପୁଣି କିଏ ? ଝିଅଟିଏ... ସାବନା ରଙ୍ଗର, ଆଖି ବଡ଼ ବଡ଼, ବୟସ କୋଡ଼ିଏ, ବାଇସି ହେବ – ସୁନ୍ଦର ଦେଖିବାକୁ । ସେ ମୁରୁକି ହସି ମୋ ହାତକୁ ଧରି ନେଇଛି ।

ମୁଁ ତାକୁ ପଚାରିଲି – 'ତୁମେ କିଏ ? ଏଠି କେମିତି ?'

ସେ ଖାଲି ହସିଲା । ମୋତେ ଆହୁରି ପାଖକୁ ଟାଣିନେଲା । ତା ସ୍ପର୍ଶରେ ମୁଁ ହତବାକ୍ ହୋଇ ନିଜ ଆଡୁ କିଛି ପ୍ରତିରୋଧ ନ କରି ତାର କୁହୁକ ଫାଶରେ ଆବଦ୍ଧ ହେଲାପରି ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରି ପକେଇଲି । ଆଃ, ସେ କି ଅନୁଭବ । ଲାଗିଲା, ମୁଁ ସ୍ୱର୍ଗରେ କୌଣସି ଜଣେ ଅପ୍ସରା ସହ !

କିନ୍ତୁ ସେ'ତ ଅପ୍ସରା ପରି ଦେଖିବାକୁ ନୁହେଁ । ସୁନ୍ଦର ନିଶ୍ଚୟ, ଏପରିକି 'ଖୁବ୍ ସୁନ୍ଦର' କୁହାଯାଇ ପାରିବ, କିନ୍ତୁ ଏଇ ମାଟିର, ଏଇ ପୃଥିବୀର ପରି ମନେ ହୁଏ... ତେବେ ସେ କଥା କହୁନି କାହିଁକି ?

ଆମେ ଦୁହେଁ ଝରଣା ତଳକୁ ଖସି ଚାଲିଛୁ – ତଳକୁ, ଆହୁରି ତଳକୁ । ଆମ ଅବସ୍ଥା ଆଡାମ୍ ଓ ଇଭ୍‌ର – ବାରଣ କରାଯାଇଥିବା ଫଳଟି ଖାଇସାରିବା ପରର ଅବସ୍ଥା... ଆମ ଶରୀରରେ ସୂତା ଖଣ୍ଡେ ବି ନାହିଁ... ମନରେ ନାହିଁ ଭୟ ବା ପାପର ତିଳେ ମାତ୍ର ସଂକେତ... ଆମେ ଦୁହେଁ ପାଣିରେ ଖସି ଚାଲିଛୁ – ଆକାଶରୁ ପୃଥିବୀକୁ ଖସିଲା ପରି...

'ବାବୁ, ଚା...'

ଜାଣି ପାରୁନି ମୁଁ କେଉଁଠି, ଉଠିପାରୁନି ସିମେଣ୍ଟ ବିଛଣାରୁ... ଚିହ୍ନି ପାରୁନି କିନୋକୁ... ଧରିପାରୁନି ଚା' କପ୍‌ଟିକୁ । ପ୍ରକୃତିସ୍ଥ ହେବାକୁ ସମୟ ଲାଗିଲା, ଅନେକ ସମୟ । ତା ପରେ ଚା' ପିଇବାକୁ ଇଚ୍ଛା ହେଲା । କିନୋ ସେମିତି ତଳକୁ ମୁହଁକରି ମୋ ଗୋଡ଼ ପାଖରେ ଛିଡ଼ା ହୋଇଛି ।

ସେ ଆଜି ଖରାବେଳେ ଆସିବ । ଖାଇ ସାରିଲାପରେ ମୋତେ କୋଉଠିକି ନେଇଯିବ ମନେ ପକେଇ ଦେଇ ପଳେଇଲା । ମୁଁ ଥଣ୍ଡା ଚା'କୁ ଆହୁରି ଥଣ୍ଡା କରି ଆସ୍ତେ ଆସ୍ତେ ପିଇଲାବେଳେ ଦେଖୁଥିଲି ଆଖି ଆଗରେ ପଥର କାନ୍ଥ, ପଥର ଘର, ପଥରରେ ଗଢ଼ା ମଣିଷ, ପଥର ଭିତରେ ଝରଣା, ହତାଶା ଭିତରେ ହସ, ଉପରେ ଆକାଶ ସରିଯିବା ପରେ ଆହୁରି ଏକ ଆକାଶ, ତଳେ ସବୁ ରାସ୍ତା ସରିଯିବା ପରେ ପୁଣି ଏକ ରାସ୍ତା...

## ୨୦

ଜେଲ୍ ଭିତରେ ଶୀତଦିନିଆ ଖରା । କିନୋ ଓ ମୁଁ ଚାଲିଛୁ । ହଠାତ୍ ଦେଖା ହୋଇଗଲେ ଭୂୟାଁ ବାବୁ, ଆସିଷ୍ଟାଣ୍ଟ୍ ଜେଲର୍ । ମୋତେ ଦେଖି ଟିକେ ମୁରୁକି ହସି କହିଲେ –

'ଏଆଡ଼େ କୁଆଡ଼େ ?'

ମୁଁ କହିଲି – 'ଏମିତି ଖାଇସାରି ଟିକେ ଚାଲିଛି କିନୋ ସାଙ୍ଗରେ ।'

'ବେଶୀ ଦୂରକୁ ଯିବେନି । ହଁ ଲେଡିଜ୍ ସେଲ୍ ଆଡ଼କୁ କେବେ ଯିବେନି ।'

ତାପରେ ଭୂୟାଁ ବାବୁ ଚାଲିଗଲେ । କିନୋକୁ ହସିବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ପ୍ରଥମଥର ତାକୁ ହସିବା ଦେଖିଲି ।

'କିରେ ହସୁଛୁ କାହିଁକି ?'

ସେ କିଛି ନକହି ମୋ ହାତକୁ ଧରି ଆଗକୁ ଟାଣିନେଲା । ଗୋଟେ ବରଗଛ । ତା ଛାଇ ଲମ୍ବି ଯାଇଛି ବେଶ୍ ଚାରିଆଡ଼େ – ପାର୍କ୍‌ପରି ଲାଗିଲା । ଗଛ କେତୋଟି ପାଖରେ... ପାଣି ଦେଉଛି ଝିଅଟିଏ ।

ଝିଅଟିର ରଙ୍ଗ ସାବନା... ସୁନ୍ଦର ଦେଖିବାକୁ, ବୟସ କୋଡ଼ିଏ, ବାଇଶି ହେବ... ଆଖି ବଡ଼ ବଡ଼... ଓଠ ଶୁଖିଲା... ମୁହଁରେ ଏକ ସହଜ ହସ ଝୁଲୁଛି...

ମୁଁ ପଚାରିଲି – 'କଣ କରି ଏଠିକି ଆସିଛ ?'

'ବହୁତ କିଛି...' ଝିଅଟି କହିଲା ।

'ତୁମକୁ କେଉଁଠି ଦେଖିଲା ପରି ମନେ ହେଉଛି ?'

'ମୁଁ କିନ୍ତୁ ତୁମକୁ ପ୍ରଥମ ଥର ଆଜି ଦେଖୁଛି... '

କଥାବାର୍ତ୍ତାର ଢ଼ଙ୍ଗରେ ତାର ଆଭିଜାତ୍ୟ ଥିଲା – ପଢ଼ାପଢ଼ି କରିଛି ନିଶ୍ଚୟ, ଆଉ ଭଲ ପରିବାରରୁ ଆସିଥିଲା ପରି ମନେ ହେଲା । କିନ୍ତୁ, ଜେଲ୍‌ରେ କାହିଁକି ?

''ଆଚ୍ଛା, 'ବହୁତ କିଛି' ରୁ ଅଳ୍ପ କିଛି ଆଜି ହୋଇଯାଉ ?'' – ମୁଁ କହିଲି ।

'ନା, ଆଉ କେବେ । ଆଜି ମୁଡ୍ ନାହିଁ ନିଜ ବିଷୟରେ ଗପିବା ପାଇଁ'

(ଆଉ କେବେ ?... ମୋତେ ହଠାତ୍ ଡର ଲାଗିଲା, ମୋର କଣ ଆର୍.ଆଇ. ବା ରିଗରସ୍ ଇମ୍‌ପ୍ରିଜନ୍‌ମେଣ୍ଟ ହୋଇଯିବ କି ? ଦଶ, ବାରବର୍ଷ ପାଇଁ ? ମୁଁ କ'ଣ ରହିଯିବି

ଏହି ଜେଲ୍‌ରେ ଝିଅଟିର ଜୀବନୀ ଶୁଣିବା ପାଇଁ ? ଏଭଳି ଗୋଟେ ସମ୍ଭାବନା ମୋତେ ଅସ୍ଥିର କରି ପକେଇଲା... ମୁଁ ଗମ୍ଭୀର ହୋଇଗଲି ।)

'ହଠାତ୍ ତମ ମୁହଁର ରଙ୍ଗ କ'ଣ ବଦଳିଗଲା ? କ'ଣ ହେଲାକି ? ମୁଁ ତୁମକୁ ଅପ୍‌ସେଟ୍ କରିଦେଲି ବୋଧେ ? ସରି...'

କ'ଣ ହେଲା କେଜାଣି, ହାତଧରି ଝିଅଟିକୁ ମୋ ଛାତି ଉପରକୁ ଟାଣି ଆଣିଲି... ସେ ଆଶ୍ଚର୍ଯ୍ୟ ହୋଇ ଅନେଇଛି... ମୁଁ ବି ଆଶ୍ଚର୍ଯ୍ୟ – ନିଜେ କ'ଣ କରୁଛି ଦେଖି ।

ପଚାରିଲି – 'ତମ ଓଠ ଏତେ ଶୁଖିଲା କାହିଁକି ?'

'କାଇଁ, ଓଦା କରିଦେବାକୁ ଇଚ୍ଛା ହେଉଛି ?'

ଆଗରେ କିନୋ ଦେଖାଯାଉନି । ଗଛ ଛାଇତଳେ ଆମେ ଦୁହେଁ... ଆମ ଦୁହିଙ୍କ ଅସ୍ଥିର ହାତ ଦୁହିଙ୍କ ଶରୀରର ବିଭିନ୍ନ ଅଂଶକୁ ଅନୁଭବ କରିବାରେ ଲାଗିଛନ୍ତି... ଦୁହିଙ୍କ ଆଖି ଅଧା ବନ୍ଦ... ମୋତେ ଲାଗୁଛି ଆଜି ମୋ ଜୀବନର ଶେଷଦିନ, ଆଉ ଏହି ମୁହୂର୍ତ୍ତ ଜୀବନର ଶେଷ ମୁହୂର୍ତ୍ତ ।

'ବାବୁ ଯିବାବେଳ ହୋଇଗଲାଣି...' ପରିଚିତ କଣ୍ଠସ୍ୱର – କିନୋର । ଏକ ସଦ୍ୟ-ପରିଚିତ ପୃଥିବୀରୁ ଆମେ ଦୁହେଁ ଫେରି ଆସିଲୁ ପରିଚିତ ପଥରକାନ୍ଥ ଭିତରେ ଥିବା କ୍ଲାନ୍ତ ଅପରାହ୍ନକୁ – ଶରୀରରେ ଜ୍ୱାଳା, ହୃଦୟରେ ଆଲୋଡ଼ନ, ଆଉ ମନରେ ଏକ ବିଚିତ୍ର ଭାବନା !

ଫେରିଆସି ଖବରକାଗଜ ଖଣ୍ଡେ ସିହ୍ନା ହାତରେ ଦେଖି ଭାରି ଖୁସି ଲାଗିଲା । ମୋତେ ଦେଖୁ ଦେଖୁ ବାକି ସବୁ ପାଟିକଲେ – 'ଗଲା, ବେଲ୍ ମିଳିଲାନି... ଆମକୁ ଏଥର ଏଇଠି ବାକି ଜୀବନଟା କଟେଇବାକୁ ପଡ଼ିବ – ଯାହା ଜଣା ପଡୁଛି ।'

ମୁଣ୍ଡ ଉପରେ ଅନର୍ସ ପରୀକ୍ଷା । ପୁଣି ଦୁଇଟାଯାକ ପାର୍ଟ୍ ଏକାବେଳକେ ଦେବାକୁ ପଡ଼ିବ । ବଡ଼ ଅସୁବିଧା କଥା । କ'ଣ କରିବି ? ରାଜନୈତିକ ହସ୍ତକ୍ଷେପ ପରେ କେଶ୍‌ଗୁଡ଼ା ଉଠାଇ ନିଆଗଲେ ବି ମୋର ବର୍ଷେ ନଷ୍ଟ ହେଲା ଭଳି ଲାଗୁଛି । ଆହୁରି ବର୍ଷେ... ? ପୁଣି ଚିନ୍ତା... ନିଜ ଭିତରେ ବିପରୀତମୁଖୀ ଦୁଇଟି ବିଚାର ମୋତେ ବିବ୍ରତ କଲା – ଗୋଟିଏ ହେଲା ନିଜର ଭବିଷ୍ୟତ, ଆଉ ଗୋଟିଏ ହେଲା ଯେଉଁ ଆଦର୍ଶ ନେଇ ମୁଁ ଆନ୍ଦୋଳନକୁ ଡେଇଁ ପଡ଼ିଛି, ତା'ର ଭବିଷ୍ୟତ ।

ଚିଠି ଚାରି ପାଞ୍ଚଟି ମୋ ହାତକୁ ବଢ଼େଇଦେଲା କିନୋ – କଟକରୁ, ଭୁବନେଶ୍ୱରରୁ, ରାଉରକେଲାରୁ, ବରହମ୍ପୁରରୁ ଆସିଛି – 'ପ୍ରଜାତନ୍ତ୍ର' ଓ 'ସମାଜ'ରେ

ଆମ କଥା ବାହାରିଛି... ବରହମ୍ପୁରରେ ଓ କଟକରେ ଆମକୁ ଶୀଘ୍ର ଖଲାସ କରିବା ପାଇଁ ସଭା ହୋଇଛି । ଅନେକ ତୁଙ୍ଗ ରାଜନେତା ବିବୃତିମାନ ଦେଇଛନ୍ତି । 'ପ୍ରଜାତନ୍ତ୍ର' ପକ୍ଷରୁ ଡଃ ମହତାବ, ଜାନକୀ ବାବୁ, 'ସମାଜ' ପକ୍ଷରୁ ନିଜେ ସମ୍ପାଦକ ରାଧାନାଥ ବାବୁ ଆମକୁ ଚିଠି ଦେଇଛନ୍ତି, ସମ୍ପର୍କ ସ୍ଥାପନ କରିଛନ୍ତି... ହାଇକୋର୍ଟ୍‌ର ବିଶିଷ୍ଟ ଆଇନଜ୍ଞ ଆଡ୍‌ଭୋକେଟ୍ ଅଶୋକ ଦାଶ ଆମ ବେଲ୍ ପିଟିସନ୍ ପେଶ୍ କରିବେ ବୋଲି ଖବର ଆସିଛି । କଲିକତାର ଡ଼ି.ଏସ୍.ଓ. ଆମ ସପକ୍ଷରେ ବିବୃତି ଦେଇଛି । ଏତେସବୁ ଘଟଣା ଏ ଭିତରେ ଘଟିଯାଇଛି ଭାବି ଖୁସି ଲାଗିଲା ।

ତା ହେଲେ ନିକଟରେ ଆମେ ଖଲାସ ହୋଇଯିବୁ । ସବୁକଥା କିନୋ ଶୁଣିଲା । ସକାଳେ ଚା' ଆଣିଲାବେଳେ କଇଁ କଇଁ କାନ୍ଦି ପକେଇଲା ।

କହିଲା – 'ବାବୁ, ତମେ ତା ହେଲେ ସତରେ ଚାଲିଯିବ ? ମୋତେ ଛାଡ଼ିଦେଇ ? ରୀତାଅପାକୁ ଛାଡ଼ିଦେଇ... ?'

'ରୀତା ଅପା ?' – ମୋ ମୁହଁରୁ ବାହାରି ପଡ଼ିଲା । ରୀତା ତା ହେଲେ ସେଇ ଝିଅର ନାଁ, ଯାହାର ଜୀବନରେ 'ବହୁତ କିଛି' ଘଟିଯାଇଛି !

ମୋ ଶରୀରରେ ବେପଥୁ, ହୃଦୟରେ ତରଙ୍ଗ ଜମାଟ ବାନ୍ଧି ମୋତେ ଯେମିତି ଆଉ ଗୋଟିଏ ମଣିଷ କରିଦେଲାଣି । ମୁଁ ରୀତାକୁ ଦେଖିବା ପାଇଁ ଚାଲିଲି । ଏଥର କିନୋକୁ ଛାଡ଼ି – ଏକା ।

ରାସ୍ତାରେ କିଏ କିଏ ସବୁ ଦେଖାହେଲେ । କେତେଜଣ ନମସ୍କାର କଲେ । ମୁଁ ରୀତାକୁ ଦେଖିଲିନି କୋଉଠି । ଭାବିଲି, ଆଜିତ ହେଲାନି, କାଲି କିନୋ ହାତରେ ଖବର ପଠାଇ ଆସିବି...

'ଇଆଡ଼େ କେମିତି ମାଡ଼ି ଆସିଲ ?' ସଦ୍ୟ ପରିଚିତ କଣ୍ଠସ୍ୱର – ରୀତାର ।

'ନାଇଁ, ଇଚ୍ଛାହେଲା ଏମିତି...'

'ଓ ତା ହେଲେ ଯାହା ଇଚ୍ଛା ହୁଏ, ତମେ ତାହା କର ?'

'ଠିକ୍ ତା ନୁହେଁ' ମୁଁ ଉତ୍ତର ଦେଲି । 'ଅନେକ କଥା କରେ ନିଜ ଇଚ୍ଛା ବିରୁଦ୍ଧରେ...'

'ଯଥା ?'

'ଯଥା – ଏଇ ଜେଲ୍‌ରୁ ଚାଲିଯିବାକୁ ହେବ ଆମ ଜାମିନ ହାଇକୋର୍ଟରେ ମଞ୍ଜୁର ହୋଇଗଲେ...'

'ମାନେ, ତମେ ଯିବାକୁ ଚାହୁଁନ ? ଏଇଠି ଘରସଂସାର କରିବାର ପ୍ରୋଗ୍ରାମ୍ ଅଛି ନା କ'ଣ ?'

'ହଁ, ଯଦି ତମଭଳି ପାର୍ଟନରଟିଏ ମିଳେ, ମନ୍ଦ କ'ଣ ?'

'ତମେ ଜାଣ, କ'ଣ କହିଯାଉଛ ?' କହି ରୀତା ମୋ ପାଖକୁ ଚାଲି ଆସିଲା ।

'ହଁ, ଭଲକରି...'

'ତମେ ଜାଣ ମୁଁ ଦୁଇ ଦୁଇଟି ମର୍ଡର୍ କରିଛି ?'

'କ'ଣ ହେଲା ସେଥିଁ ? କାରଣ ସେମିତି ଥିବ ।'

'ମୋ ଉପରେ ଏତେ ବିଶ୍ୱାସ ? ପୁଣି ଦିନ କେଇଟା ଭିତରେ ?'

'ଦେଖ ରୀତା, ଜଣକୁ ଚିହ୍ନିବା ପାଇଁ, ଭଲ ପାଇବା ପାଇଁ ବର୍ଷ ବର୍ଷ ସମୟ ଲାଗେନା । ଥରେ, ଦୁଇଥର ସାକ୍ଷାତରେ ଜଣେ ଆଉ ଜଣକୁ ଆପଣାର କରିପାରେ, ଭଲ ପାଇପାରେ । ଅପର ପକ୍ଷରେ – ତିରିଶ, ଚାଳିଶ ବର୍ଷ ଘରସଂସାର କରି ମଧ୍ୟ ସ୍ୱାମୀ ସ୍ତ୍ରୀକୁ, ବାପା ପୁଅକୁ ଆପଣାର କରିପାରେନା, ଭଲ ପାଇ ପାରେନା ।'

ରୀତା ହସିଲା । କହିଲା 'ସତରେ ତୁମେ ଚାଲିଯାଉଛ ?'

ମୁଁ କହିଲି – 'ଏତେ ଶୀଘ୍ର ନୁହେଁ, ତେବେ ଯଥେଷ୍ଟ ସମ୍ଭାବନା ଅଛି, ମାସକ ଭିତରେ...'

ପର ପର ସାତଟି ସନ୍ଧ୍ୟା କଟିଛି ରୀତାସହ । ଝିଅଟି ଏକଦା ରେଡିଓ ଆର୍ଟିଷ୍ଟ ଥିଲା – ଭଲ ଗୀତ ଗାଉଥିଲା, କଲେଜରେ ହକି କ୍ୟାପ୍ଟେନ୍, ନାଟକରେ ସୁନ୍ଦର ଅଭିନୟ କରୁଥିଲା । ଓଡ଼ିଶା ବାହାରେ ଅନେକବାର ପୁରସ୍କୃତ ହୋଇଛି । ରୀତାର ଘନିଷ୍ଠ ସାଙ୍ଗ ଥିଲା ଲିପି । ଦୁହେଁ ପାଖାପାଖି ରହୁଥିଲେ ଶହୀଦ୍ ନଗରରେ । ଲିପିର ବାପା ଡାକ୍ତର । ମା ମରି ଯାଇଥିଲେ ଅନେକ ଆଗରୁ । ଦିନେ ଦିନେ ରୀତା ଲିପି ଘରେ ରହିଯାଏ, ଘରକୁ ଫେରେନା । ଘରେ ମା' ଓ ସାନଭାଇ । ବାପା ରେଳବାଇ ବିଭାଗରେ – ଅଧାମାସ ଗାଡ଼ିରେ କଟିଯାଏ । ଦିନେ ରୀତା ଲିପିଘରେ ରାତିରେ ରହିଗଲା । ଆଉ ସେଇ ରାତିରେ ଏକ ଦୁର୍ଯୋଗ ରୀତାର ଜୀବନକୁ ଏକ ନୂଆ ମୋଡ଼ ଦେଲା ।

ଲିପିର ବାପା ଧର୍ଷଣ ଅପରାଧରେ ଗିରଫ ହେବା ପୂର୍ବରୁ ରୀତା ତାଙ୍କୁ ତାଙ୍କରି ପିସ୍ତଲ୍‌ରେ ମାରି ଦେଇଥିଲା । ତା'ପରେ ସିଧା ଥାନାକୁ ଯାଇ ଆତ୍ମ ସମର୍ପଣ କରିଥିଲା । ହାଜତ୍‌ରୁ ରାତିରେ ବାହାର କରି ଥାନା ଅଫିସର ରୀତାକୁ ପୁଣି ଧର୍ଷଣ କରିଥିଲେ ଓ ରୀତା ପୁଣି ଥାନା ଅଫିସର୍‌ଙ୍କ ପିସ୍ତଲ୍‌ରେ ତାଙ୍କୁ ମାରି ଦେଇଥିଲା ।

ଆଶ୍ଚର୍ଯ୍ୟ ହୋଇ ମୁଁ ଦେଖି ଚାଲିଥାଏ ରୀତାକୁ – କେତେ ସହଜରେ ସେ କହିଗଲା ବିଭତ୍ସ କାଣ୍ଡ ଦୁଇଟି ବିଷୟରେ ! କଣ୍ଠରେ ତାର ଦୁଃଖ ବା ଅନୁଶୋଚନାର କୌଣସି ସ୍ୱର ନାହିଁ । ମନେ ମନେ ମୁଁ ରୀତାର ଆହୁରି ନିକଟକୁ ଟାଣିହୋଇଗଲି ।

'ଜାଣିଛ, ମୁଁ ଭାବିଥିଲି, ମୋତେ ଫାଶୀ ହୋଇଯିବ ବୋଲି । ବିନା ପଇସାରେ ଦୁଇଜଣ ଓକିଲ ମୋ ପାଇଁ ଲାଗିଥିଲେ । ସେ 'ଲ', 'ଫ'– ମୁଁ କିଛି ଜାଣିନି, ମୋର 'ଲାଇଫର୍'ଟେ ହୋଇଯାଇଛି, ମାନେ ପୁରା ଲାଇଫ୍ ଟର୍ମ୍, 'ଆଜୀବନ'... । ଶୁଣୁଛି ଚାରି ପାଞ୍ଚବର୍ଷ ଆଗରୁ ମୋତେ ଛାଡ଼ିଦେବେ'

'ଏବେ କୁହ – ମୋତେ ଗ୍ରହଣ କରିବ ? ମୋ ଭଳି ଝିଅଟିକୁ ବାହାହୋଇ ସମାଜରେ ତିଷ୍ଠିପାରିବ ?'

ମୁଁ ନିର୍ବାକ । ଅନେକ କିଛି କହିବାକୁ ଯାଇ କିଛି କହି ପାରିଲିନି । ଆକାଶରେ ଧଳାମେଘ ଖଣ୍ଡ... ଗୋଟିଏ କୋଣରେ କଳା ମଚ୍ ମଚ୍ ପାହାଡ଼ଟେ... ପାହାଡ଼ ଉପରେ ଛୋଟ ଘରଟିଏ ପରି ଦିଶୁଛି...

ଜହ୍ନ କୁଆଡୁ ଆସି ଛାଇ ଓ ଆଲୁଅ କରି ବରଗଛଟାକୁ ଦି ଭାଗ କରି ସାରିଲାଣି । ଜହ୍ନ ଆଲୁଅରେ ମୁଁ, ଗଛ ଛାଇରେ ରୀତା – ପାହାଡ଼ ଆଉ ଦିଶୁନି । ଦିଶୁଛି ଖାଲି ସେହି ଘରଟି, ଲାଗୁଛି ଯେମିତି ଘରଟି ଦୂରେଇ ଦୂରେଇ ଯାଉଛି...

## ୨୧

ଯାହା ଭଲ ଲାଗେ ତାହା ବେଶୀ ଦିନ ରହେନା । ବେଶୀ ଦିନ ରହେନା, ସେଇଥିପାଇଁ ବୋଧେ ଭଲ ଲାଗେ । ଶେଷରେ ମୁଁ ପରିଚିତ ସହରକୁ ଫେରି ଆସିଛି, ଫେରି ଆସିଛି ପରିଚିତ ଜୀବନକୁ । ପୁରୁଣା ଅନୁଭବ ଓ ଆଦର୍ଶ ମୋତେ ଆଉ ବିଚଳିତ କରୁନାହିଁ । ଆଗେଇଯିବାର ଇଚ୍ଛା ଓ ଉତ୍ତେଜନା, ଆଗେଇଯିବାର ଆନନ୍ଦଠୁଁ ବେଶୀ – ମୁଁ ଅନୁଭବ କରୁଛି ।

ହଁ, ଜୀବନ ଯେ ଏକ ହାର-ଜିତ୍ ଖେଳ, ଏହା ମୁଁ ବୁଝି ସାରିଲିଣି । କେତେବେଳେ ମୁଁ ଜିତୁଛି, କେତେବେଳେ ହାରୁଛି – ଠିକ୍ କହିପାରିବିନି । ଆଉ ସେହି ହାରିବା ବା ଜିତିବା ପାଇଁ କେବଳ ମୁଁ ଯେ ଦାୟୀ – ତାହା ପୁରାପୁରି ସତ ନୁହେଁ । ଯେତିକିଟା ମୁଁ ମୋ ରାସ୍ତା ବାଛିଛି, ଦୁଇତିନିଟା ପ୍ରଶ୍ନରୁ ପରୀକ୍ଷାରେ ଗୋଟିଏ ଉତ୍ତର ଲେଖିଲା ଭଳି, ଜୀବନରେ ଖୋଲା ହୋଇଥିବା, ପରିଷ୍କାର ଦିଶୁଥିବା ରାସ୍ତାକୁ ଛାଡ଼ି – ଅଧାଖୋଲାଥିବା, ପରିଷ୍କାର

ଦିଶୁ ନଥିବା ରାସ୍ତାଟିଏ ଯେତେବେଳେ ନିଜେ ବାଛି ନେଇଛି, ମୁଁ ହିଁ ଦାୟୀ । ଦାୟୀ ଏଇଥି ପାଇଁ ଯେ ବାଛିଛି ମୁଁ, ନିଜେ – କାହାରି ଅନୁରୋଧ ବା ପ୍ରରୋଚନାରେ ନୁହେଁ । ତାପରେ ପୁଣି ବାଛିଛି, ସବୁବେଳେ ନୂଆ, ଅଙ୍କାବଙ୍କା – ଅନ୍ୟମାନେ ଛାଡ଼ି ଆସିଥିବା ବା ଦେଖି ନଥିବା ରାସ୍ତାଟିକୁ... କାରଣ, ଆରମ୍ଭରୁ ହିଁ ମୁଁ ଠିକ୍ କରି ନେଇଛି, ଅନ୍ୟମାନଙ୍କ ପରି ପରିଷ୍କାର ଓ ସୁବିଧା ରାସ୍ତାରେ ଯିବି ନାହିଁ, ଜୀବନକୁ ବିଭିନ୍ନ ସ୍ତରରେ, ବିଭିନ୍ନ ସମୟରେ, ବିଭିନ୍ନ କୋଣରୁ ଦେଖିବି, ବୁଝିବି ଓ ବଞ୍ଚିବି । ଆନନ୍ଦରେ କେବେ ପାଗଳ ହେବିନି, ବା ଦୁଃଖରେ ଭାଙ୍ଗି ପଡ଼ିବିନି ।

ଏ ଭିତରେ ବି.ଏ. ପରୀକ୍ଷାଫଳ ବାହାରିଯାଇଛି । ଯା'ହେଉ, ମୁଁ ପାଶ୍ କରିଯାଇଛି । ଅନର୍ସ କଟିଯିବ – ଭୟଥିଲା, କଟିନି – ବରଂ ଭଲ ହୋଇଛି – ୟୁନିଭର୍ସିଟିରେ ତୃତୀୟ ସ୍ଥାନ ।

ଏବେ କ'ଣ ହେବ ? ଏମ୍.ଏ. ପଢ଼ିବାର ଇଚ୍ଛା, କିନ୍ତୁ ଓଡ଼ିଶାରେ ନୁହେଁ । ତେବେ କେଉଁଠି ? ଏଲାହାବାଦ୍, ଦିଲ୍ଲୀ ? ମୋତେ ତ ପୁଣି ମଝିରେ ମଝିରେ ଓଡ଼ିଶା ଆସିବାକୁ ପଡ଼ିବ । କେଶ୍‌ଗୁଡ଼ା ଚାଲିଛି । ସରକାର ଉଠେଇଲେଣି କେଉଁଠି ? ଯାହା ଜଣାପଡୁଛି – ବର୍ଷେ, ଦିବର୍ଷ ଲାଗିଯିବ... ବେଶୀ ବିଁ ଲାଗିପାରେ ।

ଷ୍ଟେସନରେ ସେଦିନ ଭୀଷଣ ଭିଡ଼ । ଦୁଇଶ' ଉପରେ କଲେଜପିଲା – ଛାଡ଼ିବାକୁ ଆସିଛନ୍ତି ମୋତେ । ସେଥିରୁ ଅଧେ ସବୁଦିନ ସନ୍ଧ୍ୟାରେ ଷ୍ଟେସନ୍‌କୁ ଆସନ୍ତି । ସେମାନଙ୍କ ଭିତରୁ କିଛି ପ୍ଲାଟଫର୍ମର ବିଭିନ୍ନ ବେଞ୍ଚରେ ବସନ୍ତି ଓ ଗୋଟେ ପରେ ଗୋଟେ ଛାଡୁଥିବା ଗାଡ଼ି କମ୍ପାର୍ଟମେଣ୍ଟ ଭିତରେ ବସିଥିବା କାଳ୍ପନିକ ବନ୍ଧୁମାନଙ୍କୁ ହାତ ହଲାଇ 'ଟା, ଟା' କରନ୍ତି । ଆଜି କିନ୍ତୁ ପ୍ରକୃତରେ ଜଣଙ୍କୁ ବିଦାୟ ଦେବାର କଥା । ଅନେକଙ୍କ ଆଖି ଛଳ ଛଳ । ମୁଁ ଜାଣି ନଥିଲି – ମାତ୍ର ବର୍ଷ ଦୁଇଟାରେ ଏତେ ବନ୍ଧୁ, ଏତେ ସମର୍ଥକ ହୋଇଯିବେ ବୋଲି ।

ତେବେ ଆଶ୍ଚର୍ଯ୍ୟ ଲାଗୁଛି – ମୁଁ କଲେଜ ନିର୍ବାଚନରେ ହାରିଲି କେମିତି ? ନିଜର ଇଚ୍ଛା ନ ଥିଲା, କ୍ଲାସପିଲା, ଏମ୍.ଏ. ଆଉ ଲ' ପିଲା ଲାଗିଗଲେ । ମୋତେ ଛିଡ଼ା ହେବାକୁ ପଡ଼ିଲା । ସିଧା ରାଜନୈତିକ ସମର୍ଥନ ଥାଇ ଦୁଇଜଣ ପ୍ରତିଦ୍ୱନ୍ଦିତା କରିଥିଲେ । ଅତି ଘନିଷ୍ଠ ବନ୍ଧୁ 'ନର୍ସୁଥର' ପୁଣି ମୋ ବିରୁଦ୍ଧରେ ଛିଡ଼ା ହୋଇଥିଲା । ବିଚିତ୍ର ଶୈଳୀରେ ଆମେ ଭୋଟ ପ୍ରଚାର କରୁଥିଲୁ, ଏପରିକି ମୋ' ସମର୍ଥକମାନେ ଆଶ୍ଚର୍ଯ୍ୟ ଓ କିଛିଟା ବିରକ୍ତ ବି ହୋଇଥିଲେ । ମୁଁ ମୋ ନିର୍ବାଚନ ସଭାରେ କହିଲି 'ନର୍ସୁଥର'କୁ ଭୋଟ ଦିଅ, ଇତ୍ୟାଦି । ସେ'ବି ମୋତେ ଭୋଟ ଦେବାକୁ କ୍ଲାସ କ୍ଲାସ ବୁଲି କହିଲା । ଏପରିକି ଗୋଟିଏ ସଭାରେ

ଆମେ ଦୁହେଁ ଅନେକ ଥର ଭାଷଣ ଦେଇଛୁ । ମୁଁ କୌଣସି ରାଜନେତାଙ୍କ ପ୍ରତ୍ୟକ୍ଷ ବା ପରୋକ୍ଷ ସମର୍ଥନ ଲୋଡ଼ିନି । ଛିଡ଼ା ହୋଇଗଲି ସଭାପତି ପଦପାଇଁ – ସାଢ଼େ ତିନିହଜାର ପିଲାଙ୍କ ନେତୃତ୍ୱ ନେବାଲାଗି । କିନ୍ତୁ ଶେଷ ମୁହୂର୍ତ୍ତରେ କ'ଣ ହେଲା କେଜାଣି, ମୁଁ ହାରିଗଲି, 'ନର୍ପ୍ପୁଥର' ଜିତିଗଲା – ଅଳ୍ପ କିଛି ଭୋଟ୍ ବ୍ୟବଧାନରେ । ସେ ଯାହାହେଉ କଲେଜ ଫଙ୍କସନ୍ କିନ୍ତୁ ତା ଅନୁପସ୍ଥିତିରେ ମୁଁ ସମ୍ଭାଳିଲି । ମାସ ମାସ ଧରି ସେ ଗାଏବ୍ ହୋଇଯାଏ, ଜେଲ୍‌ରେ ଥାଏ, କେତେବେଳେ ଗାଁରେ ଥାଏ, କେତେବେଳେ ଭୁବନେଶ୍ୱରରେ, କେତେବେଳେ ଦିଲ୍ଲୀରେ ।

ଗାଡ଼ି ଛାଡ଼ିପାରୁନି । ସବୁ ଡବାରେ ପିଲା । ଏପରିକି ଡ୍ରାଇଭର୍, ଗାର୍ଡ୍‌ରୁମ୍‌ରେ ମଧ୍ୟ । ଗାର୍ଡ୍, ଷ୍ଟେସନ୍‌ମାଷ୍ଟର ଶେଷରେ ଆସି ଅନୁରୋଧ କଲେ – ଗାଡ଼ି ଛାଡ଼ିବା ସମୟ ବହୁତ ବିଳମ୍ବ ହୋଇଗଲାଣି, ପିଲାମାନେ ଗାଡ଼ିରୁ ନ ଓହ୍ଲେଇଲେ ଗାଡ଼ି ଛାଡ଼ିବ କିପରି ? ବାପାଙ୍କ ସହ ପ୍ଲାଟ୍‌ଫର୍ମ୍‌ରେ କିଛି କଥାବାର୍ତ୍ତା ହୋଇ ପାରିଲିନି । କିଛି ଟଙ୍କା ମୋ ହାତକୁ ବଢ଼େଇ ଦେଇ ସେ କହିଲେ – 'କେଉଁଠି ଆଡ଼୍‌ମିସନ୍ ନେଲୁ ଲେଖିବୁ । ଏଲ୍‌ହାବାଦ୍ ଭଲ ହେବ, ସେଇଠି ପଲିଟିକାଲ୍ ସାଇନ୍‌ସ୍ ନେଇ ଏମ୍.ଏ. ପଢ଼ିବୁ ; ଆଉ ପଲିଟିକ୍‌ସ୍ ଫଲିଟିକ୍‌ସ୍‌ରେ ମାତିବୁନି ।'

ବାପାଙ୍କ ଗମ୍ଭୀର ସ୍ୱର ଶୁଣି ପରିସ୍ଥିତିକୁ ସରଳ ଓ ସହଜ କରିବାପାଇଁ କହିଲି – 'ଏଲ୍‌ହାବାଦ୍‌ରେ ଏମ୍.ଏ. (ପଲିଟିକ୍‌ସ୍) ଅଛି, ପଲିଟିକାଲ୍ ସାଇନ୍‌ସ୍ ନାହିଁ...' ସେ ହସି ପକେଇଲେ । ହସିଲେ ବାପା ଭଲ ଦିଶନ୍ତି । ସବୁବେଳେ ମୋତେ ଲାଗେ ବାପା ମୋତେ ବହୁତ କିଛି କହିବାକୁ ଚାହାନ୍ତି, କିନ୍ତୁ କହି ପାରନ୍ତିନି । ମୁଁ କିନ୍ତୁ ସବୁ ବୁଝିଯାଏ... କହେନି କିଛି । ଯାହା କହିଥିଲି କୂଅପାଖରେ ସ୍କୁଲରେ ପଢ଼ିଲାବେଳେ, ବକ୍ତୃତା ପ୍ରତିଯୋଗିତାରେ ପାଞ୍ଚ ମିନିଟ୍ ଭିତରେ ବକ୍ତୃତା ଦେଲାପରି, ଦ୍ୱିତୀୟଥର ବାହା ହୋଇଥିବା ସବୁ ବାପାମାନଙ୍କୁ ପୁଅମାନେ କହିଲାପରି... 'ବାପା, ତୁମେ ନିଜପାଇଁ ଦ୍ୱିତୀୟଥର ବାହା ହୋଇଛ । ମୋ ପାଇଁ ବା ମୋ' ଭଉଣୀ ପାଇଁ ନୁହେଁ । ଆମେ ଛୋଟ ଥିଲୁ, ତେଣୁ ଆମକୁ ଚଳାଇବାପାଇଁ, ବଡ଼ କରିବାପାଇଁ, ତୁମେ ବାହାହେଲ– ଏହି କଥାଟି ମିଛ, ଶତକଡ଼ା ଶହେ ମିଛ । ନିଜପାଇଁ, କେବଳ ନିଜପାଇଁ ।'

ବାପାଙ୍କୁ ନିଶ୍ଚୟ ସେଦିନ ଖରାପ ଲାଗିଥିବ । ସେ ସାଙ୍ଗେ ସାଙ୍ଗେ ଡ୍ରାଇଭରକୁ ଡାକି ଗାଡ଼ିନେଇ କୁଆଡ଼େ ଚାଲିଗଲେ । ମୁଁ ପରେ ଭାବିଲି – କାହିଁକି ଏତେଗୁଡ଼ା କଥା କହିଲି ? କାହିଁକି ବାପାଙ୍କ ମନରେ କଷ୍ଟ ଦେଲି ?

## ୨୨

କଲିକତା ଯାଉଥିବା ମାଡ୍ରାସ୍ ଏକ୍ସ୍‌ପ୍ରେସ୍‌ରେ ଉଠିଲାବେଳକୁ ସେଦିନ ମୋ ହାତରେ କେବଳ ବ୍ୟାଗ୍‌ଟିଏ, ଟର୍କିସ୍ ଟି'ସାର୍ଟ ଓ କର୍ଡ୍‌ରୟ୍‌ର ଫୁଲ୍‌ପ୍ୟାଣ୍ଟ୍ – ସାଙ୍ଗରେ ହ୍ୱିଲର୍ ଦୋକାନରୁ ଆଣିଥାଏ 'ରିଡର୍ସ୍ ଡାଇଜେଷ୍ଟ୍', 'ଇଲଷ୍ଟ୍ରେଟେଡ୍ ଉଇକ୍ଲି' ଓ ବର୍ଟ୍ରାଣ୍ଡ୍ ରସେଲ୍‌ଙ୍କ 'ଅନ୍‌ପପୁଲାର୍ ଏସେଜ୍' । ମୋ ପାଖ ବର୍ଥରେ ବସିଥିବା ବୁଢ଼ାଜଣକ ବହୁତ ସମୟ ଅନେଇଲାପରେ ମୋର ମ୍ୟାଗାଜିନ୍, ବହି-ଗୋଟେ ପରେ ଗୋଟେ ମାଗି ପଢ଼ିଲେ ଓ ପଢ଼ିବା ଭିତରେ ଇଂରାଜୀରେ ପଚାରିଲେ –

'କିଛି ଭାବିବନି, ତୁମେ କ'ଣ ଏମ୍.ଏଲ୍.ଏ. ନା ଟ୍ରେଡ୍ ଇଉନିୟନ୍ ନେତା ? ଦିଶୁଛ ତ କଲେଜ ପିଲାପରି... ଏତେ ଲୋକ ତମକୁ ଛାଡ଼ିବାକୁ ଷ୍ଟେସନ୍ ଆସିଥିଲେ ?'

ଟିକେ ହସି ମୁଁ କହିଲି – 'ସେମାନେ ସବୁ ମୋର ସାଙ୍ଗ, ମିଳିମିଶି ଥିଲୁ ତ, ଏବେ ସେମାନଙ୍କୁ ଛାଡ଼ି ଚାଲିଯାଉଛି, ତେଣୁ...'

ଚିଲିକା ପାଖରେ ପହଞ୍ଚିଲାବେଳକୁ ରାତି ଦଶ ଖଣ୍ଟେ ହୋଇଗଲାଣି । ଦେଖି ପାରୁନଥିବା ପାହାଡ଼କୁ ଦେଖିଲା ପରି ଲାଗିଲା । ଶରତ କଥା ମନେ ପଡ଼ିଲା, ସମୀକ୍ଷା କଥା ମନେ ପଡ଼ିଲା । ଅତୀତର ଅଦ୍ଭୁତ ଆକର୍ଷଣ ମୋତେ ନେଇଗଲା ଚିଲିକା କୂଳକୁ, ଅସ୍ତସୂର୍ଯ୍ୟର ଦିଗ୍‌ବଳୟ ତଳେ ସମୀକ୍ଷା ନିକଟକୁ । କାଲିପରି ଲାଗୁଛି, ଅଥଚ ପାଞ୍ଚ ଛ'ବର୍ଷ ଏ ଭିତରେ ହୋଇଗଲାଣି ।

କିଛି ସ୍ମୃତିକୁ ସମୟର ସୀମା ଭିତରେ ରଖି, କହି ହେବନି – 'ଏଇଟା ଅତୀତ, ଆଉ ଏଇଟା ବର୍ତ୍ତମାନ' । କିଛି ସ୍ମୃତି ସମୟର ସୀମାରେଖା ବାହାରେ । ଭାବି ଚାଲିଲେ, ଖୋଜି ବସିଲେ ଅତୀତର ସ୍ମୃତି – ସେଇ ସନ୍ଧ୍ୟାକେତୋଟିର ରୋମାଞ୍ଚକାରୀ ମୁହୂର୍ତ୍ତ ଆକାଶର କେତେ ରଙ୍ଗ ନେଇ ପୃଥିବୀପୃଷ୍ଠକୁ ଓହ୍ଲାଇ ଆସୁଛି । ସତରେ କାଲିପରି ଲାଗୁଛି – ଅଥଚ, ପାଖରେ ନାହିଁ ଶରତ, ନାହିଁ ସମୀକ୍ଷା ।

ଗାଡ଼ି ବାଲେଶ୍ୱର ପାଖାପାଖି ହୋଇଗଲାଣି । ସମସ୍ତେ ଶୋଇ ପଡ଼ିଲେଣି । ମୁଁ ଝରକା ପାଖରେ ସେମିତି ବସିଛି । ବାହାରେ ଦୀର୍ଘ ଅନ୍ଧକାର – ତା'ରି ଭିତରେ ଅନୁମାନ କରିହେଉଛି କିଛି ଗଛ, କିଛି ଘର... ରେଳଗାଡ଼ିର ଶବ୍ଦକୁ ଖାପ ଖାଇଲାପରି ମୋର ଭାବନା ମାଡ଼ିଚାଲିଛି ପଛକୁ... ଛାଡ଼ିଆସିଥିବା ଦିନଗୁଡ଼ିକୁ... ସମ୍ପର୍କ କଟିଯାଇଥିବା ଚରିତ୍ରମାନଙ୍କୁ ।

ପଛକଥା ଭାବିବା ଏତେ ସହଜ କାହିଁକି ମୁଁ ବୁଝିପାରେନା । ଘଟି ସାରିଲାଣି ବୋଲି ବୋଧେ ଭାବିବା ସହଜ । କିନ୍ତୁ ଏତେ କଥା, ଏତେ ଘଟଣା, ଏତେ ଲୋକ – ଦେଖି ହେଉଛି, ଭାବି ହେଉଛି, ପ୍ରକୃତରେ ବୁଝି ହେଉନି ସବୁ । କାହିଁକି ? କେତେକ ଘଟଣାକୁ ବୁଝିଲାବେଳେ ଘଟଣା ସହିତ ସଂପୃକ୍ତ ଚରିତ୍ରମାନେ ବାଧା ଦିଅନ୍ତି ଯେମିତି ଚରିତ୍ରଙ୍କୁ ବୁଝିଲାବେଳେ କେତେକ ଘଟଣା ବାଧା ସୃଷ୍ଟି କରନ୍ତି । କିନ୍ତୁ ଫୁଟବଲ୍ ଓ ବିରିୟାନି ଘଟଣାରୁ ଅବଦୁଲ୍‌କୁ ବାଦ୍ ଦେଲେ ରହିବ କ'ଣ ? ଯେ କୌଣସି ସ୍କୁଲ ପଡ଼ିଆରେ ଖେଳା ହେଉଥିବା ଫୁଟବଲ୍ ଓ ଯେ କୌଣସି ଘରେ ତିଆରି ହୋଇ ବଳୁଥିବା ବିରିୟାନି । ଏ ଦୁଇଟି ଘଟଣାରେ ସଫଳ ସମ୍ପର୍କ ସୃଷ୍ଟି କରିଥିଲା ଅବଦୁଲ୍, ଅଥଚ ସେ ସମ୍ପର୍କ ଆଜି କାହିଁ ? ମେକାନିକ୍ ଅବଦୁଲ୍‌ର ଜୀବନ ଭିନ୍ନ ସ୍ୱାଦ, ଭିନ୍ନ ଅନୁଭୂତିର ଜୀବନ ହୋଇଯାଇଛି – ତାକୁ ବୁଝିବାକୁ ଭିନ୍ନ ଘଟଣା, ଭିନ୍ନ ପରିସ୍ଥିତିରେ ବଢ଼ି ଆସିଥିବା ଅବଦୁଲ୍‌କୁ ବୁଝିବା ଦରକାର । ସବୁବେଳେ ତରବରରେ ଆଗେଇ ଯାଉଥିବା ସେ ଦିନର ଅବ୍‌ଦୁଲ ଓ ଆଜିର ହାତେ ମାପି ଚାଖଣ୍ଡେ ଚାଲୁଥିବା ମେକାନିକ୍ ଅବଦୁଲ୍ ଭିତରେ କେତେ ପାର୍ଥକ୍ୟ ! ପରିସ୍ଥିତି ମଣିଷକୁ ବଦଳାଏ, ପୁରୁଣା ସମ୍ପର୍କ ଭାଙ୍ଗି ନୂଆ ସମ୍ପର୍କ ଗଢ଼େ । କିନ୍ତୁ ଜଣଙ୍କର ବଞ୍ଚିବାର ପ୍ରଣାଳୀ ଓ ଉଦ୍ଦେଶ୍ୟ ବୋଧହୁଏ ସେମିତି ରହିଥାଏ । ବେଶୀ କିଛି ବଦଳେନା – ନିହାତି ଗୋଟାଏ ବଡ଼ ଧରଣର ବିପଦ ବା ସମସ୍ୟା ଦେଖା ନ ଦେବାଯାଏ । ବଞ୍ଚି ରହିବାର ମୋହ ସହିତ କିଛି ଗୋଟାଏ ଆଦର୍ଶର ମୋହ, ନୂଆ କିଛି ଅନୁଭୂତି ସଂଗ୍ରହ କରିବାର ମୋହ, ଅପ୍ରତ୍ୟାଶିତକୁ ଗ୍ରହଣ କରିବାର ମୋହ – ଜୀବନକୁ ନୂଆ ଅର୍ଥ ଦିଏ ।

ମନ ଭିତରେ କେତେ ଫାଙ୍କ ରହିଯାଇଛି, କେତେ ଆଶା, କେତେ ଦୁଃଖ ! ଅକ୍ଷରେ ଅକ୍ଷରେ, ସ୍ୱାଭାବିକ ଓ ଅସ୍ୱାଭାବିକ ପରିସ୍ଥିତିରେ ମୁଁ ସେଗୁଡ଼ା ଅନୁଭବ କରିଛି । ଆଘାତକୁ ଆଘାତ କହିନି, ଅଭାବକୁ ପୁରୁଣା ଛକରେ ଛାଡ଼ି ସରୁଗଳି ଦେଇ ନଈ ରାସ୍ତାକୁ ଚାଲିଆସିଛି, ସମୁଦ୍ରକୂଳକୁ ଚାଲିଆସିଛି... ନ ପାଇବାର ଅନୁଭବକୁ, ହଜେଇ ଦେବାର ସ୍ମୃତିକୁ ପଛରେ ପକେଇ ଖାଲି ମାଡ଼ିଚାଲିଛି ଆଗକୁ । ଗୋଟିଏ ଜାଗାପରେ ଆଉ ଗୋଟିଏ ଜାଗା, ଗୋଟିଏ କଲେଜ ପରେ ଆଉ ଗୋଟିଏ କଲେଜ, ପୁରୁଣାରୁ ନୂଆ ପରିବେଶ, ନୂଆ ସାଙ୍ଗ । ସବୁଠି ଆଗେଇଯିବାର ଆନନ୍ଦ ଓ ଉତ୍ତେଜନା – କେତେ ଆନନ୍ଦ, କେତେ ଉତ୍ତେଜନା, କେଉଁଟା ଆନନ୍ଦ, କେଉଁଟା ଉତ୍ତେଜନା – କହିବା ମୁସ୍କିଲ୍ ।

ଝରକା ବାହାରେ ଆଉ ଏକ ସକାଳ, ଆଉ ଏକ ସମ୍ଭାବନା । ଗାଡ଼ି ହାଓଡ଼ା ପ୍ଲାଟ୍‌ଫର୍ମ୍‌ରେ ଲାଗିଲାଣି । ହଠାତ୍ ଭୋକ ହେଲା । ପ୍ଲାଟ୍‌ଫର୍ମ୍‌ରେ ଗରମ ପୁରି, ଆଳୁଦମ୍ । ଦିନ ଦଶଟାରେ ମୁଁ କଲେଜଷ୍ଟ୍ରିଟ୍‌ରେ – ପ୍ରେସିଡେନ୍‌ସି କଲେଜ ଭିତରେ ।

## ୨୩

ବହୁତ ଥର କଲିକତା ଆସିଛି, ଛୁଟିରେ । କିଛି ନଜାଣି, କାହାକୁ କିଛି ନ ପଚାରି ଗୁଡ଼ାଏ ବସ୍‌ରେ ଚଢ଼ିଯାଇଛି – ଏଲ୍ ୧୪ 'ବି' ରୁ ଆରମ୍ଭ କରି ୭୭, ୪୪ ନମ୍ବର ପର୍ଯ୍ୟନ୍ତ – କେତେବେଳେ ଆଲିପୁର, ନ୍ୟାସ୍‌ନାଲ ଲାଇବ୍ରେରୀ ଆଡ଼କୁ ଯିବାକୁ ସ୍ଥିରକରି ସେଣ୍ଟ୍ରାଲ୍ ଆଭିନ୍ୟୁ, ଆମେରିକାନ୍ ସେଣ୍ଟର୍ ଲାଇବ୍ରେରୀ, ପାର୍କଷ୍ଟ୍ରିଟ୍, ଗ୍ଲୋବ୍ ସିନେମା ଆଡ଼େ ଚାଲି ଯାଇଛି । ମ୍ୟାକ୍ସମୁଲର୍ ଭବନରେ ଜର୍ମାନ୍ ନାଟ୍ୟକାର ବ୍ରେଖ୍‌ଟ୍‌ଙ୍କୁ ପଢ଼ିବାଲାଗି ଯାଉ ଯାଉ ଭୁଲ ବସ୍‌ରେ ଉଠି ଲେକ୍ ଟାଉନ୍‌ରେ, ଏପରିକି ଡମ୍‌ଡମ୍ ଏରିୟାରେ ପହଞ୍ଚିଯାଇଛି । ଯେମିତି ଲାଇବ୍ରେରୀରେ ଗୋଟାଏ ନିର୍ଦ୍ଦିଷ୍ଟ ବହି ଖୋଜୁ ଖୋଜୁ ସେଦିନ ଅଦ୍ଭୁତ ବହିକିଛି ପାଇଲି । ବାହାରେ ଗୁଳୁଗୁଳି, ବର୍ଷା ବି ଟିକେ ଟିକେ ହେଉଥାଏ, ଗ୍ରାଣ୍ଡ୍ ହୋଟେଲ୍ ପାଖ ଆମେରିକାନ୍ ସେଣ୍ଟର୍ ଶୀତତାପ ନିୟନ୍ତ୍ରିତ ଲାଇବ୍ରେରୀ – କାହାକୁ ଭଲ ଲାଗିବନି ? ଏଣ୍ଟ୍ରି ଫି ନାହିଁ, ପୁଣି ମୁଁ ତ ଶତକଡ଼ା ଶହେ କଲେଜ ପିଲାପରି ଦିଶୁଛି – ପଶିଗଲି, ଯୋଉସବୁ ବହି ଓ ମ୍ୟାଗାଜିନ୍ ଦେଖିଲି – ଲାଖିଗଲି ସେଇଠି, ପ୍ରଥମେ କ'ଣ ଖୋଜୁଥିଲି ଭୁଲିଗଲିଣି । ମନେ ମନେ ହସୁଥାଏ, ଜଣେ ଭଦ୍ରଲୋକ ମୋ ଆଡ଼କୁ ଅନେଇ ହସିବାର ଲକ୍ଷ୍ୟକଲି । କଲିକତାରେ ପ୍ରଥମଥର ପାଇଁ ଦେଖିଲି କେହିଜଣେ ମୋ ଆଡ଼କୁ ଅନେଇଲେ ଓ ହସିଲେ । ଏତେ ବଡ଼ ସହର – ସତ୍ୟଜିତ୍ ରାୟଙ୍କ 'ମହାନଗର'ରେ କାହାର ବେଳ ଅଛି ଅନ୍ୟଜଣକୁ ଅନେଇବ, ତା' କଥା ଭାବିବ ଓ ସେଇଥିପାଇଁ ହସିବ ? କାହାର କାମ ନାହିଁ ? ଯୁଆଡ଼େ ଦେଖ – ଖାଲି ଲୋକ, ଜନ୍ଦା ପିମ୍ପୁଡ଼ିପରି ମାଡ଼ି ଚାଲିଛନ୍ତି ଆଗକୁ – ସିଆଲ୍‌ଦା, କଲେଜଷ୍ଟ୍ରିଟ୍, ଇଡେନ୍ ଗାର୍ଡ଼ନ୍, ଗ୍ଲୋବ୍ ବା ମେଟ୍ରୋ ସିନେମା, ଏପରିକି କେ.ସି. ଦାସ ମିଠା ଦୋକାନ ବା ବେଣ୍ଟିକ୍ ଷ୍ଟ୍ରିଟ୍‌ର ଜୋତା ଦୋକାନ – ସବୁଠି ଅସ୍ଥିର, ଧାବମାନ ମଣିଷ । ମୋତେ ଲାଗେ, ନିଜ ଇଚ୍ଛାରେ ଏଭଳି ସହରରେ କେହି ବାଟ ଚାଲନ୍ତି ନାହିଁ, ଏକ ଦୃହତ୍ତର ଶକ୍ତି ପଛରୁ ଯେମିତି ସମସ୍ତଙ୍କୁ ପେଲି ପେଲି ନେଇଯାଉଛି ଆଗକୁ... କୌଣସି ଏକ ଅନିର୍ଦ୍ଦିଷ୍ଟ ସ୍ଥାନକୁ, ଯାହାକୁ ଲକ୍ଷ୍ୟସ୍ଥଳ ବୋଲି ଠିକ୍ କୁହାଯାଇ ପାରିବନି । ତେବେ ଦୁଃଖ ବା ଅନୁତାପ କରିବାର କାରଣ ନାହିଁ, ଯାଉ ଯାଉ ଯେଉଁଠି ମଣିଷ ପହଞ୍ଚିଲା, ବାସ୍ ।

'ମୋ ଜୀବନଯାତ୍ରା ଠିକ୍ ସେମିତି ନୁହଁକି ?' ମୁଁ ନିଜକୁ ପଚାରିଲି । ଯାଉ ଯାଉ, ଯାଇହୁଏ – ପହଞ୍ଚି ହୁଏ କି ନା, ସେକଥା ଏତେ ଶୀଘ୍ର, ଏତେ ତରବରରେ କେମିତି ଜାଣିବି ? କେମିତି ବୁଝିବି ? କାହିଁକି ବା ବୁଝିବି ? କ'ଣ ଦରକାର ? ଜାଣିବାରେ ଯାତ୍ରାର ଉଦ୍‌ବେଗ ଓ ଆନନ୍ଦ ନଷ୍ଟ ହୋଇଯିବ, ମରିଯିବ । ପହଞ୍ଚିବାରେ ଜୀବନର ରୋମାଞ୍ଚ ଓ

ଆକସ୍ମିକତା ସବୁ ସରିଯିବ – ଆଉ ବଞ୍ଚିବାପାଇଁ, ଉପଭୋଗ କରିବା ପାଇଁ ଥିବ କ'ଣ ? ତେଣୁ ରାଜା ୟୁଲିସେସ୍‌ର ସମୁଦ୍ରଯାତ୍ରା ପରି ମୋ'ର ଜୀବନଯାତ୍ରା ଚାଲୁଥାଉ, ଲକ୍ଷ୍ୟ ଆଖି ଆଗରେ, ମାଟି ଉପରେ, ପୃଥିବୀର କୌଣସି କୋଣରେ ନରହି, ଆକାଶରେ ଥାଉ, ଦୂରରେ ଥାଉ । ମୋତେ ଖାଲି ଆଖିରେ, ସହଜରେ ଖାଲି ଦେଖାଯାଉଥାଉ, ସେତିକି ଯଥେଷ୍ଟ, ବର୍ତ୍ତମାନ ପାଇଁ । ମୁଁ ଆଗେଇ ଯିବାର ସିଦ୍ଧାନ୍ତ କରିଛି – ପଛକୁ, ଅତୀତକୁ ସମ୍ପୂର୍ଣ୍ଣ ନ ଭୁଲି, ଭବିଷ୍ୟତକୁ ଭୟ ନକରି – ବର୍ତ୍ତମାନର କାନ୍ଧ ଉପରେ ଦୁଇଗୋଡ଼ ରଖି, ଆଗେଇଯିବାର, ସିଦ୍ଧାନ୍ତ ।

କଣ ମନେ ହେଲା କେଜାଣି, ଭଦ୍ରଲୋକଙ୍କ ପାଖକୁ ଯାଇ ଧୀରେ ପଚାରିଲି – 'ହସିଲେ ଯେ ?'

ସେ କହିଲେ – 'ତୁମ ଅବସ୍ଥା ଦେଖି । ମୋର ବି ସେମିତି ପ୍ରଥମେ ପ୍ରଥମେ ହୋଇଛି, ଏବେ ବି ହଉଛି – ଗୋଟେ ନିର୍ଦ୍ଦିଷ୍ଟ ବହି ଖୋଜୁ ଖୋଜୁ ଆଉ ଏକ ବହି ଆଖିରେ ପଡ଼ିଯାଏ । ପ୍ରଥମ ବହିଟି ଭୁଲିଯାଇ ଏ ବହିଟିକୁ ପଢ଼ିବସେ । ତା ପରେ ? 'ସେରେଣ୍ଡିପିଟି'...

'ସେରେଣ୍ଡିପିଟି ?' ନୂଆ ଶବ୍ଦଟିଏ ? ଅର୍ଥ ତା ହେଲେ ଏୟା ? ଭଲ ଶୁଭୁଛି ଶବ୍ଦଟି ତ ! – ମୁଁ ଭାବିଲି ।

'ଡିକ୍‌ସ୍‌ନାରି ଦେଖିଲାବେଳେ ଆଜ୍ଞା ସେମିତି ହୁଏ ନାହିଁ ?'– କହି ପକେଇଲି । 'ଗୋଟେ ଶବ୍ଦର ଅର୍ଥ ଖୋଜୁ ଖୋଜୁ ଆହୁରି ନୂଆ ଶବ୍ଦ, ଏକା ଅର୍ଥ ବୁଝୋଉଥିବା ଶବ୍ଦ ଆଖିରେ ପଡ଼ିଯାଏ, ପୁଣି ଚାଲିଆସେ ଭିନ୍ନ ଅର୍ଥ ନେଇ ନୂଆ ଶବ୍ଦଟିଏ – ମୂଳରୁ ଖୋଜୁଥିବା ଶବ୍ଦ ହଜିଯାଏ, ଶବ୍ଦ ବା ଅର୍ଥ ସନ୍ଧାନ ଭିନ୍ନ ରାସ୍ତା ନିଏ... ଜୀବନ ଠିକ୍ ସେମିତି, ସେମିତି ବଞ୍ଚିବାର ଅନୁଭୂତି – ନୁହେଁ ?'

ଭଦ୍ରଲୋକ ଛିଡ଼ା ହୋଇ ବାହାରକୁ ଆସିବାକୁ ମୋତେ ଇସାରା କଲେ । ମୁଁ ତାଙ୍କ ପଛେ ପଛେ ଚାଲିଛି ।

'ଭିତରେ କଥାବାର୍ତ୍ତା ମନା, ତେଣୁ ତୁମକୁ ବାହାରକୁ ଡାକିଲି । ମୋ ନାଁ ଶ୍ୟାମଲ୍ ବାଗ୍‌ଚି ।'

ମୁଁ ନିଜ ପରିଚୟ ଦେଲି । ଭଦ୍ରଲୋକଙ୍କୁ ଯେ କେହି ଦେଖିଲେ କହିବ, ନିଶ୍ଚିତଭାବେ 'ଏଲିଟ୍' ଶ୍ରେଣୀର । କଥା କହିବା ଓ ପୋଷାକରେ ଆଭିଜାତ୍ୟ ପରିଷ୍କାର

ଜଣା ପଡୁଛି, ୟୁନିଭର୍ସିଟିରେ ଅଧ୍ୟାପକ ବା କୌଣସି ବଡ଼ କମ୍ପାନୀର ଏକ୍‌ଜିକ୍ୟୁଟିଭ୍ ହୋଇପାରିଥାନ୍ତି । କଫି ଖାଇବାକୁ ଡ଼ାକିଲେ । ପ୍ରଥମ ଦେଖାରେ କଫି – ବେଶ୍ ରୋମାଣ୍ଟିକ୍ ଲାଗିଲା । ମାନେ ପରିବେଶଟା, ପାଖରେ ତିନି ଚାରିଜଣ କଲେଜ ଝିଅ ପୁଅ ପରି ମନେ ହେଉଥାନ୍ତି, ଜଣେ ବୟସ୍କ, 'ବୃଦ୍ଧ' କୁହାଯାଇପାରେ, ହାଇକୋର୍ଟର ଅବସରପ୍ରାପ୍ତ ଜଜ୍ ହୋଇପାରିଥାନ୍ତି । ତେବେ ଏଇ ଶସ୍ତା କଫି ଦୋକାନରେ କାହିଁକି ? ଶ୍ୟାମଲ୍ ବାଗ୍‌ଚି ଦି ତିନିଥର ଘଣ୍ଟାକୁ ଦେଖିଲେଣି ଏ ଭିତରେ । ମୁଁ ମୁରୁକି ମୁରୁକି ହସୁଥାଏ । ତା'ପରେ ହଠାତ୍ ଦେଖିଲାବେଳକୁ ଶ୍ୟାମଲ୍ ବାଗ୍‌ଚି ଆଉ ନାହାନ୍ତି । କୁଆଡ଼େ ହଜିଗଲେ ? ମୁଁ ବି ଖୋଜିଲିନି, ସେ ପଇସା ଦେଇ ସାରିଥିଲେ । ଏସ୍‌ପ୍ଲାନେଡ୍ ବସ୍‌ଷ୍ଟାଣ୍ଡରୁ ଚଢ଼ିଗଲି ଗୋଟେ ଡବ୍ଲ୍ ଡେକ୍କରରେ, ପରେ ଦେଖିଲି ନମ୍ବର ଏକ ୧୪ ବି, କଲେଜଷ୍ଟ୍ରିଟ୍ ଦେଇ ତ ଯିବ, ତେଣୁ ଭଲ ହେଲା । ପ୍ରେସିଡେନ୍ସି କଲେଜ ପ୍ରିନ୍ସିପାଲ ମୋ ମାର୍କସିଟ୍, ସାର୍ଟିଫିକେଟ୍ ସବୁ ନେଇ ପ୍ରୋଭିଜନାଲ୍ ଆଡ୍‌ମିଶନ୍ ଦେଲେ । ହଠାତ୍ ଏକ ଶିହରଣ ଖେଳିଗଲା ମୋ ହୃଦୟ ଭିତରେ – ମୁଁ ନା ହେଲେ ଦେଶର ଏକ ଐତିହାସିକ କଲେଜର ଛାତ୍ର ହୋଇଗଲି, ଯେଉଁଠି ପଢୁଥିଲେ ନେତାଜୀ ସୁଭାଷ ବୋଷ୍, ପଦାର୍ଥବିଜ୍ଞାନୀ ସତ୍ୟେନ୍ ବୋଷ୍, ମୁଜିବୁର୍ ରେହମାନ୍, ଆହୁରି କେତେ ସ୍ୱାଧୀନତା ସଂଗ୍ରାମୀ, ବାରିଷ୍ଟର ଓ ଲେଖକ ।

## ୨୪

ଡିବେଟିଂ କ୍ଲବ୍‌ରେ ଥରେ ଦି ଥର କହିଲା ପରେ ମୁଁ ଜାଣିଗଲି ଇଂରାଜୀ କହିବାରେ ମୋର ଅସୁବିଧା କେଉଁଠି ହେଉଛି । ସ୍କୁଲରେ ରତନ୍‌ସାରଙ୍କ କଥା ମନେ ପଡ଼ିଗଲା, ସାଇନ୍ସ ସାର୍ ଭେଙ୍କେଟ୍‌ସୁରୁଲୁଙ୍କ କଥା ମନେ ପଡ଼ିଗଲା । ବିଷୟବସ୍ତୁ ଉପରେ ଜ୍ଞାନ ଓ ପଢ଼େଇବାର ଶୈଳୀ ସେମାନଙ୍କ ଉଚ୍ଚକୋଟୀର ଥିଲା, କିନ୍ତୁ ଇଂରାଜୀ ଉଚ୍ଚାରଣ ଅଶୁଦ୍ଧ ଥିଲା । ବାକ୍ୟଟିଏ କହିବାର ଢଙ୍ଗ ଉପରେ ଓଡ଼ିଆ ଓ ତେଲୁଗୁ ଭାଷାର ପ୍ରଭାବ ସବୁବେଳେ ପରିଲକ୍ଷିତ ହେଉଥିଲା । କିଛି ଇଂରାଜୀ ଶବ୍ଦ, କିଛି ମାର୍କିନ୍ ବା ଫରାସୀ ଲେଖକ ଓ ଚିନ୍ତାନାୟକଙ୍କ ନାଁ ଭୁଲ ଉଚ୍ଚାରଣ କରୁଥିଲି, ସେଗୁଡ଼ିକ ସଂଶୋଧନ କରିନେଲି ମନେ ମନେ ।

ସନ୍ଧ୍ୟାରେ ବହିଦୋକାନ ଗୁଡ଼ିକରେ ସମୟ କଟିଗଲା – ଜାଣି ପାରିଲିନି । କଫି ଖାଇବାକୁ ପୁଣି ଇଚ୍ଛା ହେଲା, 'ଗ୍ଲୋବ୍'ରେ ପଡ଼ିଛି ଅର୍ସନ୍ ଉଏଲ୍‌ସ୍‌ଙ୍କ 'ସିଟିଜେନ୍ କେନ୍' । ଥରେ ଆଗରୁ ଦେଖିଥିଲି, ପୁଣି ଦେଖିବାକୁ ଇଚ୍ଛା ହେଲା । ନିଜେ ଉଏଲ୍‌ସ୍ ନିର୍ଦ୍ଦେଶନା ଦେଇଛନ୍ତି ଓ ଅଭିନୟ କରିଛନ୍ତି – ବାରମ୍ବାର ଦେଖିବାର ଛବିଟିଏ । ଖବର କାଗଜ ପ୍ରକାଶନ ଯେ ଏକ ଇଣ୍ଡଷ୍ଟ୍ରି ହୋଇପାରେ ଓ ସଫଳତାର ଇତିହାସ ପଛରେ ମଣିଷଜୀବନରେ ମୂଲ୍ୟବୋଧ, ଏକାକୀତ୍ୱ, ବିରସତା କେତେ ଭୟାନକ ହୋଇପାରେ, ମୁଁ କେବେ କଳ୍ପନା

କରି ନଥିଲି । ପାହାଡ଼ର ଶୀର୍ଷରେ ପହଞ୍ଚିଲେ, ସଫଳତାର ଅନ୍ତିମ ପାହାଚ ଛୁଇଁବା ପରେ ପରେ, ମଣିଷ ଏତେଟା ଏକାକୀ, ଏତେଟା ଅସ୍ଥିର ହୋଇଯାଏ ?

ହେଲେ ଉପରକୁ ଚଢ଼ିବା, ଆକାଶକୁ ଛୁଇଁବା କ'ଣ ନିହାତି ଦରକାର ? ନା, ମୋତେ ଏବେ ଭାବିବାକୁ ହେବ – ଆମ ସାଂଗରେ ଯେଉଁମାନେ ପଢୁଥିଲେ, ସେମାନଙ୍କ ଭିତରୁ କେହି ଉପରେ ପହଞ୍ଚି ଗଲେଣିକି ?

ମନେ ପଡ଼ିଲା – ଅପୂର୍ବ କଥା, ସେ କେଉଁଠି ? ଦୁର୍ଗାପୁର ଏଂଜିନିୟରିଂ କଲେଜରେ, ଶେଷବର୍ଷ ଛାତ୍ର, ଏୟାରଫୋର୍ସ୍‌ରେ କ୍ୟାମ୍ପସ୍ ଇଣ୍ଟର୍‌ଭିଉରେ କମିଶନ୍ ପାଇଯାଇଛି । ବିନୋଦ ଡାକ୍ତରୀ/ଏଂଜିନିୟରିଂ ନ ପଢ଼ି ବି.ଏସ୍.ସି. ଫିଜିକ୍‌ସ୍ ନେଇ ବାଙ୍ଗାଲୋର୍‌ରୁ ପି.ଜି. କରି ଏବେ ଆମେରିକାରେ – ବିଶ୍ୱବ୍ୟାଙ୍କ୍‌ରେ କମ୍ପ୍ୟୁଟର୍ ସେକ୍ସନ୍ ଚିଫ୍ । ଆଉ ସମୀକ୍ଷା ?

ସମୀକ୍ଷା କଥା ମନେ ପଡ଼ିଗଲା । ଆରେ ସେ ପିଲାଟା ତ କଲିକତାରେ ମେଡିସିନ୍ ପଢୁଥିଲା ଆର୍.ଜି. କର ମେଡିକାଲ କଲେଜରେ । ଲେଡିଜ୍ ହଷ୍ଟେଲରେ ଯାଇ ଦେଖିଲେ ହୁଅନ୍ତା ! ସମୀକ୍ଷା ସହ ସମୟ କେମିତି କଟିଯାଏ, ଜାଣିହୁଏନା । ଏବେ ତ ଆହୁରି ଦୁଷ୍ଟାମି କରୁଥିବ ! ଆଖି ଆଗରେ ମୂର୍ତ୍ତି ଭାସି ଆସିଲା, ପଛରେ ଚିଲିକାର ନୀଳପାଣି... ମୁହଁରେ ସେହି ସହଜ, ଦୁଷ୍ଟ ହସଟି ଝୁଲିରହିଛି, କଣ୍ଠରେ ସବୁବେଳେ ଆନନ୍ଦ ଓ ଉତ୍କଣ୍ଠାର ସ୍ୱର, ଆଉ ଆଖିରେ ଆଖିଏ ପ୍ରଶ୍ନ...

## ୨୫

ପୁଣି କଲେଜ ଷ୍ଟ୍ରିଟ୍‌ରେ ମୁଁ । ବର୍ଷା ଅସରାଏ ହୋଇଯାଇଛି । ବର୍ଷା ହେଲେ କଲିକତା ରାସ୍ତା ଅସହ୍ୟ, ବିଶେଷ କରି କଲେଜ ଷ୍ଟ୍ରିଟ୍ । ତଳକୁ ଅନେଇ, ଡେଇଁଡାଇଁ ଚାଲିଛି, ଆଖି ଫୁଟ୍‌ପାଥ ବହିଦୋକାନ ଉପରେ । ପ୍ରେସିଡେନ୍‌ସି କଲେଜ ସାମ୍ନା ପୁରୁଣା ଦାସଗୁପ୍ତ ଷ୍ଟୋର୍, ଇଣ୍ଟର୍‌ନ୍ୟାସ୍‌ନାଲ୍ ବୁକ୍‌ଷ୍ଟୋର୍ ଆଉ ଆଖିକୁ ଦିଶୁନି, ତା ଆଗରେ ସମାନ୍ତରାଳ ଭାବେ ଚାଲିଛି ଫୁଟ୍‌ପାଥ୍ ବହିଦୋକାନ ସବୁ । ଅନେଇଲେ ବିପଦ । ପାଖକୁ ଗଲେ ଦୋକାନ ଚଳାଉଥିବା ଅଧାପଢୁଆ ଟୋକାସବୁ ପଚାରି ପଚାରି ଅଥୟ କରିଦେବେ – 'ଦାଦା, କି ଚାୟ୍ ? ଓ ଦିଗେ କେନ, ଏ ଦିଗେ ଆସୁନ୍ । କି ଚାୟ୍ ବୋଲୁନ୍, ବୋଲେ ଫେଲୁନ୍... ନା ଥାକ୍ଲେ ଓ ଏନେଦେବ, ଆସୁନ୍, କବେ ଲାଗ୍‌ବେ, ବୋଲୁନ୍ ।'

ହସ ଲାଗୁଥାଏ, ବିରକ୍ତ ବି ଲାଗୁଥାଏ । ସମୀକ୍ଷା ପାଖକୁ ଯିବି ଭାବି ମିନି ବସ୍‌ରୁ ଓହ୍ଲେଇ ପଡ଼ିଥିଲି, କରିବି କ'ଣ ଏବେ ? ବହି କିଛି ଦେଖିବାକୁ ଇଚ୍ଛା, ଦେଖିଲେ ପୁଣି

କିଣିବାକୁ ଇଛା ହେବ । ପୁରୁଣା ବହି... ପୁଣି ମୂଲେଇବାକୁ ପଡ଼ିବ । କିଏ ବକର ବକର ହେବ ସକାଳଟାରୁ ? ନାଇଁ, ଥାଉ, ବରଂ ସନ୍ଧ୍ୟାବେଳକୁ ସମୀକ୍ଷା ସାଙ୍ଗରେ ଆସିବି ।

'ବୋଲୁନ୍ ନା ଦାଦା... କି ଚାୟ୍ ?'

ଓହୋ ! ବଡ଼ ଅସୁବିଧା, ଟୋକାଟା ନଛୋଡ଼ବନ୍ଧା । ଠିକ୍ ଅଛି, ଭାବିଲି ଗୋଟେ କଷ୍ଟିଆ, ନ ମିଳୁଥିବା ବହି ଅଛିକି ନାହିଁ ପଚାରିବି, ହଇରାଣ କଲାଣି ପିଲାଟା ! ମୁଁ ତାକୁ ଟିକେ ହଇରାଣ କରେ ?

''ଆରିଷ୍ଟୋଟ୍ଲଙ୍କ 'ପଲିଟିକ୍ସ' ବହି ଅଛି ?'' ନିର୍ଘାତ ଓଡ଼ିଆରେ ପଚାରିଲି ।

ପିଲାଟି ଦୋକାନର ଏ ମୁଣ୍ଡ ସେ ମୁଣ୍ଡ ଅନେଇଗଲା । ଶେଷକୁ କହିଲା–

''ପ୍ଲାଟୋଦା'ର 'ରିପବ୍ଲିକ୍' ଚଲ୍‌ବେ ? ''

ମୁଁ ଆଶ୍ଚର୍ଯ୍ୟ ହୋଇ ପିଲାଟିକୁ ଅନେଇଲି । 'ପ୍ଲାଟୋଦା ?'ବାଃ, କି ଫ୍ୟାମିଲେରିଆ । ଗ୍ରୀକ୍ ଦାର୍ଶନିକ ପ୍ଲାଟୋ କେମିତି ଏ ଟୋକାର 'ଦାଦା' ହେଲେ, ହସ ସମ୍ଭାଳି ପାରିଲିନି । ବେଶ୍ ଭଲ ଲାଗିଲା ଭାବିବାକୁ – ସତେ ଯେମିତି କଲେଜ୍‌ଷ୍ଟ୍ରିଟ୍ ଭୋଟର୍ ତାଲିକାରେ ପ୍ଲାଟୋ, ଆରିଷ୍ଟୋଟ୍ଲ ସବୁ ଥିଲେ । ଭାବିଲି ପିଲାଟି ଯଦି ପ୍ୟାରିସ୍ କେବେ ଯାଏ, ମାନେ, ଯଦି କେବେ ଯିବାର ସୁଯୋଗ ପାଏ, ତେବେ ସେ ଆଇଫେଲ୍ ଟାୱାର୍ ପାଖରେ ଟ୍ରାଫିକ୍ ପୋଲିସକୁ ନିଶ୍ଚୟ ବଙ୍ଗଳାରେ ହିଁ ପଚାରିବ –

'କି ଦାଦା, ବୋଲ୍‌ତେ ପାର୍‌ବେନ୍ – ଆଇଫେଲ୍ ଟାୱାର୍‌ଟା କୋନ୍ ଦିଗେ ?' ଏମିତି ଭାବି ଭାବି ସମୀକ୍ଷାର ହଷ୍ଟେଲ ପାଖରେ ପହଞ୍ଚିଗଲି ।

ଗେଟ୍ ପାଖରେ ନେପାଳୀ ଦରୱାନ୍... ଅଧାନିଦରୁ ବୋଧେ ଉଠିପଡ଼ିଛି । ମୋତେ ଦେଖି, ନଦେଖିଲାପରି ବିଡ଼ିଖଣ୍ଡେ ଲଗେଇଲା । ମୁଁ ତାକୁ ଆକୃଷ୍ଟ କରିବା ପାଇଁ ଚାର୍ମିନାର୍ ସିଗାରେଟ୍‌ଟିଏ ପକେଟ୍‌ରୁ ବାହାର କରି ତାକୁ ଦିଆସିଲି ମାଗିଲି । ସେ ନିର୍ବିକାର ହୋଇ ଦିଆସିଲିଟି ବଢ଼େଇ ଦେଲା, କାଠି ମାତ୍ର ଦୁଇଟି ଥିଲା ଭିତରେ । କ'ଣ ମନ ହେଲା ସିଗାରେଟ୍‌ଟିକୁ ପ୍ୟାକେଟ୍ ଭିତରେ ପୁରେଇ ଦିଆସିଲି ତାକୁ ଫେରେଇ ଦେଇ କହିଲି –

'ସମୀକ୍ଷା ଦିଦି ଉଡ଼ିଶା ଥେକେ ଏସେଛେ, ୟେକ୍‌ଟୁ ଡେକେ ଦେବେ ?'

'ଆପ୍ କ୍ୟା ବଂଗାଲୀ ହାଏ ?' ପ୍ରଶ୍ନ ଆସିଲା ।

'ଓଇ ରକମ୍...' କହି କଥା ଗୋଳେଇବାକୁ ବସିଲି । ମନେ ମନେ ଭାବିଲି ସତକଥା କହିଲିନି କାହିଁକି ? ମିଛଟିଏ କହିଲେ ତାକୁ ରକ୍ଷା କରିବା ପାଇଁ ଆଉ ଗୋଟିଏ

ମିଛ କହିବାକୁ ପଡ଼ିବ, ପୁଣି ଦ୍ୱିତୀୟ ମିଛଟି ପାଇଁ ତୃତୀୟର ସାହାରା ନେବାକୁ ପଡ଼ିବ । କ'ଣ ଦରକାର ? 'ତେବେ ସତକଥାଟା ସହଜରେ ବାହାରେନି କାହିଁକି ?' ନିଜକୁ ପଚାରିଲି ।

ଦୁଇ ମହଲା ଉପରୁ ଝିଅଟିଏ ମୋ ଆଡ଼କୁ ହାତ ହଲାଉଥିବାର ଦେଖି ମୁଁ ବି ହାତ ହଲେଇଲି – ଗୋଟେ ନୀଳ ନାଇଟିରେ ସମୀକ୍ଷା । ବାଳ ଟ୍ରିମ୍ କରିଛି ବୋଧେ ? ଏତେ ଲମ୍ବା ତାର ବାଳଗୁଡ଼ା କୁଆଡ଼େ ଗଲା ? ପାଖକୁ ଆସିଲାରୁ କିଛିଟା ସୋଫିଆ ଲରେନ୍, କିଛିଟା ଅପର୍ଣ୍ଣା ସେନ୍ ଭଳି ଦିଶିଲା । ବେଶୀ ଗୁଡ଼େ ହେଁ ହେଁ ନ ହୋଇ ଅଧଘଣ୍ଟା ଭିତରେ ଦୁହେଁ ଚାଲିଲୁ ଗ୍ଲୋବ୍ ସିନେମା ଆଡ଼େ ।

'ରାସ୍ତାରେ ନିଉ ମାର୍କେଟ୍‌ରେ ଅଧଘଣ୍ଟା ହୋଇ ଯିବା', ସମୀକ୍ଷା କହିଲା । ମୁଁ କହିଲି – 'ଆଗ ଟିକେଟ୍ କରିଦେବା, ତାପରେ...'

'ନାଇଁ ଆଗେ ନିଉ ମାର୍କେଟ୍ ।'

'ସମୀକ୍ଷା, ପ୍ଲିଜ୍...'

'ହଉ...'

ଭାବିଲି ଇଂରେଜମାନେ 'ପ୍ଲିଜ୍' ଭଳି କେତୋଟି ଶବ୍ଦ ଛାଡ଼ିଦେଇ ଆମର ବ୍ୟକ୍ତିଗତ ଜୀବନରେ, ସାମାଜିକ ଜୀବନରେ, ଜାତୀୟ ଜୀବନରେ ଅନେକ ସମସ୍ୟାର ସମାଧାନ କରିଦେଇଛନ୍ତି ।

## ୨୬

ନିଉ ମାର୍କେଟ୍ ଭିତରେ ପଶିବା ସହଜ, ବାହାରିବା କଷ୍ଟ । କୁଆଡ଼େ ଛତିଶଟା ପଶିବା ଓ ବାହାରିବା ରାସ୍ତା ଅଛି, ରାସ୍ତା ନୁହେଁ ତ ସରୁ ଗଳି, ପାଞ୍ଚହାତିଆ, ଦଶହାତିଆ ଗଳି । ଆଉ, କୌଣସି ଦୋକାନକୁ ମୁଁ ଦ୍ୱିତୀୟ ଥର ପାଏନା । ଯଦି ପାଏ, ତା ହେଲେ ସେଣ୍ଟ୍ରାଲ୍ ସ୍କୋୟାର୍‌ରୁ ପୁଣିଆସି ଗୁଡ଼ାଏ ଏପାଖ ସେପାଖ ହେଲାପରେ... ପହଞ୍ଚିଯାଏ ଭୁଲରେ, ଯେଉଁଠାରୁ ଭୀମସେନ ଯୋଶୀ ବା ଏଲ୍‌ଭିସ୍ ପ୍ରିସ୍‌ଲିଙ୍କ ମ୍ୟୁଜିକ୍ କ୍ୟାସେଟ୍ କିଣିଥିଲି । ଅଦ୍ଭୁତ ଏ ନିଉ ମାର୍କେଟ୍ ! ଏଠି ମାଛପିସ୍ ସଜା ହୋଇଥାଏ, ରାଖି ସଜା ହେଲାପରି... ଧାଡି ଧାଡି । ମାଛ ପିସ୍ ଦଶ ପଇସା, ପିସ୍ ଚାରଣା, ପିସ୍ ଟଙ୍କାଟେ ମଧ । ଏଠି ସମସ୍ତଙ୍କୁ ଦେଖିବାକୁ ମିଳେ ବିଭିନ୍ନ ଅବସ୍ଥାରେ, ବିଭିନ୍ନ ସମୟରେ, ଯଥା ସତ୍ୟଜିତ୍ ରାୟ, ଅପର୍ଣ୍ଣା ସେନ୍, ମାଧବୀ ଚାଟାର୍ଜୀ, ପ୍ରଫେସର ପି. ଲାଲ୍ ତଥା ଫୁଟବଲ୍ ହୀରୋ ଚୁନି ଗୋସ୍ୱାମୀ, ରବୀନ୍ଦ୍ର ସଂଗୀତ ସ୍ପେଶାଲିଷ୍ଟ ସୁଚିତ୍ରା ମିତ୍ର, କନିକା ବାନାର୍ଜୀ ଓ ଦେବବ୍ରତ ବିଶ୍ୱାସ । ଲେଟେଷ୍ଟ୍ ଜୋତାଠାରୁ ଆରମ୍ଭକରି ଲେଟେଷ୍ଟ୍ କ୍ୟାସେଟ୍, ରେଡ଼ିମେଡ୍ ଜ୍ୟାକେଟ୍,

ସୁଟ୍, କାଂଜୀବରମ୍, 'ଢାକାଇ' ଶାଢ଼ୀଠାରୁ ଆରମ୍ଭ କରି ଗ୍ରିଟିଂ କାର୍ଡ଼, ଏଥ୍‌ନିକ୍ ଜୁଏଲ୍‌ରୀ, ବିରିୟାନି, କେକ୍ ପର୍ଯ୍ୟନ୍ତ – ସବୁ, ମଣିଷର ଦରକାରୀ, ଅଦରକାରୀ ଜିନିଷ ଗୋଟିଏ ଛାତତଳେ ମିଳେ । ଅଦ୍ଭୁତ ଏ' ନିଉ ମାର୍କେଟ୍ !

କ'ଣ ଦିଟା କ୍ୟାସେଟ୍ ଫେରେଇଲା ସମୀକ୍ଷା, ଆଉ ତ ନୂଆ କିଛି ନେଲାନି ! ମୁଁ ବଡ଼େଗୁଲାମ୍ ଅଲ୍ଲୀଙ୍କ ଠୁମ୍ରି ଶୁଣୁଥିଲି – 'ୟାଦ୍ ପିୟା କି ଆୟେ...'

ଗ୍ଲୋବ୍ ଥିଏଟର୍‌ରେ ସର୍ପିଳ କ୍ୟୁ । 'ଲେଡିଜ୍ ଫାଷ୍ଟ୍' ସିଷ୍ଟେମ୍ ନାହିଁ, ମୁଁ ଛିଡ଼ାହେଲି କ୍ୟୁ'ରେ । ସମୀକ୍ଷା ଗଲା ଚିକେନ୍ ରୋଲ୍ ବାହାରୁ ଆଣିବା ପାଇଁ । ରୋଲ୍ ପରେ ରୋଲ୍ ଖାଇ ଚାଲିଛୁ, କିନ୍ତୁ ଲାଇନ୍ ସେମିତି, କିଛି କମୁନି । ଆଗରେ ଦି'ଜଣ ଝିଅ ଆଇସ୍‌କ୍ରିମ୍ ଗୋଟେ ପରେ ଗୋଟେ ଚଲେଇଥାନ୍ତି । ଭିତରେ ଖାଇବା ମନା, ତେଣୁ ବାହାରେ ପାଟି ଚାଲୁଥାଉ, ଲାଇନ୍ ତ କ'ଣ ରହିଛି ସେମିତି ?

ଫିଲ୍ମ ସରିଲାପରେ ସମସ୍ତେ ହଲ୍‌ରୁ ଉଠି ପଡ଼ିଲେ । ସମୀକ୍ଷା ସେମିତି ବସି ଧଳା ସ୍କ୍ରିନ୍‌କୁ ଅନାଇ ରହିଛି । 'କ'ଣ ଦେହ ଖରାପ ଲାଗୁଛି ?'– ପଚାରିଲାରୁ ଏକ ଦୀର୍ଘଶ୍ୱାସ ଛାଡ଼ି ସେ କହିଲା –

'ପ୍ରକୃତରେ ଅର୍ସନ୍ ଉଏଲ୍‌ସ୍‌ଙ୍କ କି ଅଭିନୟ ! ମାନସିକ ଉତ୍ତେଜନା ଓ ଆଘାତକୁ କି ସୁନ୍ଦର ପୋର୍ଟ୍ରେ କରିପାରିଛନ୍ତି ! ମୁଁ କହିଲି – ' କେବଳ ତାଙ୍କରି ନିର୍ଦ୍ଦେଶନା ଓ ଅଭିନୟ ଯୋଗୁଁ ପରା 'ସିଟିଜେନ୍ କେନ୍' ଏକ କ୍ଲାସିକ୍ ମୁଭି...

ଫେରିଲାବେଳକୁ ମାଡ୍ରାସ ହୋଟେଲ୍ ପାଖରେ ଝିଅଟିଏ ଦେଖି ସମୀକ୍ଷା ଗଦ୍‌ଗଦ୍ ହେଇଗଲା । ଭାବିଲି ତା ମେଡିକାଲ୍ ବା ହଷ୍ଟେଲ ସାଙ୍ଗ ହୋଇଥିବ । ସାଙ୍ଗରେ ଯେଉଁ ବନ୍ଧୁ ଥିଲେ ତାଙ୍କୁ କେଉଁଠି ଦେଖିଲା ପରି ମନେ ହେଲା । ମୁଁ କେଉଁଠି ଦେଖିଛି, ଭାବୁଛି... ସେ ହସି ହସି ମୋ ଆଡ଼କୁ ମାଡ଼ି ଆସିଲେ । ଭିଡ଼ରୁ, ଶହେ ଦି ଶହ ଜଣଙ୍କ ଭିତରୁ ସେ ବାହାରି ଜଣେ ପରି ଦେଖାହେଲେ ଯେତେବେଳେ, ମୁଁ ଚିହ୍ନି ପାରିଲି – ୟେ'ତ ଶ୍ୟାମଲ୍ ବାଗ୍‌ଚି, ଆମେରିକାନ୍ ସେଣ୍ଟର୍ ଲାଇବ୍ରେରୀରେ ପରିଚୟ ହୋଇଥିଲା । ତା'ହେଲେ ଏ ଝିଅଟି ତାଙ୍କର ଗାର୍ଲଫ୍ରେଣ୍ଡ୍ ନିଶ୍ଚୟ, ଭାବିଲି ।

ସମୀକ୍ଷା ଉଭୟଙ୍କ ପରିଚୟ କରେଇ ଦେଲା । ସେମାନେ ସ୍ୱାମୀ ସ୍ତ୍ରୀ ! ମୋତେ ଟିକେ କେମିତି କେମିତି ଲାଗିଲା । ମ୍ୟାଡାମ୍ ତ ମୋଟେ ଜଣା ପଡୁନାହାନ୍ତି ଶାଦୀଶୁଦା ପରି – ହୁଏତ ହିନ୍ଦୁ ନୁହନ୍ତି ! ତେବେ ସମସ୍ତେ ମିଶି କେ.ସି. ଦାସରେ ପଶିଲୁ । ସନ୍ଦେଶର ଭେରାଇଟି ଦେଖି ମୁଁ ଟିକେ ତରକିଗଲି । ଶ୍ୟାମଲ୍ ବାଗ୍‌ଚି ଓ ସମୀକ୍ଷା ଟକ୍‌ଟାକ୍ ସାତ

ଆଠଟି ଉଦରସ୍ଥ କଲାବେଳକୁ ଆମେଦୁହେଁ ଦୁଇରେ ରହିଛୁ । ମିଠା ଖାଇବାକୁ କେମିତି ମୋତେ, ମାନେ ସନ୍ଦେଶ୍ ଟାଇପ୍‌ର ମିଠା, ଭଲ ଲାଗେନା । କେମିତି ଗୋଟେ ବ୍ଲଟିଂ ପେପର୍ ବା ଚକ୍ ପାଉଡର୍ ଚୋବେଇଲାଭଳି ଲାଗେ ।

କଥା ପ୍ରସଙ୍ଗରେ ଶ୍ୟାମଲ୍ ବାଗ୍‌ଚି ଯେଉଁ ଖବର ଦେଲେ ମୁଁ ଏକାବେଳକେ ହତବାକ୍ ହୋଇ ପଡ଼ିଲି । ପ୍ରେସିଡେନ୍‌ସି କଲେଜ କୁଆଡ଼େ ଶୀଘ୍ର ବନ୍ଦ ହେବାକୁ ଯାଉଛି । ଯାଦବପୁର ହଷ୍ଟେଲରେ କୁଆଡ଼େ ହାତବୋମା ତିଆରି ଚାଲିଛି । ନକ୍‌ସାଲ୍‌ବାଡ଼ି ଆନ୍ଦୋଳନ ତୀବ୍ରତର ହେବା ଉପରେ । ଆନ୍ଦୋଳନକାରୀମାନେ ବର୍ଦ୍ଧମାନ୍ ନା ବାଙ୍କୁଡ଼ାରେ ଜଣେ ପୋଲିସ୍ ଏସ୍.ପି.ଙ୍କୁ ଓ ଦୂର ଗାଁରେ ଦୁଇଜଣ ଜମିଦାରଙ୍କୁ ଦିବାଲୋକରେ ଗୁଳିକରି ମାରି ଦେଇଛନ୍ତି ଆଜି ସକାଳେ ।

ବାହାରେ ପ୍ରୋସେସନ୍... କଲେଜ ପିଲାଙ୍କ ପରି ସବୁ ଦିଶୁଛନ୍ତି – ଏକ କି.ମି.ରୁ ବେଶୀ ଲମ୍ବା ପ୍ରୋସେସନ୍ । କଲିକତା ପ୍ରୋସେସନ୍ ଓ ସ୍ଲୋଗାନ୍‌ର ସହର, ମୁଁ ଜାଣିଥିଲି । ପାଖକୁ ଗଲାରୁ ଶୁଭିଲା ଅନେକ ସ୍ଲୋଗାନ୍, କିନ୍ତୁ ଗୋଟିଏ ଧାଡ଼ି ମନେ ରଖିବା ଭଳି –

'ଆମାର୍ ନାମ୍ ଭିଏତ୍‌ନାମ୍' ଏ ଭିଏତ୍‌ନାମ୍ ପୁଣି କେଉଁଠୁ ଆସିଲା ? ପୁଣି କିଛି ସମୟ ପରେ 'ଚଲ୍‌ବେ ନା... ଚଲ୍‌ବେନା...' ବୋଧେ ବ୍ୟାଙ୍କ୍ କର୍ମଚାରୀଙ୍କ ଷ୍ଟ୍ରାଇକ୍ । ଏଠି କୁଆଡ଼େ ସ୍ଲୋଗାନ୍ ଓ ପ୍ରୋସେସନ୍‌ରେ ଭାଗ ନେବା ପାଇଁ ରୀତିମତ ଭଡ଼ା ମିଳେ, କେବଳ କୋଲ୍‌ଡ୍ ଡ୍ରିଙ୍କ୍ ଓ ଲଞ୍ଚ୍ ନୁହେଁ, ସ୍ୱତନ୍ତ୍ର ମଜୁରୀ । ନ୍ୟୁନତମ ଯୋଗ୍ୟତା : ଖରାରେ ଘଣ୍ଟାଘଣ୍ଟା ଚାଲିପାରୁଥିବା, ପାଟି କରିପାରୁଥିବା ଶକ୍ତି ।

ମୁଁ ତା' ହେଲେ କ'ଣ କରିବି ଏବେ ? କଲେଜ ବନ୍ଦ ମାନେ କ'ଣ ଓଡ଼ିଶା ଫେରିଯିବି ? ନଭେମ୍ବର ମାସ ହେଲାଣି । ଏମ୍.ଏ.ରେ ତ ଆଡମିଶନ୍ ସବୁ ୟୁନିଭର୍ସିଟିରେ ବନ୍ଦ ହୋଇଯିବଣି ! ଗଲା ପୁଣି ଗୋଟେ ବର୍ଷ । ଶ୍ୟାମଲ୍ ବାଗ୍‌ଚିଙ୍କ ପରାମର୍ଶ ଲୋଡ଼ିଲି । ଏବେ କରିବି କ'ଣ ?

ଶ୍ୟାମଲ୍ ବାଗ୍‌ଚି କହିଲେ – 'ତୁମେ ଗୋଟେ କାମ କର । ବିଶ୍ୱଭାରତୀ ଚାଲିଯାଅ, ଶାନ୍ତିନିକେତନ । ଆଜି ସନ୍ଧ୍ୟାରେ ବା କାଲି । ସେଠି ଡିସେମ୍ବର ପର୍ଯ୍ୟନ୍ତ ଆଡ୍‌ମିଶନ୍ ସମ୍ଭବ, ଯଦି ସିଟ୍ ଥାଏ । ରେସିଡେନ୍ସିଆଲ୍ ୟୁନିଭର୍ସିଟି... ହଷ୍ଟେଲରେ ଯଦି ସିଟ୍ ଥିବ, ଏମ୍.ଏ.ରେ ତୁମେ ପାଇପାରିବ । ବେଶ୍ ନାମକରା ସ୍କଲାର୍ ଇଂଲିଶ୍ ଡିପାର୍ଟ୍‌ମେଣ୍ଟରେ ସବୁ ଅଛନ୍ତି – ଡଃ ଶିଶିର୍ ଘୋଷ୍, ଡଃ ଶ୍ରୀଚନ୍ଦ୍ର ସେନ୍, ଡଃ ଜୀବନ୍ ଚଉଧୁରୀ, ବିମଲ୍ ସର୍କାର...'

## ୨୭

ଦାର୍ଜିଲିଂ ମେଲ୍ ପାଇଁ ସିଆଲ୍‌ଦା ଯିବାକୁ ହେବ ମୁଁ ଜାଣି ନଥିଲି । ସିଧା ହାଓଡ଼ା ଷ୍ଟେସନ୍‌ରୁ ବର୍ଦ୍ଧମାନ୍ ଯାଉଥିବା ଗୋଟେ ଲୋକାଲ୍ ଟ୍ରେନ୍‌ରେ ଉଠି ପଡ଼ିଲି । ବସିବାର ପ୍ରଶ୍ନନାହିଁ, ଜାଗା ବି ନାହିଁ । ସମସ୍ତେ ପ୍ରାୟ ଛିଡ଼ା ହୋଇଛନ୍ତି । ଟୋକେଇ ଗୁଡ଼ା ଆଖି ସାମନାରେ, ମଣିଷ କମ୍ । ବର୍ଦ୍ଧମାନରୁ ବୋଲ୍‌ପୁର୍ ଅଭିମୁଖେ ଗୋଟେ ଗାଡ଼ି – ଦାନାପୁର ପାସେଞ୍ଜର୍ – ମିଳିଗଲା । ସଂଧ୍ୟା ପାଞ୍ଚଟାରେ ବୋଲ୍‌ପୁର୍ । ଷ୍ଟେସନ୍‌ଟି ଛୋଟ । ଓହ୍ଲେଇପଡ଼ି ଛିଡ଼ା ହୋଇଛି, ରିକ୍ସାବାଲାଟେ ମୋ ବ୍ୟାଗ୍ ଛଡ଼େଇ ନେବା ଉପରେ – ଡାକୁଛି ତା' ରିକ୍ସାକୁ ।

କୋଉ 'ଭବନ୍' ଯିବି ପଚାରିଲା । ମୁଁ ଆଗରୁ ପଢ଼ିଥିଲି, ଜାଣିଥିଲି ଯେ ଶାନ୍ତିନିକେତନରେ କଲେଜକୁ ରବୀନ୍ଦ୍ରନାଥ 'ଭବନ' କହୁଥିଲେ । ଏମ୍.ଏ. ପଢ଼ା ହେଉଥିବା କଲେଜ ହେଲା 'ବିଦ୍ୟାଭବନ', ଅନର୍ସ ପଢ଼ା ହେଉଥିବା କଲେଜ ସବୁ 'ଶିକ୍ଷାଭବନ'... ସେହିପରି ଅନ୍ୟ କଲେଜ ସବୁ ହେଲା 'କଳାଭବନ', 'ସଂଗୀତଭବନ', 'ବିନୟଭବନ' (ବି. ଇଡି./ଏମ୍. ଇଡି.), 'ପାଠଭବନ' (ସ୍କୁଲ ବିଭାଗ), 'ଚିନାଭବନ' (ଚାଇନିଜ୍ ଷ୍ଟଡିଜ୍),'ହିନ୍ଦୀଭବନ', 'ଶିଶୁଭବନ' (ନର୍ସରୀ ଓ କିଣ୍ଡରଗାର୍ଟେନ୍) ଇତ୍ୟାଦି...

ରିକ୍ସାରେ ବସୁବସୁ ପ୍ରଶ୍ନ ଆସିଲା – 'ଦାଦା, ଆପ୍ ପୁରାନା ଷ୍ଟୁଡେଣ୍ଟ୍, ୟା ନୟା ହଏଁ ?'

ହିନ୍ଦୀ ଶୁଣିମୁଁ ଟିକେ ଆଶ୍ଚର୍ଯ୍ୟ ହେଲି, ବଙ୍ଗଳା-ମିଶା ହିନ୍ଦୀ । ବିହାରୀ ଚେହେରା – ବିହାରୀ ଲୋକଟେ ବୋଧେ ! ମୁଁ ଟଙ୍କାଟେ ଦେଇ ଓହ୍ଲେଇଲାବେଳକୁ ସେ ମୋତେ ଚାରଣା ଫେରେଇଲା । ମୁଁ ତାକୁ ସେଇଟା ରଖିବାକୁ କହି ଓହ୍ଲେଇଗଲି । କିନ୍ତୁ ପ୍ରଥମଥର ଶାନ୍ତିନିକେତନ ଆସିଛି । ଓଡ଼ିଆ ଡିପାର୍ଟମେଣ୍ଟ୍‌ରେ ଜଣେ ଦି ଜଣ ଅଛନ୍ତି ବୋଲି ଜାଣିଛି, ନାଁ ଶୁଣିଛି, କିନ୍ତୁ ବ୍ୟକ୍ତିଗତ ପରିଚୟ ନାହିଁ । କ'ଣ କରିବି, ଗେଷ୍ଟ ହାଉସ୍ ତ ଥିବ, ସେଇଠିକି ପ୍ରଥମେ ଯିବି ବୋଲି ଭାବିନେଲି । ଦେଖିଲି – ଆକାଶରେ ବର୍ଷାର ପ୍ରସ୍ତୁତି । ରାସ୍ତାରେ ଫ୍ରକ୍‌ପିନ୍ଧା ଝିଅଟିଏ... ହଳଦିଆ ରଙ୍ଗର ଫ୍ରକ୍‌ଟିଏ ପିନ୍ଧିଛି... ମୁଣ୍ଡରେ ତିନିଚାରିଟା ବହିକୁ ସୁନ୍ଦର ବାଲାନ୍ସ୍ କରି ଗୁଣୁ ଗୁଣୁ ଗୀତଗାଇ ଚାଲିଛି...

ଭାରି ଭଲ ଲାଗିଲା ସେ ଦୃଶ୍ୟ । ବର୍ଷାର ସମ୍ଭାବନା ତାକୁ ବ୍ୟସ୍ତ କରୁନି । ବହି ଉପରୁ ଖସିପଡ଼ିବ, ସେଥିପାଇଁ ସେ ଆଦୌ ଚିନ୍ତା କରୁନି । ମୋତେ ଦେଖି ନ ଦେଖିଲାପରି ଗୁଣୁ ଗୁଣୁ ଗୀତଟିଏ (ରବୀନ୍ଦ୍ର ସଂଗୀତ ବୋଧେ !) ଗାଇ ଚାଲିଛି ମଝି ରାସ୍ତାରେ ।

ପାଖକୁ ଗଲି । ସେ ସେମିତି ଚାଲୁଥାଏ । ଭାବିଲି ଟିକେ ଦୁଷ୍ଟାମି କରିବି । ଇଂରାଜୀରେ ପଚାରିଲି –‘ଶାନ୍ତିନିକେତନରେ ସୂର୍ଯ୍ୟାସ୍ତ କେତେବେଳେ ହୁଏ ?’

‘ମୋ ଗୀତ ଯେତେବେଳ ସରିଯାଏ’ ।

ବାଃ ! କି ଚମତ୍କାର ଉତ୍ତର । ଚଉଦ/ପନ୍ଦର ବର୍ଷର ଜଣେ ଝିଅଠାରୁ ମୁଁ ଏଭଳି ପରିପକ୍ୱ, କାବ୍ୟିକ ଚିନ୍ତାଧାରା କେବେ ଆଶା କରି ନଥିଲି ।

‘ଆଚ୍ଛା ତୁମ ନାଁ କହିଲେ ତୁମର ବେଶୀ କିଛି ଅସୁବିଧା ହେବ କି ?’ ପଚାରିଲି ଇଂରାଜୀରେ ।

‘ନାଁ, ଅସୁବିଧା ଠିକ୍ ହେବନି । ମୁଁ କହିବି, କିନ୍ତୁ ଗୋଟିଏ ସର୍ତ୍ତରେ’ ଝିଅଟି ବଙ୍ଗଳାରେ ଏଥର କହିଲା ।

‘ସର୍ତ୍ତରେ ?’ ମୁଁ ପଚାରିଲି ।

ସେ କହିଲା – ‘ହଁ, ଗୋଟିଏ ସର୍ତ୍ତରେ । ସର୍ତ୍ତହେଲା ତୁମେ ତା’ ପରେ ଆଉ କିଛି ପ୍ରଶ୍ନ କରିବ ନାହିଁ, କଥାବାର୍ତ୍ତା ବି କରିବ ନାହିଁ ।’

ମୁଁ କହିଲି – ‘ଆଚ୍ଛା, ଯଦି ମୁଁ କହେ, ତୁମ ନାଁ ଜାଣିବା ମୋର ଦରକାର ନାହିଁ... ହେଲା ? କିନ୍ତୁ ତୁମ ସହ ଆଉ ଟିକେ କଥାବାର୍ତ୍ତା କରିବି ?’

ସେ ହସିଲା । ତା ହସ ଖୁବ ସୁନ୍ଦର । ବର୍ଷା ହଠାତ୍ ପଡ଼ିଲା । ମୁଁ ଭାବିଥିଲି, ସେ ଦଉଡ଼ିବ ବା ନିକଟସ୍ଥ କୌଣସି ଘରେ ପଶିଯିବ, କାରଣ, ମୁଁ ଠିକ୍ ତାହା ହିଁ କରିବି, ଭାବିଥିଲି । କିନ୍ତୁ, ସେ ଠିକ୍ ପୂର୍ବପରି ଧୀରେ ଧୀରେ ଚାଲୁଥାଏ ଓ ଗୀତ ଗାଉଥାଏ – ଏଥର ବର୍ଷାର ସଂଗୀତ, ପରିଷ୍କାର ଜଣା ପଡୁଥାଏ । ମୋତେ ଲାଜ ମାଡ଼ିଲା । ମୁଁ ତାଠୁଁ ଚାରି ପାଞ୍ଚ ବର୍ଷ ତ ନିଶ୍ଚୟ ବଡ଼ ହେବି, ଅଥଚ, ମୁଁ ବର୍ଷାରେ ଭିଜିଯିବି ବୋଲି ଡରିମରି ଆଗରେ ଗୋଟେ କାହାର ଘରକୁ ଦଉଡ଼ି ଯିବାକୁ ଭାବୁଛି । ନା, ଯିବାଟା ଠିକ୍ ହେବନି । ତା’ପରେ ଆଶ୍ଚର୍ଯ୍ୟ କଥା – ଝିଅଟି ମୋ ବିଷୟରେ ଏପର୍ଯ୍ୟନ୍ତ କିଛି ପଚାରିନି କାହିଁକି ? ତା’ର ଜାଣିବାର ଇଚ୍ଛା ନାହିଁ, ନା ମୋତେ ଆକୃଷ୍ଟ କରିବା ପାଇଁ ଏକ ନୂଆ ଉପାୟ ?

ସେ ଯା’ ହେଉ ଝିଅଟି ନିର୍ବିକାର ବର୍ଷାରେ ତିନ୍ତି ରାସ୍ତା ମଝିରେ ଚାଲିବାରେ ଲାଗିଛି । ଭାବିଲି, ମୁଁ ବି ତିନ୍ତେ, ପୁଣି ଟିକେ ଦୁଷ୍ଟାମି କରେ ତା’ ସହିତ !

‘ଆଚ୍ଛା ତମେ ନ କହିଲେ ବି ତମ ନାଁ ମୁଁ କହିଦେବି ।’

‘ଭୁଲ୍ କହିଲେ ବି ମୁଁ କିଛି ଭାବିବିନି’, ସେ କହିଲା ।

'ତା' ହେଲେ ତମ ନାଁ ଦୁଇଟି ଅକ୍ଷରରେ... ?'

'ଠିକ୍ ଅନୁମାନ କରିଛ'

'କିଛିଟା ଦେବ ଦେବୀ, କିଛିଟା ମଣିଷର ଗୁଣକୁ ନେଇ ତୁମ ନାଁ ?'

'ଏଥରକ ବି ଠିକ୍... ଇସ୍, ମୁଁ ଜାଣିଥିଲି 'ମାଇଣ୍ଡ୍ ରିଡର୍' 'ଫେସ୍ ରିଡର୍' ଥା'ନ୍ତି, କିନ୍ତୁ ମୁହଁ ଦେଖି ନାଁ କହିବା ଲୋକ ପ୍ରଥମ ଥର ଦେଖୁଛି ।'

ଉତ୍‌ଫୁଲ୍ଲିତ ହୋଇ ନାଁଟି କହିବାକୁ ଯାଉଛି, ମୋର ମନେ ପଡ଼ିଗଲା ସ୍କୁଲରେ ସଂସ୍କୃତ ଗପଟିଏ ପଢ଼ିଥିଲି – 'ଜମ୍ବୁବର୍ବର କଥା'... ମୋର ଯଦି ସେଭଳି ଅବସ୍ଥା ହୁଏ ? ନା, ନା... ରିସ୍କ୍ ନେବାର କୌଣସି କାରଣ ନାହିଁ । ଦୁଷ୍ଟାମିର ଆଉ ଗୋଟେ ଯୋଜନା ମୁଣ୍ଡରେ ପଶିଲା, କହିଲି –

'ଆଚ୍ଛା, ମୁଁ ତୁମ ସର୍ତ୍ତ ଅନୁସାରେ ତୁମ ନାଁ ପଚାରିବିନି, ତୁମେ ନିଜେ କହିଦିଅ । ତୁମ ନାଁ ଠିକ୍ ନ କହିପାରିଥିଲେ ବି ନାଁ ର ପାଖାପାଖି ଧାରଣା ତ କିଛି ଦେଇପାରିଲି, ନା ନାହିଁ ? ନ ହେଲେ କୁହ, ତୁମ ଭଉଣୀଙ୍କ ନାଁ, ମୁଁ ତୁମ ନାଁ ଟି ଠିକ୍ କହିଦେବି ।'

ସେ କହିଲା – 'ପ୍ରଥମେ ମୁଁ ଯଦି କହେ, ମୋର ଭଉଣୀ ହିଁ ନାହିଁ... ତା ନାଁ ଆସିବ କୁଆଡୁ ?'

ଗଲା, ଶରଟା ଏଥର ଲକ୍ଷ୍ୟସ୍ଥଳରୁ ଦଶଫୁଟ ଉପରକୁ ଚାଲିଗଲା । ତଥାପି ଫୁଟାଣିମାରି କହିଲି – 'ନା, ନିଶ୍ଚୟ ତମର ଭଉଣୀଟିଏ ଅଛି ।'

ହସି ହସି ସେ କହିଲା – 'ଆଶ୍ଚର୍ଯ୍ୟ ଲୋକ ତୁମେ । ଜବରଦସ୍ତ, କହିଚାଲିଛ ମୋର ଭଉଣୀ ଅଛି ବୋଲି... କହିଲେ କ'ଣ ମୋର ଭଉଣୀଟିଏ ଆସିଯିବ ?'

'ଆଚ୍ଛା ସତରେ କୁହ, ତୁମର ଭଉଣୀ ନାହିଁ ?'

ବର୍ଷା ଖୁବ୍ ଜୋର୍‌ରେ ହେଲାଣି । ଆମ ଆଗରେ ଗୋଟିଏ ବଗିଚା, ବଗିଚାକୁ ଲାଗିଛି ଗୋଟିଏ ପୁରୁଣାକାଳିଆ ଘର, ଉପରେ ଲେଖା ହୋଇଛି 'ଶାନ୍ତିନିକେତନ ପୁରୁଣା ଗେଷ୍ଟ୍‌ହାଉସ୍' । ଝିଅଟି ଇସାରା ଦେଲା ଗେଷ୍ଟ୍‌ହାଉସ୍ ଆଡ଼କୁ । ଦୁହେଁ ପଶିଲୁ ମେନ୍‌ଗେଟ୍ ଖୋଲି ଗେଷ୍ଟ୍‌ହାଉସ୍ ଭିତରେ ।

ମୁଁ ପୁଣି ଚଲେଇଲି... ଟେପ୍ ରେକର୍ଡ଼ର ଗୋଟିଏ ଜାଗାରେ ଅଟକି ଗଲେ ଯେମିତି ହୁଏ (?),

'ଆଚ୍ଛା ସତରେ – ତୁମର ଭଉଣୀ ନାହିଁ ?'

ବହିଗୁଡ଼ାକ ଭିଜିଯାଇଛି, ଝିଅଟିର ବାଳସବୁ ଓଦା, ଫ୍ରକ୍ ଓଦା, ଚଟି ଓଦା...ତଥାପି ସେ ହସୁଛି । ଏହି ହସରେ ମୁଁ ଲକ୍ଷ୍ୟ କଲି ଲୁଚି ରହିଛି କିଛିଟା ନିଜର କରିନେବାର, ଜୀବନକୁ ଅନୁଭବ ଓ ଉପଭୋଗ କରିବାର ଇଚ୍ଛା ଓ ଶକ୍ତି ।

'ମୋର ଗୋଟିଏ ଛୋଟ ଭଉଣୀ ଅଛି, ଆଉ ତା' ନାଁ ହେଲା 'କ୍ଷମା'... ହେଲା ?'

ଆବଶ୍ୟକତାରୁ ଅଧିକ ଖୁସି ହୋଇ ମୁଁ କହିଲି –

'ଏଥର ସର୍ତ୍ତ ଅନୁସାରେ ତୁମ ନାଁଟା କହିପକାଏ ?'

'ହଁ କହିପକାଅ । ଭୁଲ କହିଲେ ବି ଚଳିବ, ବୋନସ୍ ପଏଣ୍ଟିଏ ପାଇବ ।'

'ସେଇଟା ପୁଣି କ'ଣ ?' – ମୁଁ ପଚାରିଲି ।

'ମାନେ, ମୁଁ ଆଗରୁ କ'ଣ କହିଥିଲି ? ନାଁ ପଚାରିବା ପରେ ଆଉ ଯେମିତି କିଛି ନ ପଚାର । ଏବେ ବୋନସ୍ ପଏଣ୍ଟ ହେଲା – ଆଉ ପ୍ରଶ୍ନଟିଏ ପଚାରିପାର । ତମେ ଯିଏ ହୁଅ ପଛେ, ଭଲ ଲାଗିଲା ତୁମ ସହିତ ଦେଖାହୋଇ... ଆମ ଘର ଆସିଗଲା... ମୋ ବାବା ଏହି ଗେଷ୍ଟହାଉସ୍‌ର ମ୍ୟାନେଜର୍ ।'

'ଆଚ୍ଛା ମୁଁ ବି ଠିକ୍ ଜାଗାକୁ ଆସିଯାଇଛି । ତମକୁ ପ୍ରଥମରୁ ପଚାରିବାକୁ ଭାବିଥିଲି – ଗେଷ୍ଟହାଉସ୍ କେଉଁଠି ବୋଲି ।'

'ବାଏ, ପରେ ଦେଖାହେବ' କହି ଯାଉ ଯାଉ ପୁଣି ଝିଅଟି ଫେରିଆସି ପଚାରିଲା –

'ଆଚ୍ଛା ମୋ ନାଁଟି କହିଲନି ?'

ଦୁଷ୍ଟାମିର ଶେଷ ଶରଟି ଛାଡ଼ିଲି... ସୂର୍ଯ୍ୟ ଅସ୍ତପ୍ରାୟ... 'ହଁ ତୁମ ଭଉଣୀ ହେଲା... ?'

'କ୍ଷମା'

'ତା ହେଲେ ତୁମ ନାଁ, ତୁମ ନାଁ...'

'ଓହୋ, ଜଲ୍‌ଦି କୁହ... ଏତେ ଡ୍ରାମା, ଏତେ ସସ୍‌ପେନ୍ସ କାହିଁକି ?'

'ତୁମ ନାଁ – 'ଭିକ୍ଷା' ପୂରା ନାଁ 'ଭିକ୍ଷା ଦେ'

'ଇସ୍, ତମକୁ ଆଉ ପାରିହବନି,' ପଳାଇ ଯାଉ ଯାଉ ସେ କହିଲା– 'ତୁମ ଅନୁମାନ ଅଧା ଠିକ୍, ଅଧା ଭୁଲ୍, ମୋ ନାଁ ଭିକ୍ଷା ମଜୁମ୍‌ଦାର୍ ।

## ୨୮

ଶାନ୍ତିନିକେତନରେ ପ୍ରଥମ ସକାଳ । ଗେଷ୍ଟ୍‌ହାଉସ୍‌ରୁ ବାହାରି ଆସି ମୁଁ ରାସ୍ତାରେ । ରାସ୍ତା ଦୁଇକଡ଼ରେ ଖାଲି ଗଛ – ଲମ୍ୱା, ଗହଳ ଗଛ, ଧାଡ଼ି ଧାଡ଼ି ରାସ୍ତା ସହିତ । ରାସ୍ତା ଲମ୍ୱିଯାଇଛି ଦୂରକୁ, ଅନେକ ଦୂରକୁ, ମିଶିଯାଇଛି ଶେଷରେ ଦିଗ୍‌ବଳୟରେ, ଆକାଶରେ । ରାସ୍ତାରେ କେହି ନାହାନ୍ତି, ଖାଲି ମୁଁ । ଆଗକୁ ଅନେଇଲେ ଗଛ ସନ୍ଧିରେ କେଉଁଠି ଛୋଟ କୋଠାଟିଏ ତ, କେଉଁଠି ସିମେଣ୍ଟ୍ ବେଞ୍ଚିଟିଏ ।

ଚାଲୁ ଚାଲୁ ବହୁତ ବାଟ ଚାଲିଗଲିଣି । ଗୋଟିଏ ଜାଗାରେ ଦେଖିଲି ଛୋଟପିଲା – କୋଡ଼ିଏ/ ପଚିଶ ଜଣ, ମଝିରେ ଦିଦି ବସିଛନ୍ତି । ଖେଳୁଛନ୍ତି କି ପଢୁଛନ୍ତି, ଠିକ୍ ଜାଣିହେଲା ନାହିଁ । ପାଖକୁ ଗଲି... ହଁ ତ, ପଢୁଛନ୍ତି । ତିନି ଚାରିଟା ଗ୍ରୁପ୍ ହୋଇ ଯାଇଛନ୍ତି, ଗୋଟେ ଗୋଟେ ଗ୍ରୁପ୍‌ରେ ଚାରି ପାଞ୍ଚଜଣ କରି କ'ଣ ସବୁ ପଢୁଛନ୍ତି । ଦିଦି ବେଳେ ବେଳେ ଛିଡ଼ା ହୋଇ ଯାଉଛନ୍ତି, କେତେବେଳେ ବସିପଡୁଛନ୍ତି, ପୁଣି କେତେବେଳେ ପିଲାମାନଙ୍କ ପାଖରେ ତ, କେତେବେଳେ ଦୂରରେ – ଏକା... ହଳଦିଆ ଶାଢ଼ି ସହିତ ନାଲି ବ୍ଲାଉଜ୍, ସୁନ୍ଦର ମାନୁଛି, ନୀଳ ଆକାଶ ତଳେ, ସବୁଜ ପତ୍ରର ପରିସୀମା ଭିତରେ ଆହୁରି ସୁନ୍ଦର ଦିଶୁଛନ୍ତି ।

କିଛି ଆଗକୁ ଗଲାରୁ ପୁଣି ଆଉ ଗୋଟିଏ ଗଛତଳେ ଜଣେ ବୟସ୍କ ଲୋକ ମଝିରେ ବସିଛନ୍ତି, ଆଉ ତାଙ୍କ ଚାରିପାଖେ ଗୋଲାକାର ସିମେଣ୍ଟ୍ ବେଞ୍ଚ୍ ଓ ଟେବୁଲ୍‌ରେ ଘେରି ରହିଛନ୍ତି କୋଡ଼ିଏ/ ପଚିଶ ପିଲା – ବୋଧେ କଲେଜ ପିଲା, ଧଳା ପଞ୍ଜାବି କିଏ ପିନ୍ଧିଛି ତ, କିଏ ପିନ୍ଧିଚି ଚେକ୍ ସାର୍ଟ୍ । ଝିଅପିଲା ବେଶୀ । ଲାଗୁନି ସମସ୍ତେ ବଙ୍ଗାଳୀ ଝିଅ । ପାଖକୁ ଗଲାରୁ ଦେଖିଲି – ଦୁଇଜଣ ଫ୍ରାନ୍‌ସ ବା ଜର୍ମାନୀର ଝିଅ ଭଳି ଲାଗିଲେ । ଆଉ ଜଣେ ନିଃସନ୍ଦେହରେ ଜାପାନ୍‌ର । ତେବେ ଏମାନେ ସବୁ କ'ଣ ଏଠି କରୁଛନ୍ତି ? ସମସ୍ତେ କ'ଣ ଗୋଟେ କ୍ଲାସର ? ବ୍ଲାକ୍‌ବୋର୍ଡ଼ଟିଏ ଗୋଟିଏ କଡ଼କୁ ଥୁଆ ହୋଇଛି । ବୋର୍ଡ଼ରେ ଲେଖା ହୋଇଛି : 'ରବୀନ୍ଦ୍ରନାଥ, ନନ୍ଦଲାଲ୍ ବୋଷ୍, ଅବନୀନ୍ଦ୍ରନାଥ...' ଭାବିଲି ପେଇଣ୍ଟିଂ କ୍ଲାସ ହୁଏତ ଚାଲିଛି । କିନ୍ତୁ ସେଥିପାଇଁ ତ 'କଳାଭବନ' ଅଛି... ଏଠି ଗଛତଳେ କ'ଣ ହେଉଛି ? ବୋଧେ ଥିଓରି କ୍ଲାସ । ବାଁ କଡ଼କୁ ଗୋଟେ ବଡ଼ କୋଠା ନଜରରେ ପଡ଼ିଲା – ଲାଇବ୍ରେରୀ ବୋଧେ ! ଭିତରକୁ ଗଲିନି । ମୁଁ ତ ଏ ପର୍ଯ୍ୟନ୍ତ ଶାନ୍ତିନିକେତନର ଛାତ୍ର ହୋଇନି, ମୋତେ କ'ଣ ଭିତରକୁ ଛାଡ଼ିବେ ? ଉପର ମହଲାକୁ ଅନେଇଲି – ଗୁଡ଼ାଏ ପୁଅଝିଅ ବାଲ୍‌କୋନିରେ ଫୁସ୍‌ଫାସ୍ ହେଉଛନ୍ତି । ଭାବିଲି, ଏଠି ବୋଧେ ବଡ଼ ପାଟିରେ କଥା ହେବାକୁ ମନା । ଗୋଡ଼ରେ ଅଧିକାଂଶ ପିଲାଙ୍କର ଚଟି ବା ଜୋତା ନାହିଁ । ଏ ପୁଣି କଣ ? କବି-କବିଭାବ୍,ନା ଏଠିକା

ନିୟମ ? ନିଜ ଗୋଡ଼କୁ ଅନେଇଲି... ସ୍ୟାଣ୍ଡେଲ୍ ରଙ୍ଗ ଗଲାଣି... କିନ୍ତୁ ଚାଲିଛି ଠିକ୍ । ସେ ଦୁଇଟାକୁ କ'ଣ ହାତରେ ଧରି ଚାଲିବି, ନା ଯେମିତି ପିନ୍ଧିଛି, ସେମିତି ପିନ୍ଧିବି ? ଯଦି କିଏ କ'ଣ କହିବ ? ନା, ଦର୍ଶକ/ଟୁରିଷ୍ଟ ଭାବି ନ କହିବି ପାରେ ? ପୁଣି ବାଲ୍‌କୋନି ଆଡ଼କୁ ଅନେଇଲି ମୋ ଆଡ଼କୁ କାହାର ଦୃଷ୍ଟି ନାହିଁ । 'ଭଲ ହେଲା', ଭାବିଲି । ଏକ ନୂଆ ଜାଗାରେ, ନୂଆ ପରିବେଶରେ– ସମ୍ପୂର୍ଣ୍ଣ ଅପରିଚିତ ହେବାର ସୁଯୋଗର ସଦ୍‌ବ୍ୟବହାର କରାଯାଉ । କାହାକୁ କିଛି ନପଚାରି ନିଜେ ନିଜେ ବାହାର କରେ କେଉଁଟା, କେଉଁଠି । ଆଗ ତ ସେଣ୍ଟ୍ରାଲ୍ ଅଫିସ୍ ଆଡମିଶନ୍ କାଉଣ୍ଟର୍‌କୁ ଯିବାକୁ ପଡ଼ିବ । ତାପରେ ଇଂଗ୍ଲିସ୍ ଡିପାର୍ଟମେଣ୍ଟ କେଉଁଠି ବାହାର କରିବାକୁ ପଡ଼ିବ । ମୁଁ ନୂଆ, ମୋ ପାଖରେ ଅନ୍ୟ ସମସ୍ତେ ନୂଆ... କିନ୍ତୁ ଏହି ସ୍ଥାନଟି ସହିତ, ଲାଗୁଛି ଯେମିତି ବହୁ କାଳର ପରିଚୟ । ପଡ଼ିଆ ପରେ ପଡ଼ିଆ, ଗଛ ପରେ ଗଛ, ଆକାଶ ଚାରିଆଡ଼େ ଭିଡ଼ି ରହିଛି, ଯେଉଁଠି ଅନେଇଲେ ବି ଫାଙ୍କେ ଦିଶିଯାଉଛି ।

ପ୍ରକୃତିକୁ ନିଜର କରିନେବା ପୂର୍ବରୁ, ଭଲ ପାଇବା ପୂର୍ବରୁ କାହିଁକି ଆପେ ଆପେ ସେ ଅନାୟାସରେ ନିଜର ହୋଇଯାଏ ? ଅଥଚ୍, ମଣିଷକୁ ନିଜର କରିବା ପାଇଁ, ଭଲ ପାଇବା ପାଇଁ କେତେ କଷ୍ଟ, କେତେ ବୁଝାମଣା ସହ୍ୟ କରିବାକୁ ପଡ଼େ । ମଣିଷ ଓ ପ୍ରକୃତି ଭିତରେ ପାର୍ଥକ୍ୟ ତା'ହେଲେ ଏୟା ?

ଆକାଶରେ ଗୋଟାଏ କୋଣରେ କଳା ମେଘ କିଛି ଜମିଗଲାଣି... ଅଳ୍ପ କିଛି ସମୟ ଆଗରୁ ଆକାଶ ତ ପରିଷ୍କାର ଥିଲା, କ'ଣ ହେଲା ? କୁଆଡୁ ଆସିଲା ଏ' ମେଘ ? ସ୍କୁଲ ଜୀବନର ସେଇ ଘଟଣାଟି ମନେ ପଡ଼ିଗଲା - 'ବର୍ଷା ଲାଗି ସ୍କୁଲ ବନ୍ଦ' ବୋଲି ହେଡ୍‌ମାଷ୍ଟରଙ୍କ ଅକ୍ଷରକୁ ନକଲ କରି ଅବ୍‌ଦୁଲ୍ ସ୍କୁଲରେ ସେଦିନ ଲେଖି ଦେଇଥିଲା – ସବୁପିଲା 'ଛୁ' । ହେଡ୍‌ମାଷ୍ଟର ଆସିଲାବେଳକୁ ସ୍କୁଲରେ କୁକୁର କେଇଟା ଖାଲି ବୁଲୁଛନ୍ତି । ସେ ବିରକ୍ତ ହେଲେ । ପିଅନ ଓ ଷ୍ଟାଫ୍ ଉପରେ ଗାଳି । ବାହାରେ ବର୍ଷା, ସ୍କୁଲ ଅଫିସ୍ ଭିତରେ ବର୍ଷା – କି ମଜା ହେଲା ! ମୁଁ ବି ଜାଣିନଥିଲି, କାହାର ମୁଣ୍ଡରୁ ଏତେ ବଡ଼ ଗୁରୁତ୍ୱପୂର୍ଣ୍ଣ, ସୂକ୍ଷ୍ମ ଯୋଜନାଟି ବାହାରିଛି । ବର୍ଷେଖଣ୍ଡେ ପରେ ଅବ୍‌ଦୁଲ୍‌ହିଁ ନିଜେ ମୋତେ ଘଟଣାଟିକୁ ସରଳ କରି କହିଦେଇଥିଲା । ସବୁ ବୁଝିଲାପରେ ଗୋଟିଏ କଥା ଅବୁଝା ରହିଯାଇଥିଲା, ଆଲ୍‌ଜେବ୍ରାରେ ଫ୍ୟାକ୍ଟରାଇଜ୍ କଲାବେଳର ଧାଡ଼ିଟିଏ ପରି – ସମ୍ପୂର୍ଣ୍ଣ, ସଠିକ୍ ବାକ୍ୟଟିଏ ଲେଖିଲା କିପରି ଅବ୍‌ଦୁଲ୍ – ସବୁ କ୍ଲାସରେ, ସବୁ ବିଷୟରେ ଫେଲ୍‌ହେବା ରେକର୍ଡ଼କୁ ଯାହାର କେହି ଭାଙ୍ଗିପାରି ନଥିଲେ ?

ବର୍ଷା କେତେ ଟୋପା ପଡୁ ପଡୁ ମୋ'ର ମନେ ପଡ଼ିଗଲା କାଲି ସନ୍ଧ୍ୟାର ଝିଅଟି କଥା । କ'ଣ ନାଁ ଟି କହିଥିଲା ? କଷ୍ଟିଆ ନାଁ ଟି ? ହଁ... ଭିକ୍ଷା... ଭିକ୍ଷା ମଜୁମ୍‌ଦାର । ସିଏ ତ କୋଉଠି ଗୋଟେ କ୍ଲାସ କରୁଥିବ । କ'ଣ ପଢୁଛି, ପଚାରିଲିନି ତ ? ନିଶ୍ଚେ ସ୍କୁଲରେ

ପଢୁଥିବ । ସ୍କୁଲ ସେକ୍‌ସନ୍‌କୁ ଏଠି ବୋଧେ କହନ୍ତି 'ପାଠଭବନ'... । କଲେଜରେ ବି ପଢୁଥାଇପାରେ । ସୁନ୍ଦର ଭାବେ ସଜେଇ କଥା କହୁଥିଲା, କୁଆଡ଼େ ଥିବ କେଜାଣି ?

ଭୋକ ଲାଗିଲାଣି । ୟୁନିଭର୍ସିଟି କ୍ୟାଣ୍ଟିନ୍ ତ ନିଶ୍ଚୟ କେଉଁଠି ଥିବ ! ବୁଢ଼ା ଭଦ୍ରଲୋକ ଜଣେ ମୋରି ଆଡ଼କୁ ମାଡ଼ି ଆସୁଚନ୍ତି । ଭାବିଲି ପଚାରିବି । ତା ପରେ ଭାବିଲି, ନାଇଁ ଥାଉ ! ଆଉ ଟିକେ ଚାଲେ । ସବୁ ରାସ୍ତା ଗୁଡ଼ିକ ସିଧା, ବଙ୍କିଲାବେଳେ ବି ନବେ ଡିଗ୍ରୀରେ... ଟେଢ଼ା ମେଢ଼ା ରାସ୍ତା ନାହିଁ । ଆଶ୍ଚର୍ଯ୍ୟ !

ଶେଷରେ ଠିକ୍ ଜାଗାରେ ପହଞ୍ଚିଗଲି । ତିନି ଚାରିଟା ଜାଗାରେ ପିଲାମାନେ ବସିଛନ୍ତି । କ୍ୟାଣ୍ଟିନ୍ । ବାହାରେ କିଛି, ଭିତରେ କିଛି... ପୁଅ, ଝିଅ... ଝିଅ, ପୁଅ – ଦେଖିବାକୁ ଭଲଲାଗିଲା । ଥୋଡ଼େ ଇଂରାଜୀରେ, ଥୋଡ଼େ ବଙ୍ଗଳାରେ କଥାବାର୍ତ୍ତା ହେଉଛନ୍ତି । ଫ୍ୟାନ୍ ତଳେ ଗୋଟେ ଖାଲି ଜାଗା ଖୋଜୁ ଖୋଜୁ ପାଇଗଲି, ନଥିକିନା ବସିପଡ଼ିଲି । ଆଃ କି ଆରାମ ! ଚାଲି ଚାଲି କେତେଟା କ୍ଲାନ୍ତ ହୋଇଯାଇଥିଲି, ଏବେ ବୁଝିପାରିଲି । କିଛି ସମୟ ବସିଲା ପରେ ବି କେହି ପାଖକୁ ଆସିଲେନି, କ'ଣ ଖାଇବି କେହି ପଚାରିଲେନି । ଅନେଇଲାରୁ ଦେଖିଲି ଗୋଟେ ଟେବୁଲ୍ ଉପରେ ଏକ କାଠଫଳକରେ ଲେଖା ହୋଇଛି 'ମ୍ୟାନେଜର୍' । ପାଖ ଚେୟାର୍‌ରେ ଧଳା ହାଫ୍ ଶାର୍ଟ୍ ଓ ଧୋତି ପିନ୍ଧି ପିଲାଟେ ବସି ମୁରୁକି ହସୁଛି । ଭଲକରି ଦେଖିଲାରୁ ଲାଗିଲା ସେ 'ପିଲା' ନୁହଁ, ମଧ୍ୟବୟସ୍କ ଲୋକଟିଏ, ଅନ୍ତତଃ ମୋଠୁଁ ବେଶ ବଡ଼ – ଜଣେ ସ୍କୁଲ ପିଲାର ଶାରୀରିକ ଗଠନ । ଲାଗିଲା – କଷ୍ଟେମଷ୍ଟେ ଚଳି ସ୍କୁଲ କେମିତି କ'ଣ ଗୋଟେ ପାଶ୍ କରି, କାହାକୁ ନିଶ୍ଚେ ଧରାଧରି କରି ଟେମ୍ପରାରି ଚାକିରିଟିଏ ଭଦ୍ରଲୋକ ଯୋଗାଡ଼ କରି ପାରିଛନ୍ତି ।

ଭାବିଲି ଉଠିକି ଯାଇ ପଚାରିବି, କିନ୍ତୁ ମୋ' ଚେୟାର୍ ଛାଡ଼ି ଯଦି ଯାଏ, ଆସିଲା ବେଳକୁ କେହି ଆସି ବସିଯାଇଥିବ ବା ଚେୟାର୍‌ଟିକୁ ବାହାରକୁ, ଲନ୍‌କୁ ଘୋସାରି ଘୋସାରି ନେଇଯାଇଥିବ ? ପିଲାଗୁଡ଼ା ଉତ୍‌ପାତିଆ ଜଣାପଡୁଛନ୍ତି, ସବୁ କିଛି ସମ୍ଭବ, ଏଠି, ଲାଗୁଛି । ତେବେ ବସି ରହିଲେ କ'ଣ ହେବ ? କେହିତ ଆସୁନାହାନ୍ତି ମୋ' ଆଡ଼େ । ପୁଣି ଅନେଇଲି ମ୍ୟାନେଜର୍ ଆଡ଼କୁ । ଇସାରା ଦେବା, କାହାକୁ ଗୋଟେ ସେ ମୋ ପାଖକୁ ପଠେଇବେ । ଏୟା ଭାବୁଛି, ଦେଖିଲି 'ମ୍ୟାନେଜର୍' ଲେଖା ହୋଇଥିବା ଫଳକରେ ଲେଖାହେଇଛି – 'ସେଲ୍‌ଫ୍ ସର୍ଭିସ୍' । ଜୋରରେ ହସି ପକେଇଲି ଯେତେବେଳେ ଆବିଷ୍କାର କଲି କାଠଫଳକଟିର ଦୁଇ ପାଖରେ ଭିନ୍ନ ଭିନ୍ନ ଦୁଇଟି ଶବ୍ଦ ଲେଖାହୋଇଛି – 'ମ୍ୟାନେଜର୍' ଓ 'ସେଲ୍‌ଫ୍ ସର୍ଭିସ୍' । ବରହମ୍‌ପୁର୍ କଥା ମନେ ପଡ଼ିଗଲା – ସାଉଥ୍ ଇଣ୍ଡିୟାନ ହୋଟେଲ୍‌ରେ ଯେମିତି ସେଠି ଏକ କାଠ ଫଳକରେ ଗୋଟିଏ ପାଖରେ ଲେଖା ହୋଇଥାଏ 'ମିଲ୍‌ସ୍ ରେଡି', ଆଉ ଅନ୍ୟପାଖରେ 'ଟିଫିନ୍ ରେଡ଼ି' । କାଠଫଳକଟି 'ଟୁ-ଇନ୍-ୱାନ୍'ର କାମ କରେ ।

ଶେଷରେ ଉଠି ଛିଡ଼ା ହେଲି । ମ୍ୟାନେଜର୍ ଟିକେ ମୁରୁକି ହସି ମୋତେ ପାଖକୁ ଡାକିଲେ । ତାଙ୍କ ହସରୁ ବୁଝିପାରିଲି ସେ ଲୋକଜଣକ ପୁରା କେବେ ହସି ନାହାନ୍ତି ବୋଧେ । ମାନେ ହସିପାରନ୍ତିନି କେବେ – ଅଭ୍ୟାସରୁ, ବା ଅଭାବରୁ !

ଖୋଲାହସଟିଏ କେତେଜଣ ହସିପାରନ୍ତି ? ମନରେ ବସା ବାନ୍ଧିଥିବା ଆବର୍ଜ୍ଜନା ଓ ଦୁଃଖକୁ ସମ୍ପୂର୍ଣ୍ଣ ଭୁଲି ଖୋଲା ହସଟିଏ କେତେ ଜଣ ହସିପାରନ୍ତି ?

ସମୀକ୍ଷା ହସିପାରୁଥିଲା ।

ଆଚ୍ଛା, 'ଗ୍ଲୋବ୍' ସିନେମା ହଲ୍‌ରେ ସେ ଅର୍ସନ୍ ଉଏଲ୍‌ସ୍‌ଙ୍କ 'ସିଟିଜେନ୍ କେନ୍' ଦେଖିଲାବେଳେ ଏତେ ନୀରବ ହୋଇ ଯାଇଥିଲା କାହିଁକି ? ହଲ୍ ଭିତରେ ଆମେ କାହିଁକି ସେଦିନ ଦୁଇଜଣ ଅପରିଚିତ ପୁଅ ଓ ଝିଅ ପରି ବସିଥିଲୁ ? ଚିଲିକାକୂଳର ସ୍ମୃତିରେ ଏବେ ବି ଉଷ୍ଣତା ରହିଛି – ଅନ୍ତତଃ ମୋ' ମନରେ, କିନ୍ତୁ ସମୀକ୍ଷା କଥା ? ତାର ଦୁର୍ବଳତା – ମାନସିକ, ନା ଶାରୀରିକ ? ମୋତେ ବେଳେ ବେଳେ ଲାଗେ ସମୀକ୍ଷା ସୁନ୍ଦର ଝିଅଟେ, ମନରେ ଓ ତାର ଶରୀର ଭିତରେ ବିଭିନ୍ନ ସୌନ୍ଦର୍ଯ୍ୟ ବିଞ୍ଚି ହୋଇପଡ଼ିଛି – ଅନୁଭବ କରିବାର କଥା, ଗୋଟେଇ ସାଉଁଟି ରଖିବାର କଥା । ଏସବୁ ସତ୍ତ୍ୱେ, ସମୀକ୍ଷାକୁ ଭଲ ପାଇହେବ – ଭଲ ସାଙ୍ଗଟିଏ ପରି, କିନ୍ତୁ ପ୍ରେମ କରିହେବନି । ସମୀକ୍ଷା ବି ବୋଧେ କାହାକୁ ପ୍ରେମ କରିନି । ସମୀକ୍ଷାମାନେ ପ୍ରେମ କରି ପାରନ୍ତିନି, କିନ୍ତୁ ପ୍ରଚୁର ଭଲପାଇପାରନ୍ତି, ଦୁଃଖ ବେଳେ ହାଜର ହୋଇଯାନ୍ତି । ଆମେ ଆମ ଏକାକୀତ୍ୱ ଓ ଦୁଃଖ ଭୁଲିଯାଉ, କିଛି ସମୟଲାଗି,ପୁରା ଭୁଲିଯାଉ କିଛି ସମୟଲାଗି ।

ସେହି 'କିଛି ସମୟ' ହେଉଛି ସମୀକ୍ଷା–ଅନ୍ୟ ସମୟଠାରୁ ଭିନ୍ନ, ଅନ୍ୟ ଝିଅଠାରୁ ଭିନ୍ନ । ପୁଣି ଥରେ ନୂଆ କରି ମୁଁ ବଞ୍ଚିବାକୁ ଆରମ୍ଭକରେ ଯେତେବେଳେ ସେ ଆସେ ।

ଏ ଭିତରେ ମୁଁ କ୍ୟାଣ୍ଟିନ୍ ମ୍ୟାନେଜର୍‌ଙ୍କ ପାଖରେ ପହଞ୍ଚିଗଲିଣି । ବଙ୍ଗଳାରେ ପଚାରିଲେ, କଣ ମୁଁ ଶାନ୍ତିନିକେତନରେ 'ନୂଆ ?' ଏତିକି ବେଳେ ଦେଖିଲି ଜଣେ ପ୍ୟାଣ୍ଟ୍ ଓ ପଞ୍ଜାବିପିନ୍ଧା ପଚିଶି/ତିରିଶ ବର୍ଷର ଯୁବକ ମୋ ଚଉକି ଦଖଲ କରିନେଲେଣି । ଆଉ ଥୋଡ଼ାଏ ପିଲା କ୍ୟାଣ୍ଟିନ୍ ବାହାରେ ଭିଡ଼ କଲେଣି । ଟୋଷ୍ଟ୍ ତାରୋଟି ଓ ଚା' କପେ ଧରି ମୁଁ ମୋ ଟେବୁଲ୍ ପାଖରେ ପହଁଚିଲାବେଳକୁ ଯୁବକଜଣକ ଉଠି ପଡ଼ି କହିଲେ – 'ସରି...'

'ଠିକ୍ ଅଛି... କିଛି ଅସୁବିଧା ହୋଇନି' ମୋ ପାଟିରୁ ବାହାରି ପଡ଼ିଲା । ସାଙ୍ଗେ ସାଙ୍ଗେ ଖାଲି ହୋଇଥିବା ଚଉକିଟିକୁ ପାଖ ଟେବୁଲ୍ ପାଖରୁ ଟାଣି ଆଣି ବସି ପଡ଼ିଲି ।

କ୍ୟାଣ୍ଟିନ୍ ଭିତରର ପରିସ୍ଥିତି ମୋତେ ଲାଗିଲା କଲେଜ ସ୍ପୋର୍ଟସ୍‌ରେ ମ୍ୟୁଜିକ୍ ଚେୟାର୍ ପ୍ରତିଯୋଗିତା ପରି । ଖାଲି ମ୍ୟୁଜିକ୍ ବଦଳରେ ହୋ ହୋ... ସେ ଯା' ହେଉ ଭଲ ହେଲା । ଯୁବକବନ୍ଧୁଙ୍କ ନାଁ ଜୟଶୀଲନ୍ – କେରଳର । ବିଶ୍ୱଭାରତୀରେ ଇଂରାଜୀ ବିଭାଗରେ ରିସର୍ଚ୍ଚ ସ୍କଲାର୍ । ମୋ' ବିଷୟ ଜାଣି ନିଜେ ଡିପାର୍ଟମେଣ୍ଟକୁ ନେଇଗଲେ । ଦୁଇମହଲା ଉପରେ ଇଂରାଜୀ ଓ ଜର୍ମାନୀ ଭାଷାର ମୁଖ୍ୟ ଡଃ ସେନ୍ ବସନ୍ତି ଓ ସେଇଠି କ୍ଲାସ ନିଅନ୍ତି । ଅଦ୍ଭୁତ ସିଷ୍ଟେମ୍ ! ସିନିୟର୍ ପ୍ରଫେସର ସବୁ ତାଙ୍କ ନିଜ ନିଜ ରୁମ୍‌ରେ କ୍ଲାସ ନିଅନ୍ତି । ଅସୁବିଧା ହୁଏନି ଯେହେତୁ ପିଲାଙ୍କ ସଂଖ୍ୟା କମ୍ । ହଷ୍ଟେଲ ସିଟ୍ ଯେତିକି, ୟୁନିଭର୍ସିଟିରେ ସିଟ୍ ସେତିକି । ଗଣିତ, ବଙ୍ଗଳା ବିଭାଗ ବ୍ୟତୀତ ଆଉ ସବୁ ଡିପାର୍ଟମେଣ୍ଟରେ ସୀମିତ ସ୍ଥାନ ସଂଖ୍ୟା ।

ଡଃ ସେନ୍ କେମ୍ବ୍ରିଜ୍‌ରୁ ଡକ୍ଟରେଟ୍, (ବାପା ଦିନେଶ୍ ସେନ୍, ବଙ୍ଗଳା ସାହିତ୍ୟର ବିଶିଷ୍ଟ ସମାଲୋଚକ)... ଲମ୍ବା ହୋଇ ଲୋକଟେ, ସବୁବେଳେ ପାଟିରେ ଚାର୍ମିନାର୍ ସିଗାରେଟ୍, ଟେବୁଲ୍ ଡ୍ରୟର୍‌ରେ ଦଶ/ବାର ପ୍ୟାକେଟ୍ ଚାର୍ମିନାର୍ ସବୁବେଳେ ଷ୍ଟକ୍ ଥାଏ । ସୁଟ୍ ସବୁବେଳେ ପିନ୍ଧନ୍ତି ଡଃ ସେନ୍ । ଅଫିସ୍‌ରେ ମୋ' ମାର୍କଲିଷ୍ଟ୍ ଦେଖି ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟ୍ କହିଲେ – 'ତୁମର ଦୁଇବର୍ଷିଆ ଅନର୍ସ କୋର୍ସ, ପୁଣି ଛ' ଶହ ନମ୍ବର କେବଳ, ଏଠିତ ତିନିବର୍ଷିଆ ଅନର୍ସ, ଆଉ ମୋଟ ନମ୍ବର ହେଲା ଆଠ ଶ'; ଏମ୍.ଏ. ସିଲେକ୍‌ସନ କେମିତି ହେବ ? ତୁମେ ଗୋଟେ କାମ କର । ଡିପାର୍ଟମେଣ୍ଟ ହେଡ୍, ହେଇ ଉପରେ, ବାରଣ୍ଡାରେ ତାଙ୍କୁ ଦେଖାକର ଓ ସେ' ଯଦି ତୁମ ଆପ୍ଲିକେଶନ୍ ଫର୍ମରେ ରେକମେଣ୍ଡ୍ କରିଦେବେ, ତା'ହେଲେ ତୁମର ଏମ୍. ଏ. କ୍ଲାସରେ ଆଡ୍‌ମିଶନ୍ ହେଇଯିବ । ଜଲ୍‌ଦି କର, ନ'ହେଲେ ହଷ୍ଟେଲରେ ଯେଉଁ ଗୋଟେ ଦିଟା ସିଟ୍ ଖାଲି ଅଛି, ସେତକ ଯିବ । ଅନ୍ୟ ଡିପାର୍ଟମେଣ୍ଟବାଲା ମେରିଟ୍ ଲିଷ୍ଟ୍‌ରେ ମାଡ଼ିବସିବେ । ଅନେକ ଆପ୍ଲାଇ କରିଛନ୍ତି, କିନ୍ତୁ ଏ ପର୍ଯ୍ୟନ୍ତ ଆସିନାହାନ୍ତି । ତେଣୁ ଶୀଘ୍ର କର ।'

ବୁଢ଼ାଲୋକ ଜଣକ ଆରାମ୍‌ରେ ବଙ୍ଗଳାରେ କହିଗଲେ । ମୁଁ ପ୍ରାୟ ସବୁ ବୁଝିଗଲି, କହିପାରୁ ନଥାଏ ଯଦିଓ । ତେବେ ମୋର କିଛି କହିବାର ଆବଶ୍ୟକତା ନଥିଲା । ଆସ୍ତେ ଆସ୍ତେ ମୁଁ ଅନୁଭବ କଲିଣି, କମ୍ କହିବା ଭଲ – ସ୍ୱାସ୍ଥ୍ୟ ପକ୍ଷେ ଓ ନିଜର ଭବିଷ୍ୟତ ପାଇଁ ମଧ୍ୟ । ଅନ୍ୟ ଜଣଙ୍କୁ ସବୁବେଳେ କହିବାକୁ ଦିଅ । ତାଙ୍କର ସବୁକଥା ଶୁଣିବା ଦରକାର ନାହିଁ,କାରଣ ସେଇ କଥାଗୁଡ଼ା ସେ ଦୋହରେଇବେ, ପୁଣି କହିବେ । ତେଣୁ ଶୁଣନି, ଖାଲି ଶୁଣିବାର ଛଳନା କର । ସେ ବହୁତ ଖୁସିହେବେ । ତୁମ ନୀରବତାକୁ ସମ୍ମତି ଭାବି ଖୁସିହେବେ ।

କିନ୍ତୁ ଏଇଠି ନୈତିକ ପ୍ରଶ୍ନଟିଏ ମୋତେ ବିବ୍ରତ କରେ । ଶୁଣିବ... ଠିକ୍ ଅଛି । କିନ୍ତୁ ଯଦି ସେ ଲୋକଟି ବେକାର, ସ୍ୱାଦହୀନ, ସମସ୍ତେ ଜାଣିଥିବା କଥାଟି ଅତି ଉତ୍ତେଜନାର ସହିତ କହିଚାଲେ ? ଡେଲ୍ କାର୍ଣ୍ଣେଗୀଙ୍କ ପିଲାଦିନେ ପଢ଼ିଥିବା ବହି 'ହାଓ ଟୁ ଉଇନ୍ ଫ୍ରେଣ୍ଡସ୍ ଯାଣ୍ଡ୍ ଇନ୍‌ଫ୍ଲୁଏନ୍ସ୍ ଦେମ୍' ମନେପଡ଼େ । ନାଇଁ ଥାଉ । କିଛି କାହାକୁ ପ୍ରଭାବିତ କରିବା ଦରକାର ନାଇଁ । ବନ୍ଧୁ ... ବନ୍ଧୁ ଶହ ଶହ... ଶାର୍ଟ୍ ଭଳି... ସେମାନଙ୍କୁ ମେଣ୍ଟେନ୍ କରିବା କଷ୍ଟକର – ମାନସିକ ଓ ବଜେଟୀୟ, ଉଭୟ ସ୍ତରରେ । ଅନେକ ସମୟରେ ମୁଁ ଚେଷ୍ଟା କରିଛି, ଯାହା ଭାବୁଛି କାହାକୁ ନ କହି, ଯାହା ସୁବିଧା, ଯାହା ଅନ୍ୟକୁ ଶୁଣିବାପାଇଁ, ବିଶ୍ୱାସ କରିବା ପାଇଁ ଭଲ ଲାଗେ -- ତାହାହିଁ କହିବି । ଚେଷ୍ଟା କରିଛି । କିନ୍ତୁ ସବୁବେଳେ ପାରେନି । ଆଉ ଗୋଟିଏ କଥା ହେଲା – କେତେ ଜଣଙ୍କ ପାଖରେ ନିଜ ମନକୁ ସମ୍ପୂର୍ଣ୍ଣ ଲଙ୍ଗଳା କରିହେବ ? ହୁଏତ ସମୀକ୍ଷା ପାଖରେ ? ତା'ପରେ ଆଉ କିଏ ? ବାପାଙ୍କ ପାଖରେ ? ନା । ଏଇଥିରୁ ଜାଣିଲି ମୋର ପ୍ରକୃତରେ ସାଙ୍ଗ କେତେଜଣ ଅଛନ୍ତି ? ଜଏଶୀଲନ୍ ସହିତ ଦେଖା ଅଧଘଣ୍ଟାର, କିନ୍ତୁ ଯେ' କଣ ମୁଁ ଗପିଚାଲିଛି... କେତେ କଥା – ହୃଦୟ ଭିତରେ, ମନ ଭିତରେ ଲୁଚେଇ ରଖି, ପରେ ଭୁଲି ଯାଇଥିବା, କେତେ ସ୍ମୃତିର ଦଂଶନ, ଧ୍ୱଂସ ଓ ପୁନର୍ଜନ୍ମର କଥା ।

ଠିକ୍ କଲି ଜୟଶୀଲନ୍‌କୁ ମୁଁ 'ଜୟ୍' ଡାକିବି – ଭଲ ଶୁଭୁଛି, ଭଲ ଲାଗୁଛି । କିନ୍ତୁ ସେ ଯେ ମୋଠୁଁ ସିନିୟର୍ ? ପୁଣି ଯାହା ଜଣାପଡୁଛି – ହେମିଂଓ୍ୱେ ଉପରେ ଏମ୍.ଲିଟ୍. କରିଛନ୍ତି, ଆମେରିକାନ୍ ନଭେଲ୍ ଉପରେ କ୍ଲାସ ବି ନେଇ ପାରନ୍ତି... ତା'ହେଲେ ? 'ଚଳିବ' ତାଙ୍କୁ ପଚାରିଲାରୁ ସେ ନିଜେ ହିଁ କହିଲେ । ପାଶ୍ଚାତ୍ୟ ସାହିତ୍ୟ ଓ ସମାଜରେ 'ଚଳେ' ବୋଲି ବୋଧେ କହିଲେ । ମୋତେ କିନ୍ତୁ ବେଶ୍ ଅଡୁଆ ଅଡୁଆ ଲାଗୁଥାଏ – ଡାକି ଚାଲିଥାଏ ଯଦିଓ । ଏ ଭିତରେ ଗୁଡ଼ାଏ ଇଂଲିଶ୍ ଡିପାର୍ଟମେଣ୍ଟ ଝିଅ ଆସି ଜୟ୍ ପାଖରେ ଜୁଟିଗଲେଣି । ମୋତେ ସିଏ ଇଂଟ୍ରୋଡ୍ୟୁସ୍ କରିବାକୁ ଖୋଜିଲାବେଳେ ମୁଁ ଖସିଗଲି, ଆସ୍ତେ ଉପର ମହଲାକୁ – ଡଃ ସେନ୍‌ଙ୍କ ରୁମ୍‌କୁ । ସେକ୍ସପିୟର୍‌ଙ୍କ ବିଷୟରେ, ବେକେଟ୍‌ଙ୍କ ବିଷୟରେ, ରବୀନ୍ଦ୍ରନାଥଙ୍କ ବିଷୟରେ – ତିନି ଚାରୋଟି ପ୍ରଶ୍ନ ପଚାରିଲା ପରେ – ଉତ୍ତର କ'ଣ ତାଙ୍କୁ ଭଲ ଲାଗିଲା, ଠିକ୍ କେତେ ଭଲ ଲାଗିଲା, କେତେ ଭଲ ଲାଗିଲାନି, ମୁଁ ମନେ ମନେ ଭାବୁଥାଏ – ସେ ମୋ ଫର୍ମରେ ତାଙ୍କ ସ୍ୱୀକୃତି ଦେଇଦେଲେ ।

ବୋଲ୍‌ପୁର (ଶାନ୍ତିନିକେତନ) ଷ୍ଟେସନ୍‌ରେ ପହଞ୍ଚିବାର ଚବିଶଘଣ୍ଟା ଭିତରେ ମୁଁ ଭାରତର ପୁରାତନ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ତଥା ଆନ୍ତର୍ଜାତିକ ସ୍ୱୀକୃତି ପାଇଥିବା ଗୁରୁଦେବ ରବୀନ୍ଦ୍ରନାଥଙ୍କ 'ବିଶ୍ୱଭାରତୀ'ର ଛାତ୍ର ହୋଇଗଲି ।

## ୨୯

'ବିଦ୍ୟାଭବନ ହଷ୍ଟେଲ'ରେ କେବଳ ଏମ୍.ଏ. ଓ ଏମ୍.ଏସ୍.ସି. ପିଲା ରହନ୍ତି । ଏମ୍.ଏସ୍.ସି. ପୁଣି ଖାଲି ଗଣିତରେ, ଅନ୍ୟ ବିଷୟରେ ନାହିଁ । ଆଶ୍ଚର୍ଯ୍ୟ ଲାଗିଲା, ଅନ୍ୟ ବିଷୟରେ ନଥିବାର କାରଣ କୁଆଡ଼େ ଏଠି ଖାଲି କଳା, ସାହିତ୍ୟର ଶିକ୍ଷା ଓ ବିକାଶ, ପ୍ରତିଷ୍ଠାତା ଗୁରୁଦେବ ଚାହୁଁଥିଲେ – ବିଜ୍ଞାନର ନୁହେଁ । ବିଶ୍ୱଭାରତୀର ଆଚାର୍ଯ୍ୟ ଶ୍ରୀମତୀ ଇନ୍ଦିରା ଗାନ୍ଧି ମଧ୍ୟ କୁଆଡ଼େ ସେୟା ଚାହୁଁଥିଲେ । ମୁଁ ଏହି ଥିଓରିରେ ବିଶ୍ୱାସ କଲିନାହିଁ । କିଛି କରିବାକୁ ହେବ, ଭାବିଲି । ଗୋଟେ ଇଣ୍ଟରନ୍ୟାସ୍‌ନାଲ୍ ୟୁନିଭର୍ସିଟି, ଅଥଚ ଏଠି ସାଇନ୍ସ୍‌ରେ ପି.ଜି. ଓ ରିସର୍ଚ୍ଚ ବିଭାଗ ନାହିଁ ?

ଜୟ୍ ଛଡ଼ା ଆଉ ଜଣଙ୍କ ଆଡ଼କୁ ପ୍ରଥମ ସାକ୍ଷାତରେ ହିଁ ମୁଁ ଟାଣି ହୋଇଗଲି – ସିଏ ସିଲଂର ପିଲାଟେ । ସେଦିନ ହଷ୍ଟେଲ ପ୍ରାୟ ଖାଲି, କ୍ଲାସ ଆରମ୍ଭ ହୋଇନି । ସେ ଆଡ଼୍‌ମିଶନ୍ ନେଇ ରହିଯାଇଛି । ତା'ରି ରୁମ୍ ପାଖରେ ମୋତେ ରୁମ୍ ଦିଆଯାଇଥିଲା । ମୁଁ ଦେଖିଲି ଗୋଟିଏ ରୁମ୍ – ତାହାର ରୁମ୍‌ଟି ହିଁ ଖୋଲା, ମାନେ ଅଧା ଖୋଲା । ବାକି ସବୁଠି ପ୍ରାୟ ଚାବି ପଡ଼ିଛି । ପ୍ରଥମ ପରିଚୟରେ ଆମ ଦୁହିଁଙ୍କ ଜମିଗଲା । ଗୌହାଟିର କଟନ୍ କଲେଜରୁ ସିହ୍ନା ବି.ଏ. (ଅନର୍ସ)ରେ ପ୍ରଥମ ହୋଇଥିଲା । ଡାକ ନାଁ 'ବାବୁଲ୍' । ପିଲାଦିନୁଁ ଅତି ଧନୀ ପରିବାରରେ ବଢ଼ି ଆସିଛି – ତାଙ୍କ ବାପାଙ୍କ ସବୁ ସ୍ତ୍ରୀଙ୍କୁ ସେ ଜାଣିନାହିଁ, ଯେମିତି ଜାଣିନାହିଁ ବାପାଙ୍କର ଚା' ବଗିଚା କେତେ ଅଛି । ପଇସାର ଅଭାବ ନାହିଁ, କିନ୍ତୁ ଦେଖିଲେ ସିହ୍ନାକୁ କେହି ସେପରି କହିବ ନାହିଁ । କଳା ମଚ୍ ମଚ୍ ଚେହେରାକୁ ଧଳା ରଙ୍ଗ ପୋଷାକ । ରୁମ୍‌ରେ ଥିଲାବେଳେ ସମ୍ପୂର୍ଣ୍ଣ ନ ହେଲେ ବି, ଶରୀରର ଅଧିକାଂଶ ତା'ର ଅନାବୃତ ଥାଏ । ନିର୍ବିକାର ପିଲାଟେ, ସ୍ଥିତପ୍ରଜ୍ଞ ବି କୁହାଯାଇ ପାରେ । ସବୁବେଳେ ହାତରେ ସିଗାରେଟ୍... ବଡ଼ ବଡ଼ ଆଖି... ବାଳଗୁଡ଼ା ଅମାନିଆ, ତେଲ କେବେ ବାଜିଲାପରି ମନେ ହେଉନି । କଥା ଅତି କମ୍ କହେ । ଘଣ୍ଟା ଘଣ୍ଟା ନୀରବ ରହିଥାଏ । ଘଣ୍ଟାକୁ ଘଣ୍ଟା ଚା' ପିଇବାପାଇଁ ବା ସରିଯାଇଥିବା ସିଗାରେଟ୍ ପୁଣି ଆଣିବା ପାଇଁ ରାସ୍ତାକୁ ବାହାରି ପଡ଼େ । ମୁଁ କମ୍ପାନୀ ଦିଏ, ମୁଁ ବି ସିଗାରେଟ୍ ଟାଣେ, ଆବଶ୍ୟକତାରୁ ଅଧିକ ଚା' ପିଏ । ଦିନେ ଦିନେ ଆମେ ଠାରରେ ଭାବର ଆଦାନ ପ୍ରଦାନ କରୁ । କିଛି କଥା କହୁନା । ଭଲ ଲାଗେ ନୂଆ ଅଭିଜ୍ଞତାଟେ ।

ସିହ୍ନା କିନ୍ତୁ ତା' ମନ ଭିତରେ ଗୋଟିଏ ଛୋଟିଆ ପୃଥିବୀ ତିଆରି କରି ତାରି ଭିତରେ ଜାକିଜୁକି ହୋଇ କୌଣସି ଏକ ନିଭୃତ କୋଣରେ ବସିଥିଲା ପରି ମୋତେ ଲାଗେ ।

ଯେମିତି ସେ ଆତ୍ମଗୋପନ କରିଛି । ଛୋଟିଆ – ଏତେ ଛୋଟିଆ ପୃଥିବୀରେ କ'ଣ ଲୁଚି ହୁଏ ? ଲୁଚିବା ସମ୍ଭବ ? ପୃଥିବୀକୁ ଛୋଟ କରିଦେବା ଓ ତା' ଭିତରେ ଗୋଟିଏ କୋଣରେ ରହିବା ବା ଗୋଟିଏ କୋଣକୁ ଜାବୁଡ଼ି ଧରିବାର କାରଣ ଜାଣିବାକୁ ମୋତେ ମାସେ ଖଣ୍ଡେ ଲାଗିଲା । ସିହ୍ନା ପିଲାଦିନୁଁ ବାପା ମାଙ୍କ ଠାରୁ ଦୂରରେ – ବୋଡ଼ିଂ ସ୍କୁଲରେ ଓ ପରେ ପରେ କଲେଜ ହଷ୍ଟେଲରେ । ଟଙ୍କା ଠିକ୍ ସମୟରେ ଆସିଯାଏ । ବ୍ୟାଙ୍କ୍‌ରେ କିଛି ମୋଟା ଏକାଉଣ୍ଟ୍ ବି ସିହ୍ନା ନାଁରେ ଥାଏ, ବାବୁଙ୍କର ଯଦି ହଠାତ୍ କେବେ ଦରକାର ପଡ଼େ ?

## ୩୦

ଲାଇବ୍ରେରୀରେ ବହିଟେ ଖୋଜୁ ଖୋଜୁ ଆଖି ପଡ଼ିଲା ସ୍ଟେପ୍ ଲ୍ୟାଡର୍ ଉପରେ ବସିଛି ଝିଅଟିଏ, ବହିଟିଏ ହାତରେ । ରାସ୍ତା ବନ୍ଦ କରିଥିବାରୁ ମୁଁ ତଳୁ ଇସାରା କଲି । ଝିଅଟି ରବୀନ୍ଦ୍ର ସଙ୍ଗୀତଟିଏ ଗୁଣୁ ଗୁଣୁ ଗାଇ ତଳକୁ ଓହ୍ଲେଇଲା । ମୁହଁଟି ଦେଖୁ ଦେଖୁ ମୋର ମନେ ପଡ଼ିଗଲା – ଏଇତ ଭିକ୍ଷା, ଭିକ୍ଷା ମଜୁମ୍‌ଦାର... ସେ ନ ଚିହ୍ନିଲା ପରି ମୋତେ ଅନେଇ ଟିକେ ଗମ୍ଭୀର ହୋଇ ଚାଲିଗଲା । ଅଭିନୟଟି ଭଲ ଲାଗିଲା ମୋତେ । ମୋର ବି ଟିକେ ଇଚ୍ଛା ହେଲା ମୋ ଅଭିନୟକଳା ଟିକେ ଛୋଟ୍‌ଦିକୁ ଦେଖେଇଦିଏ ? ତେବେ ଆଜି ନୁହେଁ, ଆଉ କେବେ – ସ୍ଥିର କଲି । କ୍ଲାସ ଟାଇମ୍ ହୋଇଗଲାଣି, ତେଣୁ ଆଉ କେବେ...

କ୍ଲାସ ଛୋଟ, କିନ୍ତୁ ଦେଖିଲି ଏକ ମିନି-ଇଣ୍ଡିଆ । ପିଲା ଅଛନ୍ତି–ଏଲାହାବାଦ୍‌ରୁ, ଦିଲ୍ଲୀରୁ, ସିଲଂରୁ, କଟକରୁ, ମାଲ୍‌ଦାରୁ, ପାଟନାରୁ । କ୍ଲାସ ଯିଏ ନେବେ ସେ ଦେଖିବାକୁ ଠିକ୍ ସୀତାର୍ ମାଏସ୍ଟ୍ରୋ, ରବିଶଙ୍କରଙ୍କ ଭଳି । ସୁନ୍ଦର ଇଂରାଜୀ କହି ଚାଲିଛନ୍ତି । ପ୍ରତି ଦୁଇ ମିନିଟ୍‌ରେ ଜୋକ୍, ଅତି ଉନ୍ନତ ଧରଣର ଜୋକ୍, ଆମେସବୁ ହସି ହସି ବେଦମ୍ । ଆଗରୁ ଏଭଳି ଅଧ୍ୟାପକ, ଏଭଳି ବକ୍ତା – ମୁଁ ଦେଖି ନଥିଲି । ଧୋତି, ମଠା ପଞ୍ଜାବି ସହିତ ଏଲିଜାବେଥୀୟ ସ୍ୟାଣ୍ଡେଲ୍, ଫ୍ରେଞ୍ଚ୍ ପରଫ୍ୟୁମ୍... ସହଜରେ ବାରି ହେଉଥାଏ । ଶହେ ମିନିଟିଆ କ୍ଲାସ । ରୁମ୍‌ରେ ଆସି କ୍ଲାସରେ ଟିପିଥିବା ନୋଟ୍ ରାତିଯାକ ପଢ଼ିଲୁ ମୁଁ ଓ ସିହ୍ନା... ପୁଣି ଥୋଡ଼ାଏ ହସିଲୁ । ଏଭଳି ଚରିତ୍ର ଆଗରୁ ଦେଖି ନଥିବାରୁ ମୋର ଦୁଃଖ ହେଲା । 'ବ୍ରେଭ୍ ନିଉ ଉଆର୍ଲ୍ଡ'ର ଲେଖକ ଯାଲ୍‌ଡସ୍ ହକ୍ସଲେଙ୍କ ଉପରେ ଗବେଷଣା କରି ଡଃ ଘୋଷ ପି.ଏଚ୍.ଡି. ପାଇଛନ୍ତି । ବିଭିନ୍ନ ଆନ୍ତର୍ଜାତିକ ସେମିନାରରେ ଅତି ପରିଚିତ ନାଁ ଟିଏ – ଶିଶିର କୁମାର ଘୋଷ । 'ଶିଶିରଦା' ବୋଲି ସମସ୍ତେ ଡାକନ୍ତି । ରବୀନ୍ଦ୍ରନାଥ, ଶ୍ରୀ ଅରବିନ୍ଦ, ଶ୍ରୀମା, ଶ୍ରୀମତୀ ଗାନ୍ଧିଙ୍କ ସହ ଶିଶିରଦାଙ୍କ ବ୍ୟକ୍ତିଗତ ପରିଚୟ । ବେଶୀ ସମୟ କା' ସହ କଥାବାର୍ତ୍ତା କରନ୍ତିନି । ଛୋଟ ପିଲାଙ୍କ ସାଙ୍ଗରେ, ଫୁଲ ବଗିଚାରେ, ଏକାକୀ ଅନେକ ସମୟ କଟେ ।

ଘରେ ଖାଲି ବହି – ଡ୍ରଇଂ ରୁମ୍‌ରୁ ଧାଡ଼ି ଧାଡ଼ି, ର୍ୟାକ୍ ପରେ ର୍ୟାକ୍, ବେଡ୍‌ରୁମ୍, ଡାଇନିଂ ସ୍ପେସ୍ ପର୍ଯ୍ୟନ୍ତ । ଛୋଟିଆ ଖଟ ପାଖରେ ସୁନ୍ଦର ସପଟି ଉପରେ ଜାପାନିଜ୍ ଟାଇପ୍ ମେସିନ୍‌ଟେ... ଟେପ୍‌ରୁ ଚୌରାସିଆଙ୍କ ବଂଶୀ । ଆଶ୍ରମ ପରି ଲାଗେ ତାଙ୍କ ଘରଟି ।

ଭିତରକୁ ନ ଯାଇ ମୁଁ ବାହାରୁ ଲକ୍ଷ କରେ ଶିଶିରଦାଙ୍କୁ । ଝରକା ପାଖରେ ସବୁବେଳେ ଦେଖେ ସେ ଅନେକ ଦୂରକୁ ଅନେଇ ରହିଛନ୍ତି । କେଉଁ ପୃଥିବୀରେ ହଜି ଯାଇଛନ୍ତି କେଜାଣି ?

ଭିତରେ ଭିତରେ ମୋର ଏକ ପରିବର୍ତ୍ତନର ସୂଚନା ମୁଁ ପାଇଲିଣି– ଶିଶିରଦା ମୋର ଆଦର୍ଶ ହେବାକୁ ବସିଲେଣି । ପାରମ୍ପରିକ ପୋଷାକ ପିନ୍ଧୁଥିବା, ଭିନ୍ନ ଶୈଳୀରେ ବଞ୍ଚୁଥିବା ଲୋକଟି ଆଧୁନିକ ମଣିଷ ଓ ଆଧୁନିକତାକୁ ଏତେ ସୁନ୍ଦରଭାବେ ବୁଝିଛି ଓ ଅନ୍ୟକୁ ବୁଝାଇ ପାରୁଛି – ଭାବି ଭାବି ମୁଁ ଉତ୍ତେଜିତ ହୋଇପଡ଼େ । ମନଟିକୁ ସିଲଟପରି ଓଦାକରି ସେଥିରେ ଥିବା ପୁରୁଣା ଲେଖାଗୁଡ଼ିକୁ ଲିଭେଇ ଦେବାକୁ ଇଚ୍ଛାହୁଏ, ଆଉ ତା'ପରେ ସେହି ପୁରୁଣା, ପରିଚିତ ସିଲଟରେ ନୂଆ ନୂଆ କଥା ଲେଖି ପକେଇବାକୁ ଇଚ୍ଛା ହୁଏ ।

'ତାହା କେତେଟା ସମ୍ଭବ ?' ନିଜକୁ ପଚାରେ, ଥରେ ନୁହେଁ ଅନେକ ଥର । ସ୍ମୃତି ଅନୁଭୂତିର, ସ୍ମୃତି ଜୀବନର – ତାକୁ ଲିଭେଇ ହେବନାହିଁ, ବୁଝିହେବ, ଅର୍ଥ କରିହେବ ଭିନ୍ନ ରକମର, ଭିନ୍ନ ଭିନ୍ନ ସମୟରେ । କେବଳ ସ୍ମୃତିର ଅଂଶବିଶେଷକୁ, ସ୍ମୃତିର ରଙ୍ଗକୁ, ଆଲୋଡ଼ନକୁ ଯେପରି ଭାବରେ ବୁଝିଛି, ହୃଦୟଙ୍ଗମ କରିଛି, ଆଜି ପର୍ଯ୍ୟନ୍ତ ତାହା ହିଁ ମୋର ଭାବନା ଓ ମନୋବୃତ୍ତିକୁ ଗଢ଼ିଛି । ଆଉ ଏବେ ?

ମୁଁ ଏବେ ଭାଙ୍ଗିବି କ'ଣ ଓ ଗଢ଼ିବି କ'ଣ ?

## ୩୧

ପଛକୁ ଅନେଇବାର, ପଛକଥା ଭାବିବାର ଆବଶ୍ୟକତା ଜୀବନରେ କେତେ ବେଶୀ ତାହା ସହଜରେ ବୁଝି ହୁଏନା – ଯେମିତି, କିଛି ହଜେଇ ନଥିଲେ କିଛି ପାଇଲାପରି ଲାଗେନା । ଏଆଡ଼େ ହଜେଇବାର ଦୁଃଖ ସହିତ ପାଇବାର ଆନନ୍ଦ ଫେଣ୍ଟାଫେଣ୍ଟି ହୋଇଯାଇଥାଏ ଶିଳ୍ପୀର କାନ୍‌ଭାସ୍‌ରେ ଯେମିତି ହଳଦିଆ-ସବୁଜ, କଳା-ଧଳା ରଙ୍ଗ ଫେଣ୍ଟାଫେଣ୍ଟି ହୋଇ ନୂଆ ନୂଆ ଅର୍ଥ ସୃଷ୍ଟି କରିଥାଏ । ଆଗକୁ ଚାଲିବାର ପ୍ରତିଟି ମୁହୂର୍ତ୍ତରେ ଯେଉଁ ଉଦ୍ଦେଶ୍ୟଟି, ଯେଉଁ ସମ୍ଭାବନାଟି ରହିଥାଏ ତାହା ଅତୀତର ସ୍ମୃତି ଓ ଅନୁଭୂତିରୁ ହିଁ ଗଢ଼ି ଉଠିଥାଏ । କହିପାରିବିନି ଅବଚେତନ ମନରେ ମୁଁ କେତେଟା ବୁଝିଛି ଏହି ନିବିଡ଼

ସମ୍ପର୍କକୁ – ହଜେଇବାର ଓ ପାଇବାର ସମ୍ପର୍କକୁ, ଗୋଟିଏ ମୁହୂର୍ତ୍ତରେ ଭାଙ୍ଗିଯାଇ ପରମୁହୂର୍ତ୍ତରେ ଗଢ଼ି ଉଠୁଥିବା ମୋର ଭାବନା ଓ ମନୋବୃତ୍ତିକୁ ।

ଶାନ୍ତିନିକେତନରେ ଦୁଇମାସ ବିତିଗଲାଣି । ମୁଁ ଆଉ ନୂଆ ହୋଇ ନାହିଁ । ବିଭିନ୍ନ ଡିପାର୍ଟମେଣ୍ଟରେ ପିକ୍‌ନିକ୍, ସଙ୍ଗୀତ ବା ନାଟକ ଆସର, ନର୍ସରୀ ପିଲାଙ୍କ କବିତା ପାଠୋତ୍ସବ ବା ଫାଇନ୍ ଆର୍ଟ୍ସ ପିଲାଙ୍କ ପେଇଁଟିଂ ଏକ୍ସିବିଶନ୍ – କିଛି ନା କିଛି ସନ୍ଧ୍ୟାରେ ଥିବ । ତେରଶ, ଚଉଦଶ ପିଲା ଏକାଠି ଛାତତଳେ ଡାଇନିଂ ଟେବୁଲ୍‌ରେ ବସି ଖାଇବା ଏକ ଅଭୁଲା ଅନୁଭୂତି । ଆମେ କିନ୍ତୁ 'ବିଦ୍ୟାଭବନ'ରେ – ଏମ୍.ଏ. ପୁଅ ପିଲାଙ୍କ ହଷ୍ଟେଲରେ – ଖାଇବା, ପିଇବା ସ୍ୱତନ୍ତ୍ର ।

ଶାନ୍ତିନିକେତନରେ ଅଧାରୁ ବେଶୀ ଝିଅ । ଝିଅପିଲାଙ୍କ ହଷ୍ଟେଲ –ଗୋଏଙ୍କା ହଷ୍ଟେଲ, ବିର୍ଲା ହଷ୍ଟେଲ, ଶ୍ରୀସଦନ... ଶିଳ୍ପପତିମାନଙ୍କ ନାଁରେ କାହିଁକି ସବୁ ହଷ୍ଟେଲ ନାମକରଣ ହୋଇଛି ପଚାରିଲାରୁ ଜାଣିଲି କୁଆଡ଼େ ଗୋଏଙ୍କା ପରିବାରରୁ ଝିଅଟିଏ ପଢୁଥିଲା । ତା'ର ପଢ଼ା ସରିଲା ପରେ ଶିଳ୍ପପତି ଗୋଏଙ୍କା 'ବିଦାୟ ଭେଟି' ଭାବେ ହଷ୍ଟେଲଟିଏ କରିଦେଇଥିଲେ । ପରେ ଶିଳ୍ପପତି ବିର୍ଲାଙ୍କ ଝିଅ ଆସିଲେ 'କଳା ଭବନ' ରେ ପଢ଼ିବା ଲାଗି । ସେ ଗଲାବେଳେ ଆଉ ଏକ ହଷ୍ଟେଲ ଉପହାର ଦେଇଯାଇଥିଲେ । କୁଆଡ଼େ ହଷ୍ଟେଲଟିକୁ ଶୀତତାପ ନିୟନ୍ତ୍ରିତ କରିବା ଲାଗି ସେ ଚାହୁଁଥିଲେ, କିନ୍ତୁ ଗୁରୁଦେବ ବାରଣ କଲେ । ଫଳରେ ପ୍ରକୃତିର କୋଳରେ ଗଢ଼ି ଉଠିଥିବା ଆଶ୍ରମରୂପୀ ଅନୁଷ୍ଠାନକୁ ଆଶ୍ରମର ପରିବେଶରେ ହିଁ ରଖାଗଲା ।

ହଷ୍ଟେଲରେ ଦିନେ ମୋ ରୁମ୍ ଖୋଲିଲା ବେଳକୁ ଦେଖିଲି ମୋ' ବିଛଣାରେ କିଏ ଜଣେ ଶୋଇଛି । ଆଶ୍ଚର୍ଯ୍ୟ ! ଏ' ପିଲାଟି କିଏ ? ମୋ ରୁମ୍‌ରେ କେମିତି ପଶିଲା ? କବାଟ ଖୋଲିଲା କେମିତି ? ଏସବୁ କଥା ଭାବୁଛି, ପିଲାଟି ଅଳସ ଭାଙ୍ଗି ଉଠିଲା । ମୋ' ଆଡ଼କୁ ଅନାଇ ଡ୍ୟୁଟି କଲାପରି ହସିପକାଇଲା ଆଗେ – ଚାପାହସ । ଗୋଲ ମୁହଁରେ ଖରାପ ଦିଶୁ ନଥାଏ । ତାପରେ କହୁଛି –

'ତୁମେ ରୁମ୍ ଚାବି ଯେଉଁଠି ରଖ ମୁଁ ବି ମୋ ରୁମ୍ ଚାବି ସେଇଠି ରଖେ । ମାନେ ଝରକା କଡ଼ରେ ଉପର ଆଡ଼କୁ ନଦିଶିଲା ଭଳି, ହୁଏତ ଦୁହେଁ ଆମେ ଅଳସୁଆ । ନିଜର ଯତ୍ନ ନେବା ସାଧ୍ୟ ନାହିଁ । ରୁମ୍‌ର ଯତ୍ନ ନେଉଛି ବା କିଏ ? ତେବେ, ମୋ ନାଁ ସୁମିତ୍ର । ଏମିତି ତମ ରୁମ୍‌ରେ ପଶି ମୁଁ ତୁମ ବିଛଣାରେ ଶୋଇବା, ତୁମକୁ ଭଲ ଲାଗିଲାନି ନିଶ୍ଚେ ?

ମୋତେ ହସ ଲାଗିଲା । ପିଲାଟିର କଥା କହିବାର ଢଙ୍ଗ ମୋତେ ଭଲ ଲାଗିଲା । ଫୁଲ୍ ସ୍ଲିଭ୍‌ସ୍ ଶାର୍ଟ୍ ଓ ଟ୍ରାଉଜର୍, ପୁଣି ଗୋଡ଼ରେ ମୋଜା... (ରକ୍ଷା ହୋଇଛି

ଜୋତା ପିନ୍ଧି ଶୋଇନି) । ଇଚ୍ଛାହେଲା ପୂରା ନାଁ ପଚାରିବି । ଜଣାପଡୁଛି ବଙ୍ଗାଳୀ – ଦିଲ୍ଲୀ ବା ଉତ୍ତର ପ୍ରଦେଶର । ମୋତେ ଲାଗିଲା ଯେପରି ଆଖି ଆଗରେ ଭୂମିକମ୍ପ ବା ମର୍ଡ଼ର୍‌ଟିଏ ହୋଇଗଲେବି ସେ ନିର୍ବିକାର ରହିଥିବ । ତା'ର ସ୍ୱରରେ କିଛି ପରିବର୍ତ୍ତନ ଆସିବନି । ଭଲ ଗୁଣଟି – ବିପଦବେଳେ ନିଜକୁ ସମ୍ଭାଳି ନେବାର ଗୁଣ, ଭାଙ୍ଗି ନପଡ଼ି ଧୈର୍ଯ୍ୟଧରି ରହିବାର ଗୁଣ । ଏହି ଗୁଣଟି କେବଳ ଭଲ ନୁହେଁ,ଖୁବ୍ ଦରକାରୀ ମଧ୍ୟ । ଏହାକୁ ହାସଲ କରିବାକୁ ମୁଁ ଅନେକ ଥର ଚେଷ୍ଟା କରିଛି; କିଛି ପରିମାଣରେ, କେତୋଟି ପରିସ୍ଥିତିରେ ସଫଳ ବି ହୋଇଛି ।

ମଣିଷ–ମଣିଷ ଭିତରେ ସମ୍ପର୍କଟିଏ ଗଢ଼ିବା ପାଇଁ ବର୍ଷ ବର୍ଷ ଲାଗି ଯାଉଛି । କେତେ ଭାବନା, ବୁଝାମଣା, ମତାନ୍ତର ପରେ ସମ୍ପର୍କଟି ଗଢ଼ିଉଠେ... କିନ୍ତୁ ଇଏ କ'ଣ ହେଲା ? ଏତେ କମ୍ ପରିଶ୍ରମରେ, ଏତେ କମ୍ ସମୟରେ ସୁମିତ୍ର ଅତି ଆପଣାର ହୋଇଗଲା – ସିହ୍ନା ଯେମତି ! ଆମେ ତିନିଜଣ ପ୍ରାୟ ସବୁବେଳେ– ଡାଇନିଂ ରୁମ୍‌ରେ, ଲାଇବ୍ରେରୀରେ, କ୍ୟାଣ୍ଟିନ୍‌ରେ । ସୁମିତ୍ର କିନ୍ତୁ ମଝିରେ ମଝିରେ ଖସିଯାଏ ଲେଡିଜ୍ ହଷ୍ଟେଲ ଆଡ଼କୁ । ଅନେକ ଝିଅଙ୍କୁ ସେ ଜାଣି ସାରିଲାଣି । ନାଁ ଜାଣିଲା ପରେ ସେ ବନ୍ଧୁତା କରେ । ଝିଅଟିର ନାଁ ତାକୁ ଭଲ ନ ଲାଗିଲେ ସେ ପାଖକୁ ଯିବନି, କବିତା ଲେଖିବନି । ତାଛଡ଼ା ଝିଅଟି ତାଠୁ ବଡ଼ ହୋଇଥିବ ବୟସରେ, ବାହା ହୋଇଥିବା, ମାନେ ସଦ୍ୟ-ବିବାହିତା ହେଲେ, ଆହୁରି ଭଲ । ପୁଣି ଅନେକ ଝିଅଙ୍କୁ ସୁମିତ୍ର ଏକାବେଳେ ଭଲପାଏ । ଏଲାହାବାଦ୍‌ରେ ଇଂରାଜୀ ଅଧ୍ୟାପକ ଥିଲା, ଶାନ୍ତିନିକେତନ ବୁଲି ଆସିଛି । ଦେଖେ – ଫିଲସଫି ଡିପାର୍ଟମେଣ୍ଟରେ ସୁନ୍ଦର ରଙ୍ଗୀନ୍ ଫୁଲ, ସୁନ୍ଦର ବଗିଚା, ସୁନ୍ଦର ସୁନ୍ଦର ଝିଅ... ଫିଲସଫି ଏମ୍.ଏ.ରେ ଆଡ୍‌ମିଶନ ନେଇଗଲା । କ୍ୟାରିୟର୍ ଫାଷ୍ଟ୍‌କ୍ଲାସ, ତେଣୁ ଆଡ୍‌ମିଶନ୍ ନେବାରେ କିଛି ଅସୁବିଧା ହେଲାନି । ଅଧ୍ୟାପିକା ରୀନା ଗାଙ୍ଗୁଲି, ଜର୍ମାନୀରୁ ପି.ଏଚ୍.ଡି., ଅବିବାହିତା, ହାଇଡେଲ୍‌ବର୍ଗରେ ଜର୍ମାନ ଭାଷାରେ କାଣ୍ଟ ପଢ଼ିଛନ୍ତି । ରୀନାଦିକୁ ସୁମିତ୍ର ଭଲ ପାଇବସିଲା । କଲିକତା କ୍ୟାନ୍‌ସର ଇନ୍‌ଷ୍ଟିଚ୍ୟୁଟ୍‌ରେ ମୃତ୍ୟୁଶଯ୍ୟାରେ ପଡ଼ିଥିବା ଆରତି ଦତ୍ତଙ୍କୁ ବି ସେ ଭଲ ପାଉଥିଲା । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ପଢ଼ାଉଥିବା ଫିଲ୍‌ସଫି ପ୍ରଫେସର ଏଲିଜାବେଥ୍ ଚାଟାର୍ଜୀଙ୍କୁ ବି ଭଲ ପାଉଥିଲା । ମିସେସ୍ ଚାଟାର୍ଜୀ ପୁଣି ସୁମିତ୍ରର ନିଜ ମାଇଁ ହେବେ – ତା'ର ମାମୁଁ ଲଣ୍ଡନରେ ଏଫ.ଆର୍.ସି.ଏସ୍. କଲାବେଳେ କେଂବ୍ରିଜ୍ ଛାତ୍ରୀ ଏଲିଜାବେଥ୍‌ଙ୍କ ସହ ପରିଚୟ ଓ ପରେ ପରେ ବିବାହ ହୋଇଥିଲା ।

ସୁମିତ୍ର, ମୋତେ ଲାଗେ ଗୋଟେ ବିଚିତ୍ର ସ୍ପେସିମେନ୍ – କଫି କପେ ଆଶାରେ ଲଣ୍ଡା ହୋଇଯାଏ । ସୁନ୍ଦର ଭିକ୍ଟୋରିୟାନ୍ କବିତା ଲେଖେ, ଘଣ୍ଟାଘଣ୍ଟା ଧରି ଶୋଇପାରେ, ଗଳ୍ପ କହିପାରେ । ଅଜା, ବାପା, କାକା, ଭଉଣୀ – ସମସ୍ତେ ଏଲାହାବାଦ୍‌ରୁ ଏମ୍.ଏ.

(ଇଂରାଜୀରେ), ସମସ୍ତେ ଶିକ୍ଷାବିତ୍ । ମୋତେ ଲାଗୁଛି ସୁମିତ୍ରର ପିଲାଛୁଆ ବି ଇଂରାଜୀରେ ଏମ୍.ଏ. କରିବେ – ସେହି ଏଲାହାବାଦ୍‌ରୁ ! ପଚାରିଲାରୁ ମନକିଣା ହସଟିଏ ହସିଦେଲା ସୁମିତ୍ର ସେଦିନ, ଲାଇବ୍ରେରୀରୁ ରାତିରେ ଫେରିଲାବେଳେ ।

ସଂଧ୍ୟାରେ ମୁଁ ଏକା, ବହୁତ ଦିନପରେ ଏକା । ହଷ୍ଟେଲ ପିଲାସବୁ ଗଲେ କୁଆଡ଼େ ? ହୁଏତ ଥୋଡ଼େ ରିଡିଂ ରୁମ୍‌ରେ, ଥୋଡ଼େ ଗାର୍ଲ ଫ୍ରେଣ୍ଡ୍‌ସ୍‌ଙ୍କ ପାଖରେ, ଥୋଡ଼େ କ୍ୟାଣ୍ଟିନ୍‌ରେ । ଫୋନ୍‌ଟା କ୍ରିଂ କ୍ରିଂ ବାଜିଚାଲିଛି... କେହି ଧରିବାକୁ ନାହିଁ । ଯାଇ ଧରିଛି, କଟିଗଲା । ଭାବିଲି ଭଲ ହେଲା, ନହେଲେ କିଏ କେଉଁଠି, ସିଏ କେଉଁଠି – କେହି ଜଣେ ପଚାରିଥାନ୍ତା । ମୁଁ ତ ଅନେକଙ୍କୁ ଜାଣିନି, କ'ଣ ବା ଉତ୍ତର ଦେଇଥାନ୍ତି ? ବେଶୀଗୁଡ଼ାଏ ପିଲାଙ୍କୁ ଜାଣିବା, ସେମାନଙ୍କ ସହ ଆତ୍ମୀୟତା କରିବାର କୌଣସି କାରଣ ନାହିଁ – ମୁଁ ଅନୁଭବ କରିସାରିଲିଣି ।

ମୁଁ ଏକା ଏକା ରାସ୍ତାରେ, କିଛିଟା ଅନ୍ୟମନସ୍କ । ସୂର୍ଯ୍ୟାସ୍ତ ହେବା ଉପରେ । ଆକାଶକୁ ଅନେଇଲି, ପୁରା ଉପରକୁ, ଟୋପିଟା ମୁଣ୍ଡରେ ଥିଲେ ନିଶ୍ଚୟ ଗଳିପଡ଼ିଥାନ୍ତା ! ହଠାତ୍ ମନେହେଲା – କେତେଦିନ ପରେ, କେତେମାସ ପରେ ଆକାଶକୁ ସଂପୂର୍ଣ୍ଣ ଭାବରେ ମୁଁ ଦେଖୁଛି । ଏହି ସହଜ, ସରଳ ଅନୁଭୂତିଟି କେତେଜଣଙ୍କ ଜୀବନରେ ଘଟେ, ମୁଁ ନିଜକୁ ପ୍ରଶ୍ନକଲି ? ବଞ୍ଚିବାର ନାମ ନେଇ ସମୟ କାହିଁ ଆକାଶକୁ ଅନେଇବା ଲାଗି ? ଆମେ କ'ଣ ଏତେ ବ୍ୟସ୍ତ, ବଞ୍ଚିବାର ଜଟିଳତାରେ, ଆନନ୍ଦରେ, ଯେ ଆକାଶକୁ କିଛି ସମୟ ଅନେଇବା କଷ୍ଟସାଧ୍ୟ ? ସମୟ ନାହିଁ, ନା ମନ ନାହିଁ ? ରାସ୍ତା ଦୁଇପାଖରେ ଗଛ... ଗଛରେ ପତ୍ର ଭିତରେ ତଳକୁ ଖସିଆସୁଥିବା ସୂର୍ଯ୍ୟ... ଆକାଶର ବିଭିନ୍ନ କୋଣରେ ପକ୍ଷୀଙ୍କ ଶବ୍ଦ... ମୁଁ ଅନୁଭବ କରୁଛି କିଛିଟା ପୁରୁଣା ଶିହରଣ, କିଛିଟା ନୂଆ ରୋମାଞ୍ଚ ।

## ୩୨

ମନ ଭିତରକୁ ଚରିତ୍ର ପରେ ଚରିତ୍ର ନୂଆ ଆସୁଛନ୍ତି, ପୁରୁଣା କିଛି ଚାଲିଗଲେଣି, ହଜିଗଲେଣି ବିସ୍ମୃତିର ସ୍ରୋତରେ, ଆଉ କିଛି କିନ୍ତୁ ରହିଯାଇଛନ୍ତି, ସେମିତି ଆଗପରି, ପ୍ରତି ନୂଆ ଚରିତ୍ର ସହିତ ଘସିହୋଇ, ମୁହାଁମୁହିଁ ହୋଇ । ମୁଁ କେତେଜଣଙ୍କୁ ସମ୍ଭାଳିବି ? କେମିତି ସମ୍ଭାଳିବି ?

ଅଦ୍ଭୁତ ଖିଆଲୀ ମନ ମୋର କ୍ଷିପ୍ର ଗତିରେ କାମ କରୁଛି । ବିଶ୍ରାମ ନାହିଁ ତା'ର । ଏତେଜଣଙ୍କ ପାଇଁ ଜାଗା କରିଦେଇଛି – କିଏ ବସୁଛି, କିଏ ଛିଡ଼ା ହେଉଛି, କିଏ ଏ' ବଖରା

ସେ' ବଖରା ହେଉଛି । ଚରିତ୍ରମାନଙ୍କ ଭିତରେ ବୟସର ତାରତମ୍ୟ ରହିଛି, ଚିନ୍ତାଧାରାରେ ଓ ବସିବାର ଶୈଳୀରେ ପରିଷ୍କାର ବୁଝାଯାଉଛି । ସେମାନଙ୍କ ଗହଣରେ ମୁଁ ନିଜକୁ କିଛି ସମୟ ପାଇଁ ଭୁଲିଯାଉଛି, ଭୁଲିଯିବା ଦରକାର ବୋଧେ ?

ଶାନ୍ତିନିକେତନରେ ମୋତେ ଲାଗେ ପ୍ରତିଦିନ ନୂଆ ରାସ୍ତାଟିଏ ମୁଁ ଦେଖେ – 'ନୂଆ', ଆଗରୁ ଦେଖିଲା ପରି ମନେ ହୁଏନା । ସେହି ରାସ୍ତାରେ ଯିବାକୁ ଇଚ୍ଛା ହୁଏ – ଏକାକୀ । ତେବେ ଆଜିକାଲି ଏକାକୀ ରହିହେଉଛି କେଉଁଠି ?ଗୁଡ଼ାଏ ପିଲା ଚିହ୍ନିଗଲେଣି । ଚିହ୍ନିବେନି ? 'ନବୀନବରଣ' ଉଏଲ୍‌କମ୍ ଫଙ୍କ୍‌ସନ୍‌ରେ ନିଜକୁ ଇଂଟ୍ରୋଡ୍ୟୁସ୍ କଲାବେଳେ ସେମିତି ଦେଖେଇ ହେବା କ'ଣ ଦରକାର ଥିଲା ? 'ହବି,' କ'ଣ ଖାଲି ଆକ୍ଟିଂ କହି ଡାଏସ୍ ଉପରୁ ପଳେଇ ଆସିଥିଲେ ହୋଇନଥାନ୍ତା ? ସେକ୍ସ୍‌ପିୟରଙ୍କ 'ଜୁଲିଅସ୍ ସିଜର୍' ନାଟକରୁ ମାର୍କ ଆଣ୍ଟୋନିର ଭାଷଣ ଆବୃତ୍ତି କରିବା କ'ଣ ଦରକାର ଥିଲା ? ଅବଶ୍ୟ ବାପା ଶୁଣିଥିଲେ ଖୁବ୍ ଖୁସି ହୋଇଥାନ୍ତେ, ସମୀକ୍ଷା ବି, କିନ୍ତୁ, ସମୀକ୍ଷା ନିଶ୍ଚୟ କମେଣ୍ଟ୍ ମାରିଥା'ନ୍ତା – 'କି ସୋମ୍ୟାନ୍‌ସିପ୍ ।'

ମୁଁ ପ୍ରକୃତରେ ବୋଧେ ଜଣେ ସେଲ୍‌ଫ୍‌କନସସ୍ ସୋମ୍ୟାନ୍, ସବୁବେଳେ ଅନ୍ୟକୁ ଇଂପ୍ରେସ୍ କରିବାରେ ବ୍ୟସ୍ତ । ବେଳେ ବେଳେ ଭାବେ ଏଇଟା ଭଲ ନୁହେଁ । ଅନ୍ୟମାନେ ମୋତେ ନଦେଖନ୍ତୁ, ଇଂପ୍ରେସ୍‌ଡ୍ ନ ହୁଅନ୍ତୁ, ବାଃ, ବାଃ ନକରନ୍ତୁ – କ'ଣ ଭାସିଯିବ ଯେ ? ଏଇଟା 'ଅଭ୍ୟାସ' ସ୍ତରରେ ଅଛି, ଏହାକୁ ନ ରୋକିଲେ 'ପ୍ରକୃତି' ହୋଇଯିବ । ଯେମିତି ସିଗାରେଟ୍‌ଟଣା ଏବେ 'ଅଭ୍ୟାସ' ହୋଇଗଲାଣି । ସେପୁଣି ଚାର୍ମିନାର୍, ଟଙ୍କାରେ ପାଞ୍ଚ ପ୍ୟାକେଟ୍, ଏଟା ଇଂଟେଲେକ୍‌ଚୁଆଲ୍‌ଙ୍କ ସିଗାରେଟ୍ । ଆମ ଡିପାର୍ଟମେଣ୍ଟ୍ ହେଡ୍ ଡଃ ସେନ୍ ପଢ଼ାଇଲାବେଳେ ବି ଚାର୍ମିନାର୍ ଟାଣନ୍ତି । ତାଙ୍କ ଟେବୁଲ୍ ଡ୍ରୟାର୍ ଭିତରୁ ମୁଁ ଅନେକଥର ପ୍ୟାକେଟ୍ ପରେ ପ୍ୟାକେଟ୍ ଉଠାଇ ଆଣିଛି । ସେ ନିଶ୍ଚୟ ଜାଣି ପାରି ନଥିବେ – ଦଶ ପନ୍ଦରଟା ପ୍ୟାକେଟ୍ ସବୁବେଳେ ତାଙ୍କ ଡ୍ରୟାର୍ ଭିତରେ ଥାଏ ।

ସିଗାରେଟ୍ ଚୋରି କରିବାରେ ଏକ ଅଦ୍ଭୁତ ରୋମାଞ୍ଚ ରହିଛି – ମୁଁ ଆଗରୁ ଜାଣି ନଥିଲି । ଘରେ ବାପା କେବେ ସିଗାରେଟ୍ ଟାଣନ୍ତିନି, ତେଣୁ ଅନ୍ୟ ଅଫିସରମାନେ ମଧ୍ୟ ଟାଣୁନଥିଲେ । ସେହି କାରଣରୁ ସୁଯୋଗ ପାଇ ନଥିଲି । ଏଠିତ ଆମେ ବଡ଼ପିଲା – ଦେଖୁଛି କିଏ ? କହିବାକୁ ଅଛି କିଏ ?ପୁଣି ସବୁ ସିଗାରେଟ୍ କୋଉ ମୋ ଭାଗରେ ପଡୁଛି ଯେ ? ହଷ୍ଟେଲରେ ପହଞ୍ଚୁ ପହଞ୍ଚୁ ପାଖ ରୁମ୍‌ର ସପ୍ତଜିତ୍, ବିଭାସ ମାଡିଆସି ମୋ ପ୍ୟାଣ୍ଟ୍ ବା ପଞ୍ଜାବି ପକେଟରୁ ସିଗାରେଟ୍ ପ୍ୟାକେଟ୍ ବାହାର କରି ତୁରନ୍ତ 'ଚେନ୍‌ସ୍ମୋକର୍' ହୋଇଯାଆନ୍ତି... ଶେଷରେ ମୋ' ଭାଗରେ ତିନୋଟି ବା ଚାରୋଟି ପଡ଼ିଲେ ବେଶି ହୋଇଗଲା !

ସେ ଯା' ହେଉ ମୁଁ ସେଦିନ ଠିକ୍ କରିନେଲି କ୍ଲାସ ସରିଲେ ଗୋଟିଏ ନୂଆ ରାସ୍ତାରେ ଯିବି, ଯୁଆଡ଼େ ରାସ୍ତା ମୋତେ ନେଇଯିବ... । ସିହ୍ନା, ସୁମିତ୍ର, ଢଏଶୀଲନ୍ – କାହାକୁ ଡାକିବି ନାହିଁ, ଏଥର ଏକା ହିଁ ଯିବି । ଡଃ ଘୋଷଙ୍କ କ୍ଲାସକୁ ବାହାରୁଛି, କ୍ଷେୟାର୍‌କେଶ୍‌ରେ ଚାରି ପାଞ୍ଚଜଣ ଝିଅ ଉପରମହଲାରୁ ତଳକୁ ଓହ୍ଲାଉଥିଲେ । ଇଂଲିଶ୍ ଡିପାର୍ଟମେଣ୍ଟର ନିଶ୍ଚୟ... କାରଣ ସମସ୍ତେ ଇଂରାଜୀରେ କଥାବାର୍ତ୍ତା କରୁଥିଲେ । କଥାବାର୍ତ୍ତାରୁ ଜଣାପଡୁଥିଲେ ସମସ୍ତେ କନ୍‌ଭେଣ୍ଟ ସ୍କୁଲ ବ୍ୟାକ୍‌ଗ୍ରାଉଣ୍ଡରୁ । ସେହି ଭିତରୁ ଜଣେ ମୋ ପାଖକୁ ଆସି କହିଲା – ଡଃ ଘୋଷ ରୋମ୍ ଯାଇଛନ୍ତି, ମେସେଜ୍ ଛାଡ଼ିଯାଇଛନ୍ତି ସପ୍ତାହ ପର୍ଯ୍ୟନ୍ତି ତାଙ୍କ କ୍ଲାସ ହେବନି । ଫ୍ରେଞ୍ଚ ପର୍‌ଫ୍ୟୁମ୍‌ର ଗନ୍ଧ... ସେତେବେଳେ ପର୍ଯ୍ୟନ୍ତ ମୁଁ ଝିଅଟିର ମୁହଁ ଦେଖି ନଥିଲି ।

ଏବେ ଅନେଇଲି । ବବ୍ କଟ୍ ବାଳ, ଛୋଟ ଛୋଟ ସୁନ୍ଦର ଆଖି, କାନରେ ଡାଏମଣ୍ଡ ଇଅରରିଂ, କଟନ୍ ଶାଢ଼ିଟେ ପିନ୍ଧିଛି – ବମ୍ବେ ଡାଇଙ୍ଗ୍‌ର ବୋଧେ ! ଖୁବ୍ ସୁନ୍ଦର, ଖୁବ୍ ଗ୍ରେସ୍‌ଫୁଲ୍ ଦିଶୁଛି... ହାତରେ ଥିବା ବହି ଭିତରୁ ଗୋଟେ ବହି ହେଉଛି ଆଲ୍‌ଡସ୍ ହକ୍ସଲେଙ୍କ 'କ୍ରୋମ୍‌ୟେଲୋ' । ମୁଁ କିଛି କହିବା ଆଗରୁ ସେ ଆଉ ଜଣେ ଝିଅ ସହିତ କୁଆଡ଼େ ଚାଲିଗଲା । ମୋର ଇଚ୍ଛା ଥିଲା ପଚାରିବାକୁ–'ତୁମେ କ'ଣ ଇଂଲିଶ୍ ଅନର୍ସ ପଢୁଛ ?' ସେ ଏମ୍.ଏ. ଛାତ୍ରୀ କେବେ ନୁହେଁ, କାରଣ ସିନିୟର୍ ପିଲା ସମସ୍ତଙ୍କୁ ମୁଁ ଡିପାର୍ଟମେଣ୍ଟରେ ଦେଖିସାରିଛି । ଝିଅଟି ପଳେଇଲାଣି, ମୁଁ ପଚାରିବି କାହାକୁ ?

କ୍ୟାଣ୍ଟିନ୍‌କୁ ଯିବାର ଇଚ୍ଛା ଥିଲା । ଭୋକ ଟିକେ ଟିକେ ଲାଗିଲାଣି । ନା, ଆଜି ନୁହେଁ । ସ୍ଥିରକଲି ହଷ୍ଟେଲକୁ ଚାଲିଯିବି । ଗାଧାପାଧା କରି ନୂଆ ରାସ୍ତାଟିଏ ଦେଖିଛି, ସେଇ ରାସ୍ତାରେ ଯିବି । ମଧ୍ୟାହ୍ନ ଭୋଜନଟି ବାଦ୍ ଦିଆଯାଉ – କିଏ ଆଉ ବାରଟା, ସାଢେ ବାରଟା ପର୍ଯ୍ୟନ୍ତ ଅପେକ୍ଷା କରୁଛି ? ଦେଖିବା, ଯାଉ ଯାଉ, ଯେଉଁଠି ଯାହା ମିଳିଲା, ଖାଇ ନେବା ।

ଶେଷରେ ସେୟା ହେଲା । ହଷ୍ଟେଲକୁ ଗଲାବେଳକୁ ହଷ୍ଟେଲ ଖାଲି । ସବୁ ପିଲା ଯେଝା କ୍ଲାସରେ । ସିହ୍ନାଟା ନିଖୋଜ । କୁଆଡ଼େ ଗଲା କେଜାଣି ? ବୋଧେ ଲିଙ୍ଗୁଇଷ୍ଟିକ୍ସ କ୍ଲାସରେ ଥିବ । ବେଳେବେଳେ ସେ ଏକା ଏକା ଅଦୃଶ୍ୟ ହୋଇଯାଏ । ମୋ'ର, ତା'ର, ପ୍ରକୃତି ଓ ଚିନ୍ତାଧାରାରେ ଅନେକ ସାମଞ୍ଜସ୍ୟ ମୁଁ ଲକ୍ଷ୍ୟ କରିସାରିଲିଣି । ଭାବିଲି ସିହ୍ନା ଥିଲେ ଭଲ ହୋଇଥାଆନ୍ତା । ତାପରେ ଭାବିଲି, ଠିକ୍ ଅଛି... ନାହିଁ ତ ନାହିଁ । ଏକା ଯାଏ... ଏକା ଯିବାର, ଏକା ରହିବାର ଅନୁଭୂତି ବହୁ ବର୍ଷର, ଅସୁବିଧା କ'ଣ ?

ଗାଧୋଇସାରି ବାହାରୁଛି ଗୋବିନ୍ଦର ଖୋଲା ପେଟ, ହସହସ ମୁହଁ ଆଖି ଆଗରେ ପଡ଼ିଗଲା । ଗୋବିନ୍ଦ, ହଷ୍ଟେଲର ପୁରୁଣା ରୋଷେୟା, ବିହାରର କୌଣସି ଗାଁରୁ

ଛୋଟବେଳୁ ଆସି ଏଇଠି ଲାଖିଯାଇଛି । ଭାରି ସ୍ନେହୀ, ସମସ୍ତଙ୍କୁ 'ଦାଦା' ଡାକେ । ମାଛ ତରକାରୀରେ ଖଣ୍ଡିଏ ମାଛ ପିସ୍ ଦିଏ, ବାକି ଖାଲି ପାଣି, ଆଉ ସବୁବେଳେ କହେ 'ଦାଦା, ତୁମାକେ ବୋଡ଼ ପିସ୍ ଦିଏଛି, ଖେଏ ନାଓ' । ମୁଁ ହସେ, ସେ ବି ହସେ । ଏମିତି ହସ ଭିତରେ କ'ଣ ଖାଉ – ଭୁଲିଯାଏ ।

ଗୋବିନ୍ଦ ବାହା ହୋଇନି । ତାକୁ ଥରେ ପଚାରିଥିଲି କାରଣଟି । ସେ ଷଷ୍ଠ ଶ୍ରେଣୀ ଝିଅଟିଏ ପରି ଲାଜେଇ ଗଲା । ଖୋଲା ଗଣେଶ ପେଟ ସହିତ ନଣ୍ଡାମୁଣ୍ଡକୁ ଗୋବିନ୍ଦର ଲାଜେଇଯିବା ଏକ ଅଦ୍ଭୁତ ଦୃଶ୍ୟ ! ସତ୍ୟଜିତ୍ ରାୟ ଦେଖିଥିଲେ ତାଙ୍କ ଚଳଚିତ୍ରରେ ରବି ଘୋଷ ବଦଳରେ ଗୋବିନ୍ଦକୁ ନେଇ ଥାଆନ୍ତେ ! ସନ୍ଧ୍ୟାବେଳେ ଫୋନ୍ ଆସିଲେ ଗୋବିନ୍ଦ ରୁମ୍‌ରୁ ସମସ୍ତଙ୍କୁ ଡାକେ । ଲେଡିଜ୍ ହଷ୍ଟେଲରୁ ସାଧାରଣତଃ ଫୋନ୍ ଆସେ ; ଦିନେ ଦିନେ ସେ ମୋତେ ପଚାରେ 'ମୋର' କାହିଁକି କେବେ ଫୋନ୍ ଆସେନା ।

## ୩୩

ବାହାରୁ ବାହାରୁ ଶେଷରେ ଦୁଇଟା ହୋଇଗଲା । ଖରା ହୋଇଛି, କିନ୍ତୁ ବାଧୁନି । ଚାଲୁ ଚାଲୁ ପହଞ୍ଚିଗଲି ଭୁବନଡଙ୍ଗାରେ, ଷ୍ଟେସନ୍ ରାସ୍ତାରେ । ଆଛା ଏଇ ବାଟେ ତ ମୁଁ ପ୍ରଥମ ଦିନ ବୋଲପୁରରୁ କ୍ୟାମ୍ପସ୍‌କୁ ଆସିଥିଲି... ମନେ ପଡ଼ିଗଲା । ଜାଗାଟିର ନାଁ 'ଭୁବନଡଙ୍ଗା' କାହିଁକି ହୋଇଛି ? କଲିକତାରେ ସେମିତି ଜାଗାସବୁ ଅଛି, ନାଁ ହେଲା – 'ଉଲ୍‌ଟଡଙ୍ଗା', 'ନାରିକେଲ୍‌ଡଙ୍ଗା', 'ପୋଟଲ୍‌ଡଙ୍ଗା'। ଗୋଟିଏ ମିଠା ଦୋକାନରେ କିଏ ଜଣେ ମୋତେ ଡାକିବାର ଦେଖିଲି । ଭଲକି ଅନେଇଲାରୁ ଦେଖେ ତ ଭିକ୍ଷା – ଭିକ୍ଷା ମଜୁମ୍‌ଦାର, ସାଙ୍ଗରେ ବୟସ୍କା ମହିଳାଜଣେ । ପାଖକୁ ଆସି ପଚାରିଲା –

'କ'ଣ ତୁମେ ବି 'ବାଳିକାବଧୂ' ଦେଖିବାକୁ ?'

'ବାଳିକାବଧୂ ?' ସିନେମା 'ବାଳିକାବଧୂ', ମନେ ପଡ଼ିଗଲା । କିଛିଦିନ ହେଲା ଏହି ଚଳଚ୍ଚିତ୍ରଟି ଚାରିଆଡ଼େ ଖୁବ୍ ଚର୍ଚ୍ଚାର ବିଷୟ ହୋଇଛି । ମୌସୁମୀ ଚାଟାର୍ଜୀ, ସ୍କୁଲ ଝିଅଟିଏ – ବାଳିକାବଧୂ ଭୂମିକାରେ ନିଖୁଣ ଅଭିନୟ ପ୍ରଦର୍ଶନ କରିଛି ।

'ନା – ମୁଁ ଯାଉଛି ଏମିତି... ସିନେମା ନୁହେଁ ।'

'ଆସୁନ... ଯଦି ଅବଶ୍ୟ 'ମୁଖ୍ୟବକ୍ତା' ବା 'ମୁଖ୍ୟ ଅତିଥି' ଭାବେ କୌଣସି ସଭାକୁ ଯିବାର କାର୍ଯ୍ୟକ୍ରମ ନଥାଏ ! ବଉଦି ମୋ' ସାଙ୍ଗରେ ଅଛନ୍ତି, ମିଠା ବହୁତ ଖାଇସାରିଲେଣି, ତୁମକୁ ଖାଇଯିବେନି । ବଉଦି ତମ କଟକ ଝିଅ ମ ! ବଡ଼ିଆ ଜୋକ୍ ସବୁ ଜାଣନ୍ତି ।'

'ନା, ଧନ୍ୟବାଦ୍ । ମୁଁ ଟିକେ ଷ୍ଟେସନ ଯିବି । ବହୁତ ଦିନ ହେଲା ଯାଇନି । ତେବେ ବଉଦିଙ୍କୁ କହିବ – ଜୋକ୍ ସବୁ ଖର୍ଚ୍ଚ କରିନଥିବେ, ମୋ ପାଇଁ କିଛି ରଖିଥିବେ, ହେଲା ?'

ବଉଦି ଭିକ୍ଷାକୁ ପାଖକୁ ଘୋସାରି ନେଇ କ'ଣ କହିପକେଇଲେ । ସେଇଠୁ ହସି ହସି ଭିକ୍ଷା କହିଲା –

'ହଉ – ଯାଅ, ଗେଷ୍ଟହାଉସ୍ ରାସ୍ତାଟି ସେଦିନ ଦେଖେଇ ଦେଇଥିଲି, ମନେଅଛିତ ? ବର୍ଷା ସେଦିନ ହେଉଥିଲା, ମନେଅଛି ? ଏଥର ବର୍ଷା ନହେଲେ ବି, ଆସିବ, ନିମନ୍ତ୍ରଣ ରହିଲା ।'

'ସସମ୍ମାନେ ଗ୍ରହଣ କଲି'... ମୋ ପାଟିରୁ ବାହାରି ଆସିଲା । ଗୋଟେ ଲମ୍ବା 'କଲ୍‌ଗେଟ୍ ହସ' ଦେଇ ମୁଁ ପୁଣି ଷ୍ଟେସନ ରାସ୍ତାରେ ।

ଯାଉ ଯାଉ ଭାବିଲି, ଯେ କ'ଣ ହେଲା ? ସେ ଦୁହିଁଙ୍କ ସହ ଫିଲ୍ମ୍‌ଟା ଦେଖିଥିଲେ କୋଉ ପୃଥିବୀଟା ମୋର ଓଲଟି ପଡ଼ିଥାନ୍ତା ? କେଜାଣି...ଖାଲି ଫୁଟାଣି ! 'ନାହିଁ' କରି ଇମ୍ପ୍ରେସ୍ କରିବା କଥା । ନିଜକୁ ପୁଣି ପଚାରିଲି – ଆଚ୍ଛା ସବୁବେଳେ ଅନ୍ୟକୁ ଇମ୍ପ୍ରେସ୍ କରିବାରେ କାହିଁକି ମୁଁ ଲାଗିଛି ? ସ୍କୁଲରେତ ଏମିତି ନଥିଲି ? ଏହାର କାରଣ କ'ଣ ହୋଇପାରେ ?

ଷ୍ଟେସନ୍‌ରେ ବେଶୀ ଲୋକ ନାହାନ୍ତି । କୌଣସି ଗୋଟେ ଗାଡ଼ିପାଇଁ ସିଗ୍‌ନାଲ୍ ଦିଆଗଲାଣି । କ'ଣ ଆନାଉନ୍‌ସ୍ ହଉଛି – କିଛି ଶୁଣି ହେଉନି, ବୁଝି ହେଉନି । ସବୁ ରେଲ୍‌ୱେ ଆନାଉନ୍‌ସ୍‌ମେଣ୍ଟ କାହିଁକି ଏମିତି ହୁଏ – କିଛି ବୁଝି ହୁଏନା । ବୋଧେ କହିବା ଲୋକଟି ମାଇକ୍ରୋଫୋନ୍‌କୁ ପାଟିରେ ଲଗେଇ କୁହେ । ପ୍ଲାଟ୍‌ଫର୍ମ୍‌ର ଗୋଟିଏ କୋଣକୁ ଯାଇ ସିମେଣ୍ଟ୍ ବେଞ୍ଚ୍‌ରେ ବସିପଡ଼ିଲି । ପକେଟ୍‌ରୁ ସିଗାରେଟ୍‌ଟିଏ ବାହାର କରି ଦେଖେ ଦିଆସିଲି ନାହିଁ । ପାଖ ସିମେଣ୍ଟ ବେଞ୍ଚ୍‌ରେ ଲକ୍ଷ୍ୟ କଲି ମୋରି ବୟସର ପିଲାଟା ବସି ଧୁମ୍ ସିଗାରେଟ୍ ଟାଣୁଛି । ପିନ୍ଧିଥିବା ପ୍ୟାଣ୍ଟ୍‌ସାର୍ଟରୁ ଜଣାପଡୁଛି ସେଗୁଡ଼ା ସଫା ହୋଇନି... କାନ୍ଧରେ ଝୁଲୁଛି ବ୍ୟାଗ୍‌ଟିଏ – ବୋଧେ ଓଜନିଆ ବହି କେତେଖଣ୍ଡ ବ୍ୟାଗ୍ ଭିତରେ । ପାଖକୁ ଯିବାରୁ ସେ ମୋତେ ଦିଆସିଲି ବଢ଼େଇଦେଲା । ମୁଁ ଦିଆସିଲିଟି ଫେରେଇ ଦେଲାବେଳେ ଟିକିଏ ହସି ଇଂରାଜୀରେ ପଚାରିଲା – 'କ'ଣ ଶାନ୍ତିନିକେତନରୁ ?'

ଟିକେ ମୁଁ ବି ହସି କହିଲି –'ହଁ' ।

ତା'ପରେ ଆମ ଭିତରେ ଗୋଟେରକମ ଦୋସ୍ତି ହୋଇଗଲା । ପିଲାଟି ଆଇ.ଆଇ.ଟି. ଖଡଗ୍‌ପୁରର ବେଷ୍ଟ୍ ଗ୍ରାଜୁଏଟ୍, କିନ୍ତୁ ଚାକିରି ଫାକିରି ନକରି

ନକ୍ସାଲବାଡ଼ି ଆନ୍ଦୋଳନରେ ମାତିଛି । ଚାରୁ ମଜୁମ୍‌ଦାର ତାର ନେତା । ମୁଁ ଓଡ଼ିଶାର ଜାଣିବା ପରେ ନାଗଭୂଷଣ ପଟ୍ଟନାୟକଙ୍କ କଥା କହିଲା । ଘରକୁ ଯାଇନି ତିନିବର୍ଷ ହେଲା । ବାପା କଲିକତାରେ ନାମକରା ସର୍ଜନ୍ । ପିଲାଟିର ନାଁ ଦୀପଙ୍କର, ପୁରା ନାଁ କହିଲାନି । ମୁଁ ପଚାରିଲିନି ।

ପିଲାଟି ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନ ବଢ଼ିବାରେ ଲାଗିଲା । ଏତେ ଦିନପରେ ତ୍ୟାଗ ଓ ଆଦର୍ଶର ନମୁନାଟେ ପାଇଲି । ପଛରେ ଛାଡ଼ିଆସିଥିବା ସ୍ମୃତି ସହିତ ମୁଁ ଯୋଡ଼ି ହୋଇଗଲି । ହଷ୍ଟେଲକୁ ଫେରିବାକୁ ଆଉ ଇଛା ହେଲାନି । ପରିଚିତ ବଞ୍ଚିବାର ପ୍ରଣାଳୀକୁ ଦୋହରାଇବାକୁ ଆଉ ମନ କଲାନି । ବଞ୍ଚିବାର ଶପଥ ମନେ ପଡ଼ିଗଲା, ମନେ ପଡ଼ିଗଲା ଅଜଣା, ଅମଡ଼ା ବାଟର ଆକର୍ଷଣ ।

ତେବେ ମୁଁ ଶାନ୍ତିନିକେତନରେ କାହିଁକି ?

ଏମ୍.ଏ. ପଢିବାକୁ ଆସିଛି । କ'ଣ ହେଲା ସେଠୁ ? ହଜାର ହଜାର ପିଲା ଏମ.ଏ. ପଢୁଛନ୍ତି... ତାପରେ ? ଅଧ୍ୟାପକ ହେବେ, ପି.ଏଚ୍.ଡି. କରିବେ, ବିଦେଶ ଯିବେ... ଫୁଲବ୍ରାଇଟ୍ ଫେଲୋସିପ୍ ବା କମନ୍‌ଉଏଲ୍‌ଥ୍ ସ୍କଲାରସିପ୍ ନେଇ ?

ତା'ପରେ ?

ଯଦି ହୁଏ ଟେକ୍‌ସାସ୍ ବା ଷ୍ଟାନ୍‌ଫୋର୍ଡ଼ରେ, ଏମ୍.ଆଇ.ଟି. ବା ଅକ୍ସଫୋର୍ଡ଼୍‌ରେ ଅଧ୍ୟାପକ ହେବେ ବା ଭାରତ ଫେରିଆସି ଦିଲ୍ଲୀ ବା କଲିକତାରେ ପଢ଼େଇବେ । ଅଥବା ଆଇ.ଏ.ଏସ୍. ପାଇ ପ୍ରଶାସକ ହେବେ ।

ତା'ପରେ ?

'ଭଲ' ଜାଗାରେ 'ଭଲ' ଝିଅଟିଏ ବାହାହୋଇ ଘରସଂସାର କରିବେ, ଭଲରେ ରହିବେ ।

ତା'ପରେ ?

ସମାଜରେ ଶୋଷଣ,ଦୁର୍ନୀତିର ବୋଝ ମାପିବେ, କେବଳ ସେତିକି ନୁହେଁ, ଦରକାର ବେଳେ ସେହି ବୋଝକୁ ନିଜେ ମୁଣ୍ଡେଇବେ । ଭୁବନେଶ୍ୱର ଫରେଷ୍ଟପାର୍କ୍‌ରେ ଫ୍ଲାଟ୍ କିଣିବେ ବା ସାଉଥ୍ କାଲ୍‌କାଟାରେ ଫ୍ଲାଟ୍, ପିଲାଙ୍କୁ ରାଜକୁମାର କଲେଜ ବା ଡୁନ୍ ସ୍କୁଲକୁ ପଢ଼ିବାକୁ ପଠେଇବେ ।

ତା'ପରେ ?

ନାଟକରେ କୃଷ୍ଣମୂର୍ତ୍ତି ବା ଆଚାର୍ଯ୍ୟ ରାଜନୀଶ୍ ବା ସ୍ୱାମୀ ଅସୀମାନନ୍ଦଙ୍କ ନାଁରେ ଧର୍ମ, ତତ୍ତ୍ୱ, ସଂସ୍କୃତିକୁ ନେଇ ଅନୁଷ୍ଠାନ ଗଢ଼ି ତାର ସଭାପତି ହେବେ...ଖବର କାଗଜରେ ଯେମିତି ନିୟମିତ ଖବର ବାହାରୁଥିବ, ନାଁଟି, ଫଟୋଟି ପ୍ରକାଶ ପାଉଥିବ ।

ତା'ପରେ ?

ତା'ପରେ କ୍ଷମତାରେ ଥିବା ବ୍ୟକ୍ତିଙ୍କ ସହ ଚୁଳାମଣା ଓ ସଂପର୍କକୁ ପୁଞ୍ଜିକରି ଟିକଟ୍ ଲିଷ୍ଟରେ ପ୍ରଥମ ରଖି ଆଗେଇ ଯିବା କଥା । ଶେଷରେ କୌଣସି ଏକ ସମୟରେ, ସମାଜରେ, ଦେଶରେ ନେତୃତ୍ୱର ପ୍ରଶ୍ନ ଉଠିଲାବେଳେ ନାଁଟି ଉଠିପାରେ, ଅସୁବିଧା କେଉଁଠି ?

ଏଇତ ସମସାମୟିକ ସମାଜରେ ତଥାକଥିତ 'ସଫଳତା'ର ନକ୍‌ସା !

ନା, ଆଉ ଭାବି ହେଉନି । ମୁଣ୍ଡ ଗୋଳମାଳ ହୋଇଗଲାଣି । ସଫଳତାର ନକ୍ସା ସେଇଠି ଥାଉ, ମୁଁ ଫେରିଯିବାକୁ ଚାହେଁ ପିଲାଦିନର ସେହି ଛୋଟ ଛୋଟ ସ୍ୱପ୍ନକୁ – ଯାହାକୁ ସାକାର କରିବାର ସମୟ ହୁଏତ ଆସିଗଲାଣି । ମୁଁ ଦେଖେ ମୋର ପ୍ରସ୍ତୁତି କେତେ ଦୂର ! କେତେ ?

ମୋ ଆଗରେ ଦୀପଙ୍କର । ଚାହିଁଥିଲେ ସେ ତଥାକଥିତ ସାମାଜିକ ପ୍ରତିଷ୍ଠା, ସାଫଲ୍ୟ ପାଇପାରିଥାନ୍ତା । ଧନୀ, ଉଚ୍ଚଶିକ୍ଷିତ, ଆଧୁନିକ ପରିବାର ଓ ଦେଶର ସର୍ବଶ୍ରେଷ୍ଠ ଟେକ୍ନିକାଲ୍ ଡିଗ୍ରୀ – କେତେଜଣ ଭାରତୀୟଙ୍କ ଭାଗ୍ୟରେ ଜୁଟିଛି ବା ଜୁଟିବ ? ଦୀପଙ୍କର ଚାହିଁଥିଲେ ବିଦେଶରେ ବା ଭାରତରେ କୌଣସି ଭଲ ଫାର୍ମରେ ଜଏନ୍ କରି ପାରିଥା'ନ୍ତା, ବା ଗବେଷଣା ପାଇଁ ଆମେରିକା ଯାଇ ପାରିଥା'ନ୍ତା, ବା ନିଜେ ଇଣ୍ଡଷ୍ଟ୍ରି କରି କଲିକତା ବା ବମ୍ବେରେ କୋଟିପତି ହୋଇ ପାରିଥା'ନ୍ତା ! କିନ୍ତୁ ହେଲାନି କାହିଁକି ?

ଅନ୍ତରର ଡାକ ବୋଧେ ସେ ଶୁଣିବାକୁ ଚାହିଁଲା, ଶ୍ରୀ ଅରବିନ୍ଦ, ନେତାଜୀ ସୁଭାଷଙ୍କ ପରି ଭିନ୍ନ ଏକ ମଣିଷ ହେବା ପାଇଁ ସେ ଚାହିଁଲା । ଟୋୟଟା ବା ଡାଟ୍‌ସନ୍ କାର୍ ଭିତରେ ବସିବା ପିଲା ଆଜି ବୋଲପୁର ଷ୍ଟେସନର ଭଙ୍ଗା ସିମେଣ୍ଟ ବେଞ୍ଚରେ ବସି ବାର୍ମିନାର୍ ଟାଣୁଛି ! ଆଖିତାର ଆକାଶ ଆଡ଼କୁ ଲାଗିଯାଇଛି । ସେ ବୋଧେ ଭାବୁଛି :

ପାଉଁଶିଆ ଆକାଶ ପରିଷ୍କାର ହେବ କେବେ ? ନିଛାଟିଆ ଆକାଶକୁ ପକ୍ଷୀ ଆସିବେ କେବେ ? ସୂର୍ଯ୍ୟାସ୍ତ ଆଗରୁ ନା ପରେ ?

ଦୂରରୁ ଗାଡ଼ି ଆସିବାର ଶବ୍ଦ । ଦୀପଙ୍କର ମୋ' ପାଖରେ ଆସି ଛିଡ଼ାହେଲା । କିଛି କହିବାକୁ ଚାହୁଁଛି ବୋଧେ । କିନ୍ତୁ କିଛି କହିଲା ନାହିଁ । ମୁଁ ବି କିଛି ପଚାରିଲିନି । ଗାଡ଼ିଟି

ଆସି ପ୍ଲାଟ୍‌ଫର୍ମ୍ ଛାଡ଼ିବା ଉପରେ । ଆଶ୍ଚର୍ଯ୍ୟର ବିଷୟ ଗାଡ଼ିରୁ କେହି ଜଣେ ହେଲେ ବି ଓହ୍ଲେଇଲେନି, ଜଣେ ହେଲେ ବି ଚଢ଼ିଲେନି ।

ଆକାଶ ଅନେକଟା ପରିଷ୍କାର ହୋଇଗଲାଣି । ପକ୍ଷୀଙ୍କ ଶବ୍ଦ ଶୁଭିଲାଣି, କିନ୍ତୁ କାଇଁ ଗୋଟେ ହେଲେ ପକ୍ଷୀ ଦେଖା ଯାଉନାହିଁ ? ମୁଁ ଦୀପଙ୍କର କାନ୍ଧରେ ହାତ ଦେଲି ।

## ୩୪

ହଠାତ୍ ମୋତେ ଲାଗିଲା – ଦୀପଙ୍କର ଠିକ୍ ରାସ୍ତାରେ ପହଞ୍ଚିଯାଇଛି । ଅନ୍ୟମାନଙ୍କ ପାଇଁ ହୁଏତ 'ଠିକ୍' ନ ହୋଇପାରେ, କିନ୍ତୁ ଦୀପଙ୍କର ପାଇଁ ଠିକ୍ ରାସ୍ତାଟି । ସେ ରାସ୍ତାରେ ଭିଡ଼ନାହିଁ, ପରିଚିତ ମଣିଷର ଆତ୍ମରକ୍ଷାର ସ୍ୱର ବା ଗର୍ଜନ ନାହିଁ । ରାସ୍ତା ଅନେକ ଲମ୍ୱା, ଆଖି ପାଉନି... ଗଛଟିଏ ଦିଶୁନି, ଛାଇଟିଏ ନାହିଁ । ଖାଲିଅଛି, ଧାରୁଆ ପଥର ଉପରେ ପଥର, ପାହାଡ଼ – ଆକାଶକୁ ଭାଙ୍ଗି ରାସ୍ତାର ଦିପାଖରେ ଛିଡ଼ା ହୋଇଛି – କେତେ ବର୍ଷର, କେତେ ଯୁଗର କେଜାଣି ? ଦୀପଙ୍କରକୁ ଯେମିତି ଚେତେଇ ଦେଉଛି ସେହି ରାସ୍ତାରେ ଆଗେଇବା କେତେ କଠିନ । ସମସ୍ତଙ୍କ ପାଇଁ ସେ ରାସ୍ତା ନୁହେଁ,କେବଳ ଦୀପଙ୍କରମାନଙ୍କ ପାଇଁ, ଆଦର୍ଶ ଓ ବିଶ୍ୱାସର ଦୀପକୁ ଜଳେଇ ରଖିଛନ୍ତି ଯେଉଁମାନେ । ସେ ରାସ୍ତାରେ ଶହେ ବର୍ଷରେ, ହଜାରେ ବର୍ଷରେ ଜଣେ ଅଧେ ଯାତ୍ରୀ ଆସେ – ଯେପରି ବୁଦ୍ଧ, ଯୀଶୁ, ରାମକୃଷ୍ଣ, ଜିଡ୍ଡୁ କୃଷ୍ଣମୂର୍ତ୍ତୀ, ଗାନ୍ଧି ବା ମଦର୍ ଟେରିଜା ।

ଆଦର୍ଶ ଚିହ୍ନିବା ଓ ଜୀବନରେ ପ୍ରୟୋଗ କରିବା କ'ଣ ସମସ୍ତଙ୍କପକ୍ଷେ ସମ୍ଭବ ?

ପଛକୁ ଫେରିଚାହେଁ ମୁଁ । ସବୁ ଦିଶେ ଝାପ୍‌ସା, ଝାପ୍‌ସା । ମୁଁ ଚିହ୍ନିବାକୁ ଚେଷ୍ଟା କରେ କିଏ ଅଛନ୍ତି ସେଠି, ଆଦର୍ଶକୁ ଚିହ୍ନି ଯେଉଁମାନେ ଜୀବନରେ ପ୍ରୟୋଗ କରିବାର ସିଦ୍ଧାନ୍ତ ନେଇଛନ୍ତି । କିଏ ସେମାନେ ?

ଅବ୍‌ଦୁଲ୍ ? ଶରତ... ଅପୂର୍ବ... ସିହ୍ନା...ସୁମିତ୍ର... ସମୀକ୍ଷା... ଭିକ୍ଷା... ? ସେମାନଙ୍କ ଭିତରୁ କିଏ ?

ପରିଷ୍କାର କିଛି ମୁଁ ଦେଖି ପାରୁନି । ସମସ୍ତେ ଯେମିତି ଅନ୍ୟ ଏକ ପୃଥିବୀର ବରାଦୀ ମଣିଷ, ସମୟର ଇନ୍ଦ୍ରଜାଲରେ ପଡ଼ିଯାଇଛନ୍ତି, ଧରା ପଡ଼ିଛନ୍ତି । ନିଜକୁ ଚିହ୍ନିବାର କ୍ଷମତା ନାହିଁ । ଅନ୍ୟପାଖରେ ନିଜକୁ ସମର୍ପି ଦେଇଛନ୍ତି । ନିଜର ବୋଲି ନିଜ ପାଖରେ କିଛି ବାକି ନାହିଁ – ସବୁ ଚାଲିଯାଇଛି, ସବୁ ଦେଇ ଦେଇଛନ୍ତି । ଆତ୍ମରକ୍ଷା କରୁ କରୁ, ଆତ୍ମପ୍ରତାରଣା କରି ସାରିଛନ୍ତି ।

ଏଭଳି ଅସ୍ତିତ୍ୱରୁ ତାଙ୍କର ବ୍ୟକ୍ତିତ୍ୱ ଚିହ୍ନିବି କେମିତି ?

ଦଶଦିନ ଦୀପଙ୍କର ସାଙ୍ଗରେ ବିଭିନ୍ନ ପ୍ଲାଟ୍‌ଫର୍ମ୍ ଓ ଟ୍ରେନ୍‌ରେ କେମିତି କଟିଗଲା – ମୁଁ ଜାଣିପାରିଲିନି । ଦୀପଙ୍କର ନକ୍‌ସାଲବାଦୀ । ନିରୀହ ଜନସାଧାରଣଙ୍କୁ ଦୀର୍ଘକାଳ ଶୋଷଣ କରିବା ଓ ନ୍ୟାୟ ନ ଦେବା ଅବସ୍ଥାରୁ ନକ୍‌ସାଲ୍‌ବାଦର ଜନ୍ମ । ଷାଠିଏ ଦଶକର ମଧ୍ୟଭାଗରେ ସିଲିଗୁଡ଼ି ନିକଟରେ ଏକ ଅଖ୍ୟାତ ଗ୍ରାମରୁ କୃଷକବିରୋଧୀ ଧନୀ ଶୋଷକମାନଙ୍କ ବିରୋଧରେ ଚାରୁ ମଜୁମ୍‌ଦାର ଏହି ଆନ୍ଦୋଳନ ଆରମ୍ଭ କରନ୍ତି । ପରେ ପରେ ପଶ୍ଚିମବଙ୍ଗ ଓ ଭାରତର ବିଭିନ୍ନ ଅଞ୍ଚଳକୁ – ଆନ୍ଧ୍ର, ଓଡ଼ିଶା, ବିହାରକୁ ଏହି ଆନ୍ଦୋଳନ ପ୍ରସାରିତ ହୁଏ । ନକ୍‌ସାଲ୍‌ମାନେ ଉଗ୍ର ମାଓବାଦୀ । ସେମାନେ ଶୋଷକ ଓ ସରକାର ସହିତ ସାଲିସ୍ କରନ୍ତି ନାହିଁ । ଶୋଷଣ ଓ ଶୋଷକ ବିରୋଧରେ ସେମାନଙ୍କ ସଂଗ୍ରାମ । ଦୀପଙ୍କର ଜଣେ ଆଦର୍ଶବାଦୀ ନକ୍‌ସାଲ, ଅସ୍ତ୍ରଚାଳନାରେ ପ୍ରଶିକ୍ଷଣ ପାଇଛି, ଦିବାଲୋକରେ ଘଟିଥିବା ଅନେକ ହିଂସାକାଣ୍ଡରେ ଲିପ୍ତ । ସେମାନଙ୍କ ସହ ମୁକାବିଲା କରିବା ପାଇଁ ପୋଲିସ ଅସମର୍ଥ । କାରଣ ପୋଲିସବାହିନୀ ଅସ୍ତ୍ରଶସ୍ତ୍ର ଦ୍ୱାରା ସଜ୍ଜିତ ନୁହେଁ ବା ସେମାନଙ୍କ ପଛରେ ସ୍ଥାନୀୟ ଜନସମର୍ଥନ ନାହିଁ । ବରଂ ଶୋଷକଙ୍କୁ ରକ୍ଷା କରୁଥିବାରୁ ଜନଚକ୍ଷୁରେ ପୋଲିସ୍ ନିନ୍ଦିତ । ଦୀପଙ୍କର ବିହାରର ମୁଜାଫର୍‌ପୁର, ଓଡ଼ିଶାର ପାରଳାଖେମୁଣ୍ଡି ଓ ଆନ୍ଧ୍ରାର ଶ୍ରୀକାକୁଲମ୍‌ରେ କାମ କରିଛି । ପୋଲିସ୍ ଗୁଳିରୁ ଅଳ୍ପକେ ରକ୍ଷା ପାଇଛି ଅନେକଥର । ପଶ୍ଚିମବଙ୍ଗ ପୋଲିସ, ଓଡ଼ିଶା ପୋଲିସ, ଆନ୍ଧ୍ରା ପୋଲିସ, ଦୀପଙ୍କରକୁ ଖୋଜୁଛନ୍ତି । ତା ନାଁରେ ନନ୍‌ବେଲେବ୍‌ଲ୍ ସ୍ପେଟ୍ ୱାରେଣ୍ଟ୍ ।

ସେଦିନ ସଂଧ୍ୟାରେ 'ଆସୁଛି' କହି ଦୀପଙ୍କର କୁଆଡ଼େ ଉଭାନ୍ ହୋଇଗଲା । ବର୍ଦ୍ଧମାନ୍ ଷ୍ଟେସନ ପ୍ଲାଟ୍‌ଫର୍ମ୍‌ରେ ଗୋଟେ କୋଣରେ ମୁଁ ଟା' ପିଉଛି... ପଇସା ଦେଲାବେଳକୁ ଦେଖିଲି ପଇସା ନେବା ଲୋକଟି ପିନ୍ଧିଛି ରେଲ୍‌ୱଏ ଭେଣ୍ଡର୍‌ର ଇଉନିଫର୍ମ୍, ମୁରୁକି ମୁରୁକି ମୋ ଆଡ଼କୁ ଚାହିଁ ହସୁଛି । ଭଲକରି ଅନେଇଲାରୁ ଲକ୍ଷ୍ୟ କଲି ସେ ଆଉ କେହି ନୁହଁ, ଦୀପଙ୍କର । ପାଖରେ ଥିବା ହୁଇଲର୍ ବହି ଦୋକାନଆଡ଼କୁ ହାତ ଦେଖେଇ କହିଲା – 'ସେଇଠି ମୋତେ ପାଇବ ପ୍ରତି ମାସର ଶେଷ ସପ୍ତାହରେ, ସଂଧ୍ୟା ପରେ... ଏଇ ପୋଷାକ ନଥାଇ ପାରେ, ଆଉ କୌଣସି ପୋଷାକରେ ହୁଏ ତ । ଘର ଛାଡ଼ିଲିଣି ବହୁତ ଦିନୁଁ, ଫେରିବାକୁ ଇଚ୍ଛାନାହିଁ । ତୁମ ସହିତ ସମ୍ପର୍କ ରଖିବାକୁ ଚାହେଁ – ଯଦି ତୁମର ଆପତ୍ତି ନଥାଏ । ଆଉ କିଛି ଜାଣିବାକୁ ହେଲେ ସମୀକ୍ଷାକୁ ପଚାରିବ ।

ତା' ପରେ ଦେଖିଲା ବେଳକୁ ବାବୁ ଅନ୍ତର୍ଦ୍ଧାନ, ମ୍ୟାଜିସିୟାନ୍ ପି.ସି. ସର୍କାରଙ୍କ ବାଡ଼ିର ସ୍ପର୍ଶରେ କୁଆଡ଼େ ଉଭେଇଗଲା ପରି ମନେ ହେଲା । ମୋ ମୁଣ୍ଡ ଗୋଳମାଳ ହୋଇଗଲା । ସମୀକ୍ଷା କ'ଣ ନକ୍ସାଲ୍ ଗୋଷ୍ଠୀରେ ? କେବେ ଠୁଁ ? କାଇଁ କେବେତ ମୋତେ କହିନି ?

## ୩୫

ଦୀପଙ୍କର ଓ ସମୀକ୍ଷା କଥା ଭାବି ଭାବି ବର୍ଦ୍ଧମାନ ଷ୍ଟେସନ୍‌ରୁ ବୋଲ୍‌ପୁର ଆସି ରିକ୍ସାଟେ ଧରି କେତେବେଳେ ଆମ 'ବିଦ୍ୟାଭବନ' ହଷ୍ଟେଲରେ ପହଞ୍ଚି ଗଲିଣି, ମୁଁ ନିଜେ ହିଁ ଜାଣିନି । ଆସି ଦେଖେ ତ ଆମ ହଷ୍ଟେଲ୍ ଆଉ ଇଣ୍ଟରନ୍ୟାସ୍‌ନାଲ୍ ଗେଷ୍ଟହାଉସ୍ ମଝିରେ ୟୁନିଭର୍ସିଟି ବସ୍ ଦିଟା ଥୁଆ ହୋଇଛି । ସିହ୍ନା ଓ ସୁମିତ୍ର କୁଆଡୁ ବାହାରିପଡ଼ି ମୋତେ ପୁରା ଧରିନେଲେ । ଦେଖୁ ଦେଖୁ ଆଉ ପାଞ୍ଚ ଛ'ଟା ବସ୍ ଓ ଆମ୍ବାସେଡର୍ କାର୍ ଆସି ଲାଗିଗଲା । ଘଟଣା କ'ଣ ପରେ ବୁଝିଲାରୁ ଜାଣିଲି ସମସ୍ତେ ପିକ୍‌ନିକ୍ ବାହାରିଛନ୍ତି । ଏଭଳି ଘଟଣା ମୋ' ପାଇଁ ପ୍ରଥମ । ପିକ୍‌ନିକ୍‌ରେ ଯାଇଛୁ ଡିପାର୍ଟମେଣ୍ଟକୁ ନେଇ, ବା ହଷ୍ଟେଲକୁ ନେଇ, କିନ୍ତୁ ପୁରା ୟୁନିଭର୍ସିଟି ? ସେ ଯା' ହେଉ ଏକ ନୂଆ ଅଭିଜ୍ଞତା ହେବ ଭାବି ଖୁସି ହେଲି । ରୁମ୍‌କୁ ଯାଇ ସାର୍ଟ୍ ପ୍ୟାଣ୍ଟ୍ ବଦଳେଇ ମିନିଟ୍ କେଇଟାରେ ପ୍ରସ୍ତୁତ ହେବାକୁ ପଡ଼ିଲା । ଆଗରେ, ପଛରେ, ପାଖରେ, ନୂଆ, ପୁରୁଣା ମୁହଁ... । ଭାଇସ୍ ଚାନ୍‌ସେଲର୍ ନିଜେ ଯାଉଛନ୍ତି, ରେଜିଷ୍ଟ୍ରାର୍ ବି ତାଙ୍କ ସହିତ ବିଦ୍ୟାଭବନ, ଶିକ୍ଷାଭବନ, ବିନୟଭବନ, କଳାଭବନ, ସଂଗୀତ-ଭବନ, ପାଠଭବନ ପ୍ରିନ୍ସିପାଲ୍‌ସବୁ ଯାଉଛନ୍ତି । ଗଦେ ଝିଅ, ବିଭିନ୍ନ ରଙ୍ଗର ଶାଢ଼ି, ଚୁଡ଼ିଦାର, ଜିନ୍‌ସ୍... କାଇଁ କେତେ କ'ଣ ? କୁଆଡ଼େ ଯାଉଛୁ ପଚାରିବାର ଆବଶ୍ୟକତା ନାହିଁ । ଖାଲି ବସ୍ ଭିତରେ ପଶିଯିବା କଥା । ସିହ୍ନାଟା କୁଆଡ଼େ ଗଲାଣି ମୁଁ ଲକ୍ଷ୍ୟ ରଖିନି । ସୁମିତ୍ର ଡ୍ରାଇଭର୍ ସହିତ କ'ଣ ଗୋଟାଏ ଆଲୋଚନା କରି ଚାଲିଛି – ତାକୁ କିଏ ନ ଚିହ୍ନିଛି ? ମୁଁ ଏକା ଏକା, ବେଶି କାହାସହ ପରିଚୟ ନାହିଁ । ବସ୍‌ରେ ପଶୁ ପଶୁ ଦେଖିଲି ସମସ୍ତେ ବସି ପଡ଼ିଲେଣି । ମୁଁ ଆଉ ଗୋଟିଏ ବସ୍ ଆଡ଼କୁ ମୁହେଁଇଛି, ପଛରୁ ଇଂରାଜୀରେ ଝିଅଟିଏ ଡାକିଲା ତା ପାଖରେ ବସିବାକୁ । ବୁଲି ଅନେଇଲି, ହଁ ତ ଜାଗାଟିଏ ଅଛି, କିନ୍ତୁ ତା'ର କ'ଣ କେହି ସାଙ୍ଗ ନାହାନ୍ତି ? ସେ କାହିଁକି ଏକୁଟିଆ ?

ଭାବିଲି – ଛାଡ଼, ଜାଗାତ ଆଉ ନାହିଁ । ଝିଅଟା କେମିତି କେମିତି ଲାଗିଲା, ଡାକୁଛି ଯେତେବେଳେ, ଭାବିଲି – ଯିବା ବସି ପଡ଼ିବା । ତେବେ ଆରାମରେ ବସି ହେବନି ଆଗରୁ ଜାଣିନେଲି । କାରଣ ଝରକା ପାଖ ସିଟ୍ କେବଳ ଦୁଇଜଣଙ୍କ ପାଇଁ, ପତଳା ହୋଇଥିଲେ ଦୁଇଜଣ ଆରାମରେ ବସିପାରିବେ । ଝିଅଟି ତ ପତଳା ଦିଶୁନି ? ବସିବା ପରେ ଦେଖିଲି

ଝିଅଟି ପତଳା କଟନ୍ ଶାଢ଼ିଟେ ପିନ୍ଧିଛି, ମଣ୍ଡ ଢୋର୍ ଦିଆହୋଇଛି, ସେହି ସକାଶେ ମୋଟି ଦିଶୁଛି । ବସିବାପରେ କିଛି ସମୟ ନୀରବତା – ଆମ ଦୁହିଙ୍କ ଭିତରେ । ପରିଚିତ କେହି ହୋଇଥିଲେ ଏହି ନୀରବତା ଆଦୌ ଭଲ ଲାଗି ନଥାନ୍ତା । ପିଲାଟି କେଉଁ ଡିପାର୍ଟମେଣ୍ଟର କେଜାଣି ? ଭଲକରି ଦେଖି ହେଉନି, ଫାଳେ ଦିଶୁଛି । ଯାହା ଦିଶୁଛି ସେପୁଣି ତା'ର ପିନ୍ଧିଥିବା ଶାଢ଼ି ଓ ସ୍ଲିଭ୍‌ଲେଶ୍ ବ୍ଲାଉଜ୍‌ର କିଛି ଅଂଶ... କାନରେ ଡାଏମଣ୍ଡ୍ ଇଅରରିଂ, ଆଉ ଆଖିରେ କନଭେଣ୍ଟ୍ ସ୍କୁଲଝିଅଙ୍କ ହସ ଦେଖି ମନେ ହେଲା ଝିଅଟିକୁ କେଉଁଠି ଦେଖିଲା ପରି । ହଠାତ୍ ମନେ ପଡ଼ିଗଲା – ହଁ ତ... ଆମ ଡିପାର୍ଟମେଣ୍ଟର ଝିଅ । ଦିନେ ଡଃ ଘୋଷ କ୍ଲାସ ନେବେନି ବୋଲି ମୋତେ ଷ୍ଟେୟାର୍‌କେଶ୍‌ରେ କହିଥିଲା । ସେଦିନର ପର୍‌ଫ୍ୟୁମ୍ କୁଆଡ଼େ ଗଲା ? ଫ୍ରେଞ୍ଚ ପର୍‌ଫ୍ୟୁମ୍‌ର ଗନ୍ଧଥିଲା ସେଦିନ, ଆଜି ? ଝରକା ସେପଟକୁ ଖାଲି ଚାହିଁଛି ପିଲାଟି । ମୋତେ 'ବସ' କହି ଆଉ ମୋ' ଆଡ଼କୁ ନଜର ନାହିଁ । କ'ଣ ଭାବୁଛି କେଜାଣି ?

ତା କଥା ଭାବି ନିଜକୁ ଅସ୍ଥିର କରିବାର କିଛି ଆବଶ୍ୟକତା ନାହିଁ । ମୁଁ ସ୍ଥିର କରିନେଲି – ମୁଁ ବି ଝରକା ଆଡ଼କୁ ଅନେଇବି, ବହୁତ ଦୂରକୁ ଅନେଇବି, ଦୀପଙ୍କର କଥା ଭାବିବି, ସମୀକ୍ଷା କଥା ଭାବିବି । ପାଖରେ ଯେ ଆଭିଜାତ୍ୟ-ସଂପନ୍ନା, ସୁନ୍ଦର ଝିଅଟିଏ ବସିଛି –ଏକଥା ସମ୍ପୂର୍ଣ୍ଣ ଭୁଲିଯିବି ।

'କ'ଣ ତମର କେହି ସାଙ୍ଗ ନାହାନ୍ତି?'– ଆସିଲା ପ୍ରଶ୍ନ, ଝିଅଟି ପାଖରୁ ।

ମୁଁ ଟିକେ ହସି ପୁଣି ନୀରବ ରହିଗଲି ।

'କଥା କ'ଣ କି – ମୁଁ ବି ଶାନ୍ତିନିକେତନକୁ ନୂଆ ଆସିଛି... ଫାଷ୍ଟ ଇଅର୍ (ଅନର୍ସ) ଇଂଲିଶ୍ ।'

ସାଙ୍ଗ କଥା କହିବାରୁ ମୋର ସିନ୍ହା ଓ ସୁମିତ୍ର କଥା ମନେପଡ଼ିଗଲା । ଆରେ ସେ ଦିଟା କୁଆଡ଼େ ଖସିଗଲେ ? ଜଏଶୀଲନ୍ ଆସିଥିବ ବୋଧେ । ଏୟା ଭାବୁଛି, ଆଉ ଗୋଟାଏ ସଟ୍ ଆସିଲା –

'କ'ଣ ମୋ' କମ୍ପାନି ବୋଧେ ଭଲ ଲାଗୁନି ? ଉଠିଯିବି ?'

'ନା' କହି ତା' ହାତଟି ମୁଁ ଧରି ପକେଇଲି । ପାପୁଲିରେ ଝାଳ ତାର । କୌଣସି ବହିରେ ପଢ଼ିଲାପରି ମନେ ହେଲା – ପାପୁଲି ସିକ୍ତ ରହେ ନର୍ଭସ୍ ଲାଗିଲେ । ଝିଅଟିତ କିଛି ନର୍ଭସ୍ ଜଣାପଡୁନି । ବରଂ ମୁଁ, ମାନେ ମୋତେ, କେମିତି କେମିତି ଲାଗିଲାଣି । ତା' ହାତଟିକୁ ଏପର୍ଯ୍ୟନ୍ତ ଛାଡ଼ିନି, ଛାଡ଼ିବାର ଇଚ୍ଛା ଆଦୌ ନାହିଁ । କିନ୍ତୁ ଧରି ଥିବି କେତେ ସମୟ, ବୋକାଙ୍କ ଭଳି ? କିଛିତ କଥା କହିବାକୁ ପଡ଼ିବ ?

'ତମ ହାତରେ ଡବଲ୍ ଫେଟ୍ ଲାଇନ୍... ' କହୁ କହୁ କହିପକେଇଲି । ସେ ହସିଲା । ଛୋଟ ଛୋଟ ଦାନ୍ତ ଆଉ ତାର ଛୋଟ ଓଠଟି ଥରି ଉଠିଲା । ମୁଁ ତାର ହାତ ଛାଡ଼ିଦେଲି ।

ମୋ ଡାହାଣ ହାତଟିକୁ ଧରିନେଇ ସେ ଶୀଘ୍ର ପାପୁଲିକୁ ଦେଖି କହିଲା 'ତମର ମୋଟେ ଫେଟ୍ ଲାଇନ୍ ନାହିଁ, ତେଣୁ ଗୋଟେ ମୋଠୁଁ ନେଇପାର – ଫ୍ରୀ...'

ମୁଁ ହସିଲି... ସେ ବି ହସିଲା... ଏଥର କିନ୍ତୁ ଚାପା ହସ ନୁହେଁ, ଖୋଲା ହସ । ସେହି ହସରୁ ଜଣାପଡୁଥିଲା ଝିଅଟି ଯେମିତି ମାସ କେଇଟା ଆଗରୁ ପୃଥିବୀକୁ ଆସିଛି । ବାପ, ମା ପୃଥିବୀର ଏହି କୋଣରେ ତାକୁ ଏକାକୀ ଛାଡ଼ିଦେଇ ଯାଇଛନ୍ତି, ପରେ କିଛିବର୍ଷ ପରେ ହୁଏତ ନେଇଯିବେ, ଆଉ କହିଯାଇଛନ୍ତି – 'ତୁ ଏକା ଏକା ପୃଥିବୀକୁ ଚିହ୍ନିବୁ, ଜୀବନକୁ ବୁଝିବୁ, ସମ୍ପର୍କ ଗଢ଼ିବୁ – ଏକା ଏକା ।'

ସରଳ ଓ ସହଜ ମୁହଁଟିଏ । ଗୋରା ନୁହେଁ କି କଳା ନୁହେଁ । କାନ୍ଧ ପର୍ଯ୍ୟନ୍ତ ମୁଣ୍ଡର ବାଳ – ସୁନ୍ଦର, କଳା ଆଉ ସିଲ୍କ୍ ପରି ଚିକ୍ ଚିକ୍ କରୁଛି । ମୋର ବହୁତ କଥା ପଚାରିବାକୁ ଇଚ୍ଛା ହେଲା । ପୁଣି ଥରେ ତାର ହାତକୁ ଓଟାରି ନେଇ ନିଜ ପାପୁଲିରେ ଚାପି ଧରିବାକୁ ଇଚ୍ଛାହେଲା । ସିଧାସଳଖ କୋଳ ଉପରକୁ ଟାଣିଆଣି ତା' ଆଖିରେ ଆଖି ରଖି, ପଚାରିବାକୁ ଇଚ୍ଛାହେଲା –

'ଆଜିପର୍ଯ୍ୟନ୍ତ ତୁମେ କେଉଁଠି ଥିଲ ? ଆଗରୁ ଆମର ଦେଖା ହୋଇନି କାହିଁକି ?' ହଠାତ୍ ବ୍ରେକ୍, ବସ୍ ଧଡ଼୍ କରି ରହିଗଲା । ଅଧିକାଂଶ ଫଟ୍‌ଫାଟ୍ ଓହ୍ଲେଇ ପଡ଼ିଲେ ।

ମୁଁ ଅନୁଭବ କଲି ମୋ ପିଠିରେ କିଏ ଗୋଟେ ହାତ ରଖିଛି । ଉପରକୁ ଅନେଇଲା ବେଳକୁ ସୁମିତ୍ର ।

'ଚଲ୍, ଯାକ୍‌ଟୁ ନୀଚେ ଘୁରେ ଏସି ? ନା ବସେ ଥାକ୍‌ବି ?'

ଅନିଚ୍ଛା ସତ୍ତ୍ୱେ ତଳକୁ ଓହ୍ଲେଇଲି । ଝିଅଟି କିନ୍ତୁ ସେମିତି ବସି ଝର୍କାଆଡ଼କୁ, ଆକାଶ ଆଡ଼କୁ ଅନେଇ ରହିଥାଏ । ଦଶମିନିଟ ଖଣ୍ଡେ ପରେ ଯିଏ ଯୁଆଡ଼େ ବସ୍‌ରେ ବସିପଡ଼ିଲେ । ମୁଁ ମୋ ଜାଗାକୁ ଫେରିଲା ବେଳକୁ ସୁମିତ୍ର ମୋ' ପଛେ ପଛେ । କହିଲା ସାଙ୍ଗ ହୋଇ ବସିବା । ମୁଁ କହିଲି ଅସୁବିଧା ହେବ ଝିଅଟିଏ ବସିଛି । କହିଲା ଇଂରାଜୀରେ –

'ଠିକ୍ କହୁଛୁ, ଅସୁବିଧା ହେବ ? ନା ସୁବିଧା ହେବ ? ଭାବିକି କହ ।'

ମୁଁ ବଡ଼ ହଇରାଣରେ ପଡ଼ିଲି । ବେହିଆଙ୍କ ପରି ଶେଷରେ ଝିଅଟିକୁ ପଚାରିଲି, 'ଆମେ ଦୁହେଁ ତମ ପାଖରେ ବସିଲେ ବେଶୀ କିଛି ତମର ଅସୁବିଧା ହେବ କି ?'

ସେ ପୁଣି ହସିଲା ।

ସେ କିଛି କହିବା ଆଗରୁ ସୁମିତ୍ର ବସିସାରିଲାଣି । ମୋ ପାଇଁ ଫୁଟେରୁ କମ୍ ଜାଗା, ନଥିକରି ବସି ପଡ଼ିଲି । ଉଭୟଙ୍କର ଉପରେ ମୋ ଦେହର ବାଁ ଡାହାଣର ବେଶ୍ କିଛି ଭାଗ ପଡ଼ିଲା । କେମିତି ଗୋଟେ କୁରୁଳିଆ,-କୁରୁଳିଆ ଭାବ ଆସିଲାଣି । ନା, ଉଠିଯିବାକୁ ହେବ । ଏମିତି କ'ଣ ଯାଆନ୍ତି ?

ଏ' ଭିତରେ ବଂଗଳାରେ ଆଳାପ ଚାଲିଲାଣି ସେ' ଦୁଇଜଣଙ୍କ ଭିତରେ । ମାତ୍ର ମିନିଟ୍ କେଇଟାରେ ସୁମିତ୍ର କ'ଣ କହୁ କହୁ 'ତୁମି'ରୁ 'ତୁଇ' ପର୍ଯ୍ୟନ୍ତ ଓହ୍ଲାଇ ଆସିଲାଣି । ଆଉ କେତେ ମିନିଟ୍‌ରେ 'ରାଖୀ'ର ଆବଶ୍ୟକତା ପଡ଼ିପାରେ ଭାବି ମୁଁ ଡରିଗଲିଣି । ମୁଁ ସିଧା ଛିଡ଼ା ହୋଇଗଲି... ଆଃ । କି ଆରାମ୍ ! ସେମାନେ ବି ଟିକେ ନିଶ୍ୱାସ ନେଲେ ଖୁସିରେ । ଏ' ଭିତରେ ବସ୍ ଠିକଣା ଜାଗାରେ ପହଞ୍ଚିଗଲାଣି ।

ପିକ୍‌ନିକ୍ ସରୁ ସରୁ ସନ୍ଧ୍ୟା ହେବା ଉପରେ । ଗୁଡ଼ାଏ ଖେଳାଖେଳି, ଗପ, ରନ୍ଧାବଢ଼ା ପରେ ଫେରିଲା ବେଳେ ଆଉ କାହା ପାଟିରୁ କଥା ବାହାରୁନି । ସୁମିତ୍ର ପୁରା ଶୋଇଯାଇଛି ଡ୍ରାଇଭର୍ ପାଖରେ । ମୋ' ପାଖରେ ଆନ୍ତର୍ଜାତିକ ଖ୍ୟାତି ପାଇଥିବା ସ୍କଲ୍‌ପ୍‌ଟର୍ ରାମକିଂକର, ମୋତେ ଚିହ୍ନେଇ ଦେଲେ ହିନ୍ଦୀଭବନର ଜଣେ ଅଧ୍ୟାପକ । ଲୋକଜଣକ ମୋଟେ ପ୍ରଫେସର ପରି ଦିଶୁନାହାନ୍ତି । ସାନ୍ତାଳ ଯୁବକଜଣଙ୍କୁ ରବୀନ୍ଦ୍ରନାଥ କେଉଁଠି ଆବିଷ୍କାର କରିଥିଲେ କେଜାଣି, ତାଙ୍କୁ ଆଣି କଳାଭବନରେ ପ୍ରଫେସର କରିଦେଲେ । ତା' ପରେ ରାମକିଙ୍କର ତିଆରି କରିଛନ୍ତି ଚମତ୍କାର ଗାନ୍ଧିମୂର୍ତ୍ତି — ଆମେରିକାରେ, ଅଷ୍ଟ୍ରେଲିୟାରେ, ଇଂରାଜୀ ଭଙ୍ଗାଭଙ୍ଗା କହୁଥାନ୍ତି । ମୋ' ସହିତ ଭଲ ଜମିଗଲା । ମୋତେ ତାଙ୍କ ଘରକୁ ଯିବାକୁ କହିଲେ । ମୁଁ ସେମିତି ଲୋକଟି ଆଡ଼କୁ ଅନେଇ ରହିଥାଏ — ନୁଖୁରା ବାଳ, ଶାର୍ଟ୍‌ର ଉପର ବୋତାମ ଦୁଇତିନିଟା ନାହିଁ, ଛାତିର ଧଳାବାଳ କିଛି ଦିଶୁଛି । ପ୍ୟାଣ୍ଟ୍‌ରେ ନିଶ୍ଚିତ ଭାବେ ବେଲ୍ଟ୍ ଥିବ, କାରଣ ବୋତାମ ଦୁଇ ତିନିଟା ନିଶ୍ଚୟ ଛିଣ୍ଡିଯାଇଥିବ... (ମୋର ଯା' ଧାରଣା !) । ସ୍ୟାଣ୍ଡେଲ୍ ଆଡ଼କୁ ଅନେଇବା'ର ଲୋଭ ସମ୍ବରଣ କରିପାରିଲି ନାହିଁ । ଠିକ୍ ଯାହା ଭାବିଥିଲି ତାହାହିଁ ଘଟିଛି — ପ୍ରଫେସରଙ୍କ ସ୍ୟାଣ୍ଡେଲ୍ ଚପଲ ଅବସ୍ଥାକୁ ଆସିଯାଇଛି ।

ଭାବିଲି – କଳାକାର ମାନେ କ'ଣ ପ୍ରକୃତରେ ଏମିତି ? ପୃଥିବୀ ଓ ପାର୍ଥିବ ଜଗତ ସହିତ ସେମାନଙ୍କ ସମ୍ପର୍କ ଏତେ ଦୁର୍ବଳ ? ଜୀବନକୁ ସେମାନେ କିପରି ବୁଝନ୍ତି ? କିପରି ବଞ୍ଚନ୍ତି ?

ଜୀବନକୁ ବଞ୍ଚିବାଲାଗି ଓ ବୁଝିବାଲାଗି ମୁଁ ସ୍ଥିର କରିଥିଲି ଛୋଟବେଳରୁ । ବୟସ ବଢ଼ିବା ସହିତ ନୂଆ ନୂଆ ସନ୍ଦେହ, ନୂଆ ନୂଆ ପ୍ରଶ୍ନ ବି ବଢ଼ି ଚାଲିଲା । ଏକ ସୀମିତଘର ଓ ପରିବାରରୁ ବାହାରି ଆସି ଏତେ ବଡ଼ ପୃଥିବୀରେ ପଶିଲାବେଳକୁ ଅଡୁଆ ତ ନିଶ୍ଚୟ ଲାଗୁଥିଲା, କଷ୍ଟ ବି ଲାଗୁଥିଲା । ବାଧୁଥିଲା ନୂଆ ସନ୍ଦେହ ଓ ପ୍ରଶ୍ନର ବୋଝ । ମନ ଭିତରେ ନୂଆ ନୂଆ କୋଠରି ମୁଁ ଆବିଷ୍କାର କଲି । ଜୀବନର ଅନୁଭୂତିରେ ବୈଷମ୍ୟ ଓ ବିଭିନ୍ନତା ଦେଖିଲାପରେ ମନର କୋଠରି ଗୁଡ଼ିକୁ ସଜେଇ ନେଇଥିଲି । ଲାଇବ୍ରେରୀରେ ଯେମିତି ନୂଆ ଆସିଥିବା ବହିଗୁଡ଼ିକୁ ଖାଲିଥିବା ପୁରୁଣା ସେଲ୍‌ଫ୍ ଓ ଦରକାର ପଡ଼ିଲେ ନୂଆ ସେଲ୍‌ଫ୍ ତିଆରି କରି ସେଥିରେ ଏକ ନିର୍ଦ୍ଦିଷ୍ଟ କ୍ରମରେ ରଖାଯାଏ, ମୋର ସେହିପରି ପୁରୁଣା ଓ ନୂଆ ସମ୍ପର୍କ ଓ ଅନୁଭୂତି ପାଇଁ ମନ ଭିତରେ ପୁରୁଣା ଓ ନୂଆ ସେଲ୍‌ଫ୍ ଦରକାର ପଡ଼ିଲା । ନିର୍ଦ୍ଦିଷ୍ଟ କ୍ରମରେ ରଖିବି କିପରି ? ପ୍ରଥମେ ତ ବୁଝିବାକୁ ହେବ ସେହି ସମ୍ପର୍କ ଓ ଅନୁଭୂତିକୁ ? ବୁଝିବାକୁ ହେବ କିଛିଟା ଦେଖାଯାଉଥିବା ଓ କିଛିଟା ଲୁଚିରହିଥିବା ଜୀବନର ତାତ୍ପର୍ଯ୍ୟକୁ ? ତା' ସହିତ ପୁଣି ବଞ୍ଚିବାକୁ ହେବ ସମୟସ୍ରୋତରେ କାହାକୁ ଅପେକ୍ଷା ନକରି, ଭାସିଯାଉଥିବା ଓ ବେଳେ ବେଳେ ଜମାଟ ବାନ୍ଧି ରହୁଥିବା ଅନୁଭୂତିକୁ ?

ତେବେ ମୋ ପାଇଁ – କେଉଁଟା ଆଗ ? ଜୀବନକୁ ବଞ୍ଚିବା ନା ବୁଝିବା ? ଜୀବନକୁ ବଞ୍ଚୁବଞ୍ଚୁ ବୁଝିହୁଏ, ନା ବୁଝୁବୁଝୁ ବଞ୍ଚିହୁଏ ?

ବଞ୍ଚିବାର ଅନ୍ୟ ନାମ କ'ଣ ଜୀବନକୁ ବୁଝିବା ? ବୁଝିଲେ କ'ଣ ଭଲଭାବେ ବଞ୍ଚିହୁଏ ? ନା ଅନ୍ୟମନସ୍କ ରହିଲେ ଭଲଭାବେ ବଞ୍ଚିହୁଏ ? ତା'ପରେ ପ୍ରଶ୍ନ ଉଠେ – 'ଭଲଭାବେ ବଞ୍ଚିବା' ମାନେ କ'ଣ ?

'ଦିଆସିଲି ଅଛିକି ?', ପଚାରିଲେ ରାମକିଙ୍କର । ବସ୍ ଭିତରେ ସେ କ'ଣ ସିଗାରେଟ୍ ଟାଣିବେ ? – ଏମିତି ଭାବୁଛି, ଆଗଲାଇନ୍‌ରୁ ଖୋଟେ ହାତ ବାହାରି ଆସିଲା ଦିଆସିଲି ସହିତ – ପରେ ଦେଖେ ତ ସିହ୍ନା ବସିଛି ଆଗରେ, ଝରକା ଆଡ଼କୁ ମୁହଁକରି ଧୀରେ ଧୀରେ ସିଗାରେଟ୍ ଟାଣୁଛି ।

## ୩୬

ବସ୍‌ରୁ ଓହ୍ଲେଇ ହଷ୍ଟେଲ ଗଲାବେଳକୁ ଆଉ କେହି ନଥିଲେ । ମୁଁ ଏକା । ଏମିତି କେମିତି ହେଲା ମୁଁ ନିଜେ ଜାଣିପାରିଲିନି । ସିହ୍ନା ଓ ସୁମିତ୍ର ତ ନିଶ୍ଚେ ମୋତେ ଖୋଜିଥିବେ... ଡାକିଥିବେ ? ହୋଇପାରେ ଓହ୍ଲେଇଲା ବେଳେ ମୁଁ ସେମାନଙ୍କୁ ଦେଖିପାରିଲିନି ବା ଶୁଣିପାରିଲିନି । ଅନ୍ୟମନସ୍କ ଥିଲି ବୋଧେ । ଭାବୁଥିଲି ରାମକିଂକରଙ୍କ କଥା – ଭିନ୍ନ ରୁଚିର ମଣିଷଟିଏ, ସିଧା ପାଟିରୁ ଯାହା ବାହାରିଲା କହିପକାନ୍ତି । ଅନ୍ୟକୁ ଆକୃଷ୍ଟ କରିବା ପାଇଁ ବଛା ବଛା ଶବ୍ଦ ଖଞ୍ଜି, କଥା କହନ୍ତି ନାହିଁ । ଟିକେ ଟିକେ କଥାରେ ହସନ୍ତି ନାହିଁ । ବୋଧେ ବେଶୀ ସମୟ ଭାବନ୍ତି ନାହିଁ । କଳାକାର ଲୋକ, କେତେବେଳେ କ'ଣ ଭାବନ୍ତି କେଜାଣି ? ଯିବି ତାଙ୍କ ପାଖକୁ ଦିନେ ଛୁଟିଦିନ ଦେଖି, ଭାବିନେଲି । ଶାନ୍ତିନିକେତନରେ ଛୁଟିଦିନ ବୁଧବାର, ରବିବାର ନୁହେଁ । ତେଣୁ ଠିକ୍ କଲି ଆସନ୍ତା ବୁଧବାର ଦିନ ଯିବି, ପୁରା ଦିନଟା ତାଙ୍କ ସହିତ କଟେଇବି, ଯଦି ତାଙ୍କର ଆପତ୍ତି ନ ଥାଏ । କଳାକାରର ଜୀବନକୁ ଟିକେ ନିକଟରେ ଦେଖେ, ବୁଝେ ?

ରାତିରେ ଭଲ ନିଦ ହେଲାନି । ସକାଳ ହେବାକୁ ଆହୁରି ବହୁତ ସମୟ ବାକି । ଶୀତ ଶୀତ ଲାଗୁଛି... ବଂଶୀସ୍ୱର ଶୁଭିଲା ଅତି ନିକଟରୁ । ବାଃ, ସୁନ୍ଦର ! କିଏ ବଜାଉଛି କେଜାଣି ? ପିଲାଦିନେ ଗାଁ ସ୍କୁଲରେ ପଢ଼ିଲାବେଳେ ମନେ ପଡୁଛି ଏମିତି ବଂଶୀ ବଜାଉଥିଲା ଖଟୁଆ, ତଳ ସାହି ପାଣୁ ପିଇସାଙ୍କ ପୁଅ ଖଟୁଆ । ନାଁଟା ଯୋଗୁଁ ପିଲାଟି ସବୁବେଳେ ଦୁଃଖୀ । ଆମେ ତାକୁ ସବୁବେଳେ ଚିଡ଼ାଉଥିଲୁ ବିଭିନ୍ନ ସ୍ୱରରେ – 'ଖଟୁ', 'ଟୁହା', 'ଖଟୁଆ' ଇତ୍ୟାଦି ଡାକି । ପାଣୁ ପିଇସାଙ୍କୁ ଗାଁରେ କେହି କେବେ ଦେଖିଥିଲା ପରି ମନେ ହୁଏନା । ଅନ୍ତତଃ ମୁଁ କେବେ ଦେଖିନି । ଖାଲି ତାଙ୍କ କଣ୍ଠସ୍ୱର ଶୁଣିଛି, ଏବେ ବି ଶୁଣି ପାରୁଛି, 'ଖଟୁଆ... ଖଟୁଆ କିରେ... ଏ ଖଟୁଆ...' ଖରାବେଳଟାରେ ପିଇସା ଗର୍ଜନ କରନ୍ତି ସମସ୍ତେ ଶୋଇଥିଲା ବେଳେ ।

ଖଟୁଆ ଆମ ପାଖରେ । ସିଏ କାଇଁକିବା ଶୁଣିବ ? ଶୁଣି ନଶୁଣିଲା ପରି ହୁଏ । ଆଗେ ଡରୁଥିଲା, ଛେଚା ଖାଉଥିଲା, ଏବେ ଆଉ ଡରୁନି । ପୁରୁଣା ଓଷଦ ପରି ମାଡ଼ ଆଉ କାମ ଦଉନି । ଖଟୁଆ ଆମ ସାଙ୍ଗରେ ଖାଲି ନସର ପସର ହେଉଥିବ । ତାସ ଖେଳିବା ଇଚ୍ଛା, କିନ୍ତୁ ଆମେ କୋଉ ଖେଳଉ ତାକୁ ? ସେ ସ୍କୁଲ ଯାଏନି ବୋଲି ତାକୁ ସମସ୍ତେ ହତାଦର କରନ୍ତି । ମୁଁ କିନ୍ତୁ ଖଟୁଆକୁ ଭଲପାଏ... କାହିଁକି କେଜାଣି ? ଖାକି ହାଫ୍ ପ୍ୟାଣ୍ଟ୍ ତା'ର ଗାଏ ମୋଟ ଗୋଟେ, ବୋତାମ ସେଥିରେ ଗୋଟାଏ ଦି'ଟା

କେବଳ ଥାଏ ଉପର ଆଡ଼କୁ । ବେଶୀ ଭାଗ ଛିଡ଼ିଯାଇଥାଏ ବା ଛିଡ଼ିବା ଉପରେ । ତାର ପ୍ୟାଣ୍ଟ୍ ଆଣ୍ଠୁରୁ ତଳକୁ ଖସିବା ଦୃଶ୍ୟଟି ନିତିଦିନିଆ । ଆମେ ସବୁ ସେହି ଦୃଶ୍ୟଟି ଦେଖିବାରେ ଅଭ୍ୟସ୍ତ । ଖଟୁଆର କାନ୍ଧରେ ଥିବା ଗାମୁଛାଟି ପ୍ରଥମେ କି ରଙ୍ଗର ଥିଲା କେଜାଣି, ସବୁବେଳେ ମାଟିଆ ଦିଶେ ବଢ଼ିପାଣି ପରି । ମୋର ଯାହା ମନେ ପଡୁଛି, ମଳି ଜଣାପଡ଼ିବନି ବୋଲି ପାଣୁ ପିଇସା ଗାଢ଼ ବାଦାମୀ ରଙ୍ଗର କିଣି ଦେଇଥିଲେ । ଆମେ 'ଛି ଛା' କହିବାରୁ ସେ ପରେ ତାକୁ ବଦଳେଇ ଫିନ୍ ଫିନ୍ ଧଳାରଙ୍ଗ ଗାମୁଛାଟେ ନେଇ ଆସିଥିଲା । କିନ୍ତୁ ସେ ରଙ୍ଗ ଆଉ ରହିଥାନ୍ତା ? ସିଏ ଆଉ ତା' ଗାମୁଛା – କ୍ଷୀରନୀର ପରି, ଇଂରାଜୀ ଅକ୍ଷର 'କ୍ୟୁ' 'ୟୁ' ପରି ଅବିଚ୍ଛେଦ୍ୟ ଯୋଡ଼ି ।

ଗାମୁଛାଟିର ଏତେଗୁଡ଼ିଏ ବ୍ୟବହାର କେବେ ଜୀବନରେ ଦେଖି ନଥିଲି କି ବହିରେ ପଢ଼ି ନଥିଲି । ସାଧାରଣ ଜ୍ଞାନ ଖଟୁଆର ଅସାଧାରଣ । ସେଇଥିପାଇଁ ବୋଧେ ମୁଁ ତାକୁ ଭଲପାଏ । ଏଇ ଯେମିତି – ଗାମୁଛାଟି ତା'ର ଅନେକ ସମୟରେ ଶାର୍ଟ୍‌ର କାମ କରେ, କାରଣ, ମୋ ଦେଖିବାରେ ତା'ର ଗୋଟିଏ ଶାର୍ଟ୍, ଯେଉଁଟାକି ସେ କଟକ ଫଟକ ଗଲେ ପିନ୍ଧେ, ନହେଲେ ସବୁବେଳେ ଖଟୁଆ 'ବାର୍ଥ୍-ଡେ-ସୁଟ୍'ରେ ...ଖାଲି ଦିହରେ, ପ୍ରକୃତିର କୋଳରେ ଚାଲିଥାଏ । ଯିଏ ଯାହା କହିଲେ ହସିଦିଏ, ହିନ୍ଦୀ ଫିଲ୍ମ୍‌ର ମୁକ୍ରି ପରି–ନାଟକୀୟ, ସାତଥର ରିହିଅର୍ସାଲ୍ କରିଥିବା ହସ ନୁହେଁ, ସ୍ୱାଭାବିକ ନ୍ୟାଚୁରାଲ୍ ହସ । ସେଇଟା ଟିପିକାଲ୍ 'ଦି ଉଆନ୍ ଯାଣ୍ଡ୍ ଓନ୍‌ଲି' ଖଟୁଆର ହସ ।

ଗାମୁଛାର ଦ୍ୱିତୀୟ ବ୍ୟବହାର ହେଲା ପଗଡ଼ି ଭାବେ – ଡଙ୍ଗାବାଲା ସେ ପାଖ ତୁଠରୁ ଡଙ୍ଗା ଆଣିବାରେ ଡେରି କଲେ ଖଟୁଆ ଗାମୁଛାକୁ ପଗଡ଼ି କରି ଖପ୍‌କିନା ନଈ ଭିତରକୁ ଡେଇଁପଡ଼େ । ତୃତୀୟ ବ୍ୟବହାର ହେଲା – ଲୁଙ୍ଗି ହିସାବରେ । ଦି' ତିନିଜଣ ଏକା ବୟସର ପିଲାଙ୍କୁ ଦେଖି ପକେଇଲେ ଖଟୁଆ ଲୁଙ୍ଗି ଷ୍ଟାଇଲ୍‌ରେ ଗାମୁଛାଟିକୁ ପିନ୍ଧିବାକୁ ଚେଷ୍ଟା କରିଥାଏ । ଫଳ ହୁଏ ଏକ ବିଭତ୍ସ, ଲୋମହର୍ଷକ ଦୃଶ୍ୟ – ହୁଏତ ବିମଳ ରାୟ ବା ସତ୍ୟଜିତ୍ ରାୟଙ୍କ ପାଇଁ ସିନେମାଟିକ୍ ଇଫେକ୍ଟସ୍‌ରେ ପରିପୂର୍ଣ୍ଣ, ଆନ୍ତର୍ଜାତିକ ଚଳଚିତ୍ର ପ୍ରତିଯୋଗିତା ପାଇଁ ଫିଟ୍ ହୋଇପାରେ, କିନ୍ତୁ ପୁରୁଣାପାରି ପାଇଁ ନୁହେଁ । ଚିତ୍ରୋତ୍ପଳା ନଈ କୂଳେ କୂଳେ ମାଡ଼ିଯାଇଥିବା ଏହି ମଫସଲ ଗାଁଟି ପାଇଁ ଅଭାବ ଓ ଅବହେଳାକୁ ନେଇ ଗଢ଼ିଯାଉଥିବା ଜୀବନର ସଙ୍କେତ ସେଇ ଗାମୁଛା, ଯେତେବେଳେ ତାହା ଖଟୁଆର ତଳକୁ ଖସିପଡୁଥିବା ପ୍ୟାଣ୍ଟ୍ ଉପରେ ବେଲ୍ଟର କାମ କରେ । ସେ ସବୁବେଳେ ନିର୍ବିକାର – ଅମିତାଭ ବୁଦ୍ଧଙ୍କ ପରି । ମନେ ମନେ ତୁଳନା କରୁଥିବ ନିଜକୁ ଅନ୍ୟମାନଙ୍କ ସହ, କିନ୍ତୁ କେବେ କହେନି, କେବେ ପଚାରେନି ସେ ବିଷୟରେ ।

କଲେଜରେ ପଢ଼ିଲାବେଳେ ଛୁଟି ଦିନରେ ଯେତେବେଳେ ଗାଁକୁ ଯାଏ ଖଚୁଆ ସାଙ୍ଗରେ ମୋର ସବୁଠୁ ଆଗେ ଦେଖାହୁଏ । କେମିତି ସେ ଜାଣେ କେଜାଣି ? ଏୟା ହୋଇପାରେ, ସବୁବେଳେ ଦିନତମାମ୍ ସିଏ ତଙ୍ଗା ପାଖରେ ଏପାଖ ସେପାଖ ହେଉଥାଏ, ତଙ୍ଗା ଭିତରେ ବି ବସିଥାଏ । ତାକୁ କିଏ ନ ଚିହ୍ନିଛି ଗାଁରେ ? ସିଏ ବା ଗାଁରେ କାହାକୁ ନ ଚିହ୍ନିଛି ? ତାସ ଖେଳରେ ଖଚୁଆ ସବୁବେଳେ ମୋ ପାର୍ଟନର୍ – ପ୍ରଥମ ରାଉଣ୍ଡରେ କେବଳ । ଏମିତି ବୋକାମି କରେ, ତାକୁ ଜବରଦସ୍ତ ଭଲ୍ୟୁଣ୍ଟାରି ରିଟାୟାର୍‌ମେଣ୍ଟ୍ ଦ୍ୱିତୀୟ ରାଉଣ୍ଡ ପୂର୍ବରୁ ହିଁ ଦିଆଯାଇଥାଏ । କେହି ଖେଳାନ୍ତିନି ତାକୁ, ମୁଁ ଖାଲି କେବଳ ଥରେ ମୋ ପାର୍ଟ୍‌ନର କରେ ତାକୁ, ତା'ପରେ 'ଗୁଡ୍ ବାଇ ଫର୍ ଦ ଡେ' କହିଦିଏ । ସେ ବି ଖୁସ୍, ମୁଁ ବି ଖୁସ୍ । 'ବ୍ରେ' ଖେଳିଲାବେଳେ ସବୁବେଳେ ତା' ପାଖରେ 'ବ୍ରେ'... ନିଜର ଯେଉଁଟା ପାଶ୍ କରିପାରି ନଥାଏ, ଦେଇପାରି ନଥାଏ କାହାକୁ, ବା ତା' ପାଖକୁ ଯେଉଁଟା ବଳେ ବଳେ ଆସିଯାଏ । 'ଟ୍ୱେଣ୍ଟିନାଇନ୍' ଖେଳରେ ରଙ୍ଗ କେତେ ଖଣ୍ଡ ଗଲା, କେତେ ଖଣ୍ଡ ରହିଲା – ସେ କେବେ ମନେ ରଖିପାରେନା । ବିଚରା ସବୁବେଳେ ତା' ଗୋଲାମ କାଟ ଖାଏ । ଯିଏ ତା' ସହିତ ବସିଲା, ସିଏ ହାରିଲା । ଜାଣି ଶୁଣି ମୁଁ ବସେ ଓ ହାରେ, କିନ୍ତୁ ମୋର ଦୁଃଖ ନଥାଏ ।

ବୟସ ଦଶ କି ବାର । ହାରିଲେ ସେତେବେଳେ ଖରାପ ଲାଗୁ ନଥିଲା କାହିଁକି ? ପରୀକ୍ଷାରେ ଥାର୍ଡ ହେଲେ, କିଛି ନ ହେଲେ ବି, ଖରାପ ଲାଗୁ ନଥିଲା କାହିଁକି ? ଆଜି ତ ଲାଗୁଛି । ଗଲାବର୍ଷ କଲେଜ ଇଲେକ୍‌ସନ୍‌ରେ 'ପ୍ରେସିଡେଣ୍ଟ' ପୋଷ୍ଟ୍‌ରେ ଛିଡ଼ା ହୋଇ ହାରିଗଲି, ଖରାପ ଲାଗିଲା । ମନେ ମନେ ସ୍ଥିର କରିନେଲି – ଏମ୍.ଏ. ଏଲାହାବାଦ୍ ବା କଲିକତା, ଦିଲ୍ଲୀ ବା ବାଣୀବିହାର – ଯେଉଁଠି ପଢ଼ିଲେ ବି 'ପ୍ରେସିଡେଣ୍ଟ୍' ପାଇଁ ପୁଣି ଛିଡ଼ା ହେବି – ସେତେବେଳେ କଲେଜ ୟୁନିୟନ୍‌ର, ଏବେ ସମଗ୍ର ୟୁନିଭର୍ସିଟିର । ବଦ୍‌ଲା ନେବାକୁ ପଡ଼ିବ, ହାରିଯିବାର, ଦୁଃଖ ପାଇବାର ବିପକ୍ଷରେ ବଦ୍‌ଲା ।

ତେବେ ଖଚୁଆ ସେହି ମାଟିଆ, କାଦୁଆ ଗାମୁଛା ଓ ସର୍ବଦା ନିମ୍ନମୁଖୀ ହାଫ୍ ପ୍ୟାଣ୍ଟ୍‌ଟି ପିନ୍ଧି ଆମ୍ବଗଛରେ ନିଶ୍ଚେ ଗୋଟେ କୋଉଠି ବସିଥିବ ବା ନଈପଠାରେ ଖରାଟାରେ ଶୋଇ ଆକାଶକୁ ଚାହିଁ ରହିଥିବ । ମୁଁ ଥରେ ପଚାରିଲି କ'ଣ ସେ ଭାବେ ସେହି ଅବସ୍ଥାରେ । କହିଲା –

'ନାଁ କହିବିନି । ତୁ ହସିବୁ । ମୋତେ ଅନ୍ୟମାନଙ୍କ ଆଗରେ ବେଜିତ୍ କରିବୁ... କହିବିନି ।' ମୁଁ କହିଲି –

'ଆବେ କହ । ମୁଁ କାହିଁକି କାହାକୁ କହିବି ? ନ କହିଲେ, ସତେ ଯେମିତି ତୋତେ ସେମାନେ ପ୍ରଶଂସା କରି ପକେଇବେ ? ଯାଉନୁ ବାଂଛୁ ।'

'ଆବେ ମୋ ନାଁ 'ଖଚୁଆ', 'ବାଂଛୁ' ନୁହଁ'

'ଆଚ୍ଛା ହେଲା – 'ଖଚୁଆ'... ସତେ ଯେମିତି ଗୋଟେ କୋଉ କ୍ରିକେଟ୍ ବା ଟେନିସ୍ ହିରୋର ନାଁଟା !' ମୁଁ କହି ପକେଇଲି । ସେ କ'ଣ କହିଚାଲିଛି, କିନ୍ତୁ ମୋର ମନେ ପଡୁଛି... ଛୋଟ ବେଳେ ଦିନେ କ'ଣ ମନ ହେଲା – ସମସ୍ତେ ନିଜ ନିଜ ଡାକନାଁ କହିବାକୁ ଲାଗିଲେ । ଆମେ ସବୁ ମିଳେଇଲୁ... ବୁଲୁ, ଟୁଲୁ, ନିଲୁ, ପଠାଣ, ରତନା, ଦିବା, ମନ୍ଦରା, ଜଟିଆ, ମିଛୁଆ, ଗନ୍ଧିଆ, ଗୋବରା... କେତେ କ'ଣ ନାଁ ବାହାରିଲା । ହେଲେ ଖଚୁଆ ନୀରବ । ମୁଁ ପଚାରିଲାରୁ ଧୀରେ ଧୀରେ କହିଲା ତା'ର ବି ଡାକ ନାଁଟେ ଅଛି । ମାତ୍ର କେବଳ ତା' ବାପା, ମାନେ ଆମ ଗାଁଯାକର ପାଣୁ ପିଇସା, ସେଇ ନାଁଟି ବ୍ୟବହାର କରନ୍ତି ରଇବେଳକୁ, ବର୍ଷକୁ ଥରେ... ଯେବେ ଘରେ ଶାଗୁଆତି ହୁଏ । ଅଭୁଲା ମୁହୂର୍ତ୍ତର ପାଣୁ ପିଇସାଙ୍କ ସେହି ଡାକ –

'ଖଚୁଆ... ଖଚୁଆ...., ତୋପ, ତୋପ... ଏ' ତୋପ...'

ମୁଁ ଡରିଯାଏ । ଉଦୁଉଦିଆ ଖରାବେଳଟାରେ 'ତୋପ ?'ନଈ ଅତଡ଼ା ଉପରୁ ପାଣୁ ପିଇସାଙ୍କ ସେଇଟା ତ ଡାକ ନଥିଲା, ଥିଲା ଗର୍ଜନ – ତୋପ ଫୁଟିଲାପରି !

ତୋପର ବଂଶୀସ୍ୱର କିନ୍ତୁ, ଏକ ପୃଥକ୍ ପୃଥିବୀ ମୋ ଆଗରେ ଛିଡ଼ା କରିଦିଏ, ଯେଉଁଠି ପରିଚିତ ଜୀବନ ଓ ସେଥିରେ ଘଟିଯାଇଥିବା ଓ ଘଟୁ ନଥିବା ସମସ୍ତ ଘଟଣା ଅତି ନଗଣ୍ୟ ମନେହୁଏ, ଯେଉଁଠି ପହଞ୍ଚିବା ପରେ ଆଉ ଉପରକୁ ଅନେଇବାର ଆକର୍ଷଣ ନଥାଏ । ମନ ଓ ହୃଦୟ ଭିତରେ ଆପେ ଆପେ ସମୁଦ୍ରଟିଏ, ଆକାଶଟିଏ, ନୀରବତାଟିଏ ତିଆରି ହୋଇଯାଏ । ଆଉ ତା'ପରେ, ସମୟ 'ସମୟ' ହୋଇ ରହେନା, 'ଠିକ୍' 'ଭୁଲ୍' ହୋଇଯାଏ, 'ଭୁଲ୍' 'ଠିକ୍' ହୋଇଯାଏ, ପୂର୍ବରୁ ସଙ୍କୁଚିତ ହୋଇ ରହୁଥିବା ମନଟି ସମ୍ପ୍ରସାରିତ ହୋଇଯାଏ, ଆଗରୁ ଦେଖି ନଥିବା, ଦେଖିପାରୁନଥିବା ଜୀବନର କୋଠରି କିଛି ଖୋଲିଯାଏ ।

ସେହି ବଂଶୀସ୍ୱର, ଆଉ ବୋଧେ ସେଇ 'ମିଶ୍ର ପିଲୁ' ରାଗ... ଆଜି ପୁଣି ଶୁଣିବାକୁ ପାଉଛି, ନିକଟରୁ, ଖୁବ୍ ନିକଟରୁ । ଝରକା ଖୋଲି ପକେଇଲି । ଆଲୁଅ ନ ଲଗେଇ ଅନ୍ଧାରରେ ଆଗେ ଠାବ କରେ, କେଉଁଠୁ ଆସୁଛି ଏ ମୁର୍ଚ୍ଛନା ? ପାଖକୁ ଗଲି... ଭିତରେ ଅନ୍ଧାର... ରୁମ୍ ଭିତରେ ଝରକା ପାଖରେ ପଣ୍ଡିତ ହରିପ୍ରସାଦ୍‌ଟିଏ ବସି ବଂଶୀ ବଜାଉଛନ୍ତି !

## ୩୭

ସକାଳେ ଚା' ପିଇଲାବେଳେ କଳାକାରଙ୍କୁ ପଚ୍ଚରିଲି... ସୁକୁମାର, ଆମରି କ୍ଲାସରେ ପଢ଼େ । ରବୀନ୍ଦ୍ରସଂଗୀତ ଗାଏ । ଅପୂର୍ବ ! ଦେବବ୍ରତ ବିଶ୍ୱାସ ଗାଇଲା ପରି ମୋତେ ଲାଗେ । ପାଇଜାମା, ପଞ୍ଜାବି ସବୁବେଳେ ପିନ୍ଧିଥାଏ । ଲମ୍ବା ହୋଇ ପିଲାଟେ – ଅତି ଶାନ୍ତ, ଅତି ଭଦ୍ର ମନେହୁଏ । ଲଣ୍ଡ୍ରି ସେ ପାଖର ପୁରୁଣା ଦୋମହଲା କୋଠାରେ ରହନ୍ତି ଅମର ଆଉ ଅଞ୍ଜନା – ଭାଇ, ଭଉଣୀ । ସୁକୁମାର ଅଞ୍ଜନାକୁ ଭଲପାଏ । ସାଙ୍ଗ ହୋଇ ପଢୁଥିଲେ 'ପାଠଭବନ'ରେ । ପ୍ରେମ ତାଙ୍କର ଅଦ୍ଭୁତ ! 'ପ୍ଲାଟୋନିକ୍' ମନେ ହୁଏ । ସୁକୁମାର କହେ ସେ ଖାଲି ଗୋପନରେ ଦେଖା କରିଛି । ଦେଖା ହେଲେ ଦିହେଁ ରବୀନ୍ଦ୍ରସଂଗୀତ ଗାଆନ୍ତି । ଦୁହେଁ କବି, ପରସ୍ପରକୁ କବିତା ଶୁଣାନ୍ତି । ଏକାଠି, ଏପରିକି କବିତା ଲେଖନ୍ତି ବୋଧେ । ନହେଲେ ପାଖ ଗାଁକୁ ଯାଇ ବୁଧବାର ଦିନ ବା ଅନ୍ୟ ଛୁଟିଦିନ ଘଣ୍ଟା ଘଣ୍ଟା ନଈକୂଳରେ କରନ୍ତି କ'ଣ ? ସାତବର୍ଷର ରୋମାଣ୍ଟିକ୍ କ୍ୟାରିୟର୍ ଭିତରେ ସୁକୁମାରର କହିବା କଥା, ସିଏ ତିନିଥର ଚୁମା ଦେଇଛି... ଆପିଲ୍ ପିରିୟଡ୍ ଦୁଇ/ ତିନିଘଣ୍ଟା ! କି ଅବସ୍ଥା ! ଏ କି ପ୍ରେମ ? ବିଚରା ସୁକୁମାର !

ଦି' ଦିନ ପରେ ହୋଲି । ସୁକୁମାର କହିଲା ଶାନ୍ତିନିକେତନରେ ହୋଲି ମନେ ରଖିଲା ଭଳିଆ ଉତ୍ସବ, କିନ୍ତୁ ମୋର ତ ସେଦିନ ରାମକିଙ୍କରଙ୍କ ଘରକୁ ଯିବା କଥା । ସୁକୁମାର କହିଲା ରାମକିଙ୍କରଙ୍କ ଘର ଫର କିଛି ନାହିଁ, ମାନେ, ସେ ନେଇ ନାହାନ୍ତି । କଙ୍କାଳିତଳାରେ କୁଡ଼ିଆ ଟାଇପ୍‌ର ଘରଟେ କରି 'ଦେଶୀ'ରେ । ଚବିଶଘଣ୍ଟା ଡାଉନ୍... । ମୋ ଭିତରେ ଲୁଚି ରହିଥିବା ଦୁଷ୍ଟ ପିଲାଟି ପଚାରିଲା – 'କ'ଣ ସିଏ ସ୍ୱାଧୀନତା ସଂଗ୍ରାମୀ ଥିଲେ କି ? ଦେଶାତ୍ମବୋଧ ଫଳରେ ବିଦେଶୀ ଛାଡ଼ି ଦେଶୀ... ପିଉଛନ୍ତି ??'

ମୋ ସାମନାରେ ଯେତିକି ଗଛ, ସେତିକି ରାସ୍ତା । ଗଛ ଉପରକୁ, ତଳକୁ ମାଡ଼ିଯାଇଛି । ଦିନବେଳା ଛାଇ ତା'ର ଭଲ ଲାଗୁଛି, ରାତିରେ ଡର ମାଡୁଛି । ସେମିତି ରାସ୍ତା କୁଆଡ଼େ କେତେ ଲମ୍ବି ଯାଇଛି... ମୁଁ ଜାଣିପାରୁନି, ବୁଝିପାରୁନି । ସମସ୍ତେ ହୋଲିରେ ମାତିଛନ୍ତି – ସୁକୁମାର, ଅଞ୍ଜନା, ସୁମିତ୍ର, ଭିକ୍ଷା । ଖାଲି ସିହ୍ନା ନାହିଁ । ସେ ଏଭଳି ଘୁ ଘା ଭିତରେ ନଥାଏ । ରୁମ୍‌ରେ ଗୋଟେ ପରେ ଗୋଟେ ସିଗାରେଟ୍ ଟାଣୁଥିବ । ବିଡ଼ି ବି ଟାଣୁଥାଇପାରେ, ଅଥବା ପାଖ ରେଳଲାଇନ୍ କଡ଼ରେ ବସିଥିବ । ସୁକୁମାର ପୂରା ମୃଦଙ୍ଗ ବେକରେ ଓହଳେଇ ଫର୍ମ ଉପରେ । ଝିଅ ପଲେ ନାଚୁଛନ୍ତି – ତା' ଭିତରେ ନିଶ୍ଚୟ ଅଞ୍ଜନା ଥିବ । ସୁମିତ୍ର ବିଚିତ୍ର ରଙ୍ଗ ହୋଇଛି । ତାକୁ

ଚିହ୍ନିଲି ସହଜରେ, କାରଣ ବାବୁ ମୋ ପଞ୍ଜାବିଟି ପିନ୍ଧିଛନ୍ତି । ହଷ୍ଟେଲରେ ଏମିତି ଚଳେ, କିଏ କାହାର ଶାର୍ଟ୍ ପିନ୍ଧି ପକାଇଲାଣି, ବହି ନେଇଗଲାଣି । ବେଳେ ବେଳେ ଗାର୍ଲଫ୍ରେଣ୍ଡ୍ ମଧ୍ୟ ଅଦଳ ବଦଳ ହୁଅନ୍ତି । ରସିକତାର ବିଭିନ୍ନ ଦିଗ ମୁଁ ଏଇ ମାସ କେତୋଟିରେ ଲକ୍ଷ୍ୟ କଲିଣି ।

ମୁଁ ଆଉ ବେଶୀ ସମୟ ଅପେକ୍ଷା ନକରି ଚାଲିଲି ଶିଳ୍ପୀ ରାମକିଙ୍କରଙ୍କ ଘରକୁ । ଖରା ବହୁତ ହେଲାଣି... ଦେହ ମୁହଁ ଅଭିରରେ ଭର୍ତ୍ତି... ରେଳ ଲାଇନ୍ ଆଡ଼କୁ ମୁହେଁଇଲି । ଜଣଙ୍କଠୁଁ ବୁଝିଥିଲି ରେଳଲାଇନ୍ କଡ଼େ କଡ଼େ ଗଲେ ରାସ୍ତା କୁଆଡ଼େ କମ୍ ପଡ଼ିବ । ହଠାତ୍ ଗୋଟେ ଗାଡ଼ି ଆସିଲା, ବହୁତ ସ୍ପିଡ୍‌ରେ ଆସୁଛି... ଦାର୍ଜିଲିଂ ମେଲ୍ ବୋଧେ । ବସିପଡ଼ିଲି । ପାଖକୁ ଅନେଇଲି ଦଶ-ବାର ଫୁଟ ପଛକୁ ବସିଛନ୍ତି କେହି ଜଣେ... ପାଟିରୁ ଧୂଆଁ ଭସ୍‌ଭସ୍ କରି ବାହାରୁଛି । ଭଲକରି ଅନେଇଲାରୁ ଜାଣିଲି ପରିଚିତ ମୁହଁଟି... 'ଏ ତ ରାମକିଙ୍କରଦା'... ମୁହଁରୁ ବାହାରି ପଡ଼ିଲା । ସେ ବି ହାତ ହଲେଇ ପାଖକୁ ଡାକିଲେ । ଗଲି । ଉଆଟର୍ ବଟଲ୍‌ରୁ ପାଣି ପିଉଥିଲେ । ମୋତେ ବଢ଼େଇ ଦେଲେ ବଟଲ୍ ସହିତ ଥିବା ପ୍ଲାଷ୍ଟିକ୍ ଗ୍ଲାସ୍‌ଟି । ନିଜେ ଆଉ ଗୋଟେ ଗ୍ଲାସ୍‌ରେ ପିଇ ଚାଲିଥାନ୍ତି । ମୋତେ ବେଶୀ ସମୟ ଲାଗିଲାନି ଘଟଣାଟି ବୁଝିବା ପାଇଁ — ସେଇଟା ଉଆଟର୍ ବଟଲ୍ ଥିଲା, କିନ୍ତୁ ଭିତରେ କଣ୍ଟ୍ରି ଲିକର୍ । ରକ୍ଷା ହୋଇଛି ପାଣି ମିଶି ଥିଲା, ନ ହେଲେ ମୋ ଜିଭ, ପାଟି ପୋଡ଼ିଯାଇଥାନ୍ତା । ମୁଁ କୌଣସି ନାଟକୀୟ ପରିସ୍ଥିତି ସୃଷ୍ଟି ନକରି ଆସ୍ତେକରି ପିଇବାକୁ ଲାଗିଲି । କଲେଜରେ ପଢ଼ିଲା ବେଳେ, ନାଟକ ରିହିଅର୍ସାଲ୍ ଚାଲିଲା ବେଳେ ଅନେକ ଥର ଗୋପାଳପୁର ସମୁଦ୍ର କୂଳରେ — ଅଳ୍ପ ପରିମାଣରେ ହେଲେବି— ଦେଶୀ 'ଆସ୍କା-୪୦' ଡ୍ରାମାକ୍ଲବ୍‌ର କର୍ମକର୍ତ୍ତାଙ୍କ ସହିତ ହୋଇଛି । ତେଣୁ ଏହି ଅନୁଭୂତି ନୂଆ ନୁହେଁ ।

ମୋ ପକେଟରୁ ଚାର୍ମିନାର୍ ପ୍ୟାକେଟ୍ ବାହାରିବା ଦେଖି ତାଙ୍କ ଆଖି ଜଳିଉଠିଲା — ନୋବେଲ୍ ପ୍ରାଇଜ୍ ପାଇଥିଲେ ସେ ଏତେ ଖୁସୀ ହୋଇନଥାନ୍ତେ ବୋଧେ ! ମୋତେ ସେମିତି ଲାଗିଲା ।

ଏକ ଦୀର୍ଘ ନୀରବତା । ପୁଣି ଗୋଟାଏ ଗାଡ଼ି ଆସିଲା । ଧିମେଇ ଆସୁଛି... ପାସେଞ୍ଜର୍ ଗାଡ଼ିଟେ ! ମୁଁ ଗାଡ଼ିକୁ ଅନେଇଥାଏ, ହାତରେ ପ୍ଲାଷ୍ଟିକ୍ ଗ୍ଲାସ୍... ଖାଲି ହୋଇଗଲାଣି, କିନ୍ତୁ କହୁନି, ପୁଣି ସେ ଢାଳିବେ । ଅବସ୍ଥା ପରେ କ'ଣ ହେବ କେଜାଣି, ହଷ୍ଟେଲକୁ ତ ମୋତେ ଫେରିବାକୁ ପଡ଼ିବ । ରାମକିଙ୍କରଦା ସିଧା ଆକାଶକୁ ଅନେଇଛନ୍ତି... ଆଖିରେ ନବୁଝିବାର, ହଜେଇବାର ଦୁଃଖ ନାହିଁ, ଅଛି କିଛି ସ୍ୱପ୍ନ, କିଛି ସମ୍ଭାବନା ।

ନିଜକୁ ପଚାରିଲି, ମୁଁ କ'ଣ ଭାବୁଛି ? ଗାଡ଼ିଟି କେତେ ବେଳୁ ଚାଲିଗଲାଣି । ଲାଇନ୍ ଉପରେ ଛାଡ଼ିଯାଇଛି କିଛି ଧୂଆଁ । ସେହି ଧୂଆଁ ଭିତରେ ମୁଁ ଦେଖୁଛି ଶିଳ୍ପୀ ରାମକିଙ୍କର୍ ଏକ ଭିନ୍ନ ପୃଥିବୀ ତିଆରି କରିଛନ୍ତି, ଯାହା ଭିତରେ ସେଇ ପୁରୁଣା ମଣିଷ, ଆମେ ରହିଯାଇଛୁ, ମୁଁ ରହିଯାଇଛି । ଆଉ ରହିଛି ମୋର ସହଜାତ ସଂକୋଚ ଓ ଭୟ, ଯାହାକି ବର୍ଷବର୍ଷ ଧରି ନିୟନ୍ତ୍ରଣ କରି ଚାଲିଛି ମୋର ଚେତନାକୁ, ବଞ୍ଚିବାର ଶୈଳୀ ଓ ଉଦ୍ଦେଶ୍ୟକୁ । ମୁଁ ରାମକିଙ୍କର୍‌ଦାଙ୍କୁ ଅପେକ୍ଷା ନକରି ନିଜେ ପ୍ଲାଷ୍ଟିକ୍ ଗ୍ଲାସ୍‌କୁ ଭର୍ତ୍ତି କରିବାରେ ବ୍ୟସ୍ତ । ଗାଡ଼ି ପଛରେ ଛାଡ଼ି ଆସିଥିବା ଧୂଆଁ ଭିତରେ ମୁଁ ଏକ ସୁନ୍ଦର 'କଲାଜ୍' ଦେଖିପାରୁଛି । ରୋମାଣ୍ଟିକ୍ ଇଂରେଜ୍ କବି ଜନ୍ କୀଟ୍ସ୍‌ଙ୍କ 'ଗ୍ରେସିୟାନ୍ ଅର୍ନ୍' ପରି ମୋ ସ୍ମୃତିର କାନଭାସ୍‌ରେ କେତେଗୁଡ଼ିଏ ଛବି, କେତେଗୁଡ଼ିଏ ଘଟଣାର ସମୂହ ପରିପ୍ରକାଶ ଦେଖୁଛି !

ହଁ, ମୁଁ ସ୍ପଷ୍ଟ ଦେଖିପାରୁଛି ସେଦିନର ଅବ୍‌ଦୁଲ୍ ଓ ତା' କୁନିକୁନି ହାତରେ ଖବରକାଗଜରେ ଲୁଚେଇ, ସ୍କୁଲକୁ ରାତିରେ ଆଣିଥିବା ବିରିୟାନି... ଖଟରେ ନିଶ୍ଚଳ ମୋ ବୋଉର ଶରୀର... ସ୍କୁଲରେ ପଢ଼ିଲା ବେଳେ ପତ୍ରବନ୍ଧୁ ମାୟୁମୀ ହାସେଗାୱାର ଟୋକିଓରୁ ପଠେଇଥିବା ଫଟୋ... ଚିଲିକାରେ ସୂର୍ଯ୍ୟାସ୍ତ ସମୟରେ ସମୀକ୍ଷାର ସ୍ପର୍ଶ – ସବୁ ଦେଖିପାରୁଛି ।

ଦେଖିପାରୁଛି ଚିତ୍ରୋତ୍ପଳା ନଇକୂଳରେ ଡଙ୍ଗା, ଆଉ ତା' ଭିତରେ ଖଟୁଆ... ପାଖରେ ଗ୍ଲୋବ୍‌ସିନେମା ବୁକିଂ କାଉଣ୍ଟର୍ ଆଗରେ ମୁଁ, ସମୀକ୍ଷା ଓ ଚିକେନ୍‌ରୋଲ୍... ମଝିରେ ଗୋଟେ ଭିଜୁଆଲ୍ – କଟକ ଚଣ୍ଡିମନ୍ଦିରରେ ଶମ୍ଭୁସହ ଯାଇ ଚଟି ବଦଳେଇବାର... ତା'ପରେ... ତଣ୍ଟି ଶୁଖିଯାଉଛି, ମୁଁ ରାମକିଙ୍କର୍‌ଦାଙ୍କୁ ଡାକିବାକୁ ଚେଷ୍ଟା କରୁଛି... ସେ କାହାନ୍ତି ? ପାଉନି... ଖୋଜିବାର ଇଚ୍ଛା ବା ଶକ୍ତି ନାହିଁ... ୱାଟର୍ ବଟଲ୍‌ରେ ତଥାକଥିତ ୱାଟର୍ ସରିବାକୁ ବସିଲାଣି... ମୋ ଆଡ଼କୁ କିଏ ଜଣେ ମାଡ଼ି ଆସୁଛି... ବଡ଼ ମୁହଁଟାଏ, ନିଶ ବାଘର ଯେମିତି, ଆଉ ଆଖି ଜଣେ ପୁରୁଣା ଶିକାରୀର... ଲୋକଟା ମାଡ଼ି ଆସୁଛି... ମୋ'ଆଡ଼କୁ... କିଏ ସେ ? ଚିହ୍ନିଛି ମୁଁ, ଦେଖିଛି, ଅନେକ ବର୍ଷ ତଳେ... ମନେ ପଡୁନି... ମନେ ପଡୁଛି... ନା' ମନେ ପଡୁନି... କିନ୍ତୁ ଦେଖିଛି, ଅନେକ ବର୍ଷ ତଳେ... କିଏ ସେ ? ସ୍କୁଲସାଥୀ ଅବ୍‌ଦୁଲ୍‌ର ବାପା ? ହଁ ତ ! ଠିକ୍ ସେୟା ।-ସେ କେବେ କଥା କହନ୍ତିନି, ସବୁ ଠାରରେ, ଚାହାଣିରୁ ସବୁ ବୁଝିହୁଏ, ପ୍ରାକ୍ତନ ମହାରାଜା ବିକ୍ରମ କେଶରୀଙ୍କ ଦେବାନ୍ । ମୁଁ ବେଶ୍ ଡରିଗଲି ।

ତା'ପରେ ଆଉ କିଛି ଦିଶୁନି...
ଦିଶୁନି, ନା'ମୁଁ ଦେଖି ପାରୁନି ?

## ୩୮

ନିଦ ଭାଙ୍ଗିଲା ବେଳକୁ ଦିନ ଦଶଟା । ମୁଁ ମୋ' ରୁମ୍‌ରେ । ବିଛଣାରୁ ଉଠି ବାଥ୍‌ରୁମ୍‌କୁ ଯିବାକୁ ବାହାରିଛି ଦେଖିଲି ଟେବୁଲ୍ ଉପରେ ଇଂରାଜୀରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି ଜଲ୍‌ଦି ଡିପାର୍ଟମେଣ୍ଟ ଯିବାକୁ । ମୁଁ ବେଶ୍ ଡରିଗଲି । ଘଟଣାଟି ସମସ୍ତଙ୍କ ଦୃଷ୍ଟିକୁ ଚାଲିଆସିଲାକି ? ମୁଁ ରାତିରେ ନିଶ୍ଚେ କିଛି ଶସ୍ତା ଫିଲ୍‌ମୀ ସିନ୍ କରିଛି... ସମସ୍ତେ ଜାଣିଗଲେ ବୋଧେ । ତେବେ ସାଙ୍ଗରେ ଯିଏ ଥିଲେ ସେତ ଭି.ଭି.ଆଇ.ପି... ଭୟ କରିବାର କ'ଣ ଅଛି ? ସାଙ୍ଗେ ସାଙ୍ଗେ ଭାବିଗଲି, ବଡ଼ ବଡ଼ ଆର୍ଟିଷ୍ଟ, ଲେଖକ–ପିକାଶୋ, ହେମିଂୱେ, ସ୍କଟ୍ ଫିଟ୍ଜରାଲ୍‌ଡ୍, କେ.ଏଲ୍. ସାଇଗଲ୍, ମୀନାକୁମାରୀ, ସଂଜୀବ୍ କୁମାର, ଏପରିକି ଆମ ଓଡ଼ିଶାର ରଘୁଭାଇନା, ଖୋକାଭାଇ – ସମସ୍ତେ ସୋମରସ ପ୍ରିୟ... ସମସ୍ତେ କବି କୀଟ୍ସଙ୍କ କୋଇଲି ସହ, ରୁକ୍ଷ ବାସ୍ତବତାର ପୃଥିବୀକୁ ଛାଡ଼ି, ଅନ୍ୟ ଏକ କଳା ଓ କଳ୍ପନାର ପୃଥିବୀ ଖୋଜିବାରେ ବ୍ୟସ୍ତ ।

ନିଜକୁ କିଛିଟା ସ୍ୱାଭାବିକ କରି ଡିପାର୍ଟ୍‌ମେଣ୍ଟରେ ପହଞ୍ଚି ଦେଖେ ଘଟଣା ଅନ୍ୟ କିଛି । ୟୁନିୟନ୍ ଇଲେକ୍ସନ୍ ନୋଟିସ୍ ବାହାରି ଯାଇଛି । ମୋତେ 'ୟୁନିଭର୍ସିଟି ପ୍ରେସିଡେଣ୍ଟ୍' ପାଇଁ ଛିଡ଼ା ହେବାକୁ ପଡ଼ିବ – ଆମ ଡିପାର୍ଟ୍‌ମେଣ୍ଟ ଓ 'କଳାଭବନ'ର କିଛି ପିଲା ଠିକ୍ କରି ସାରିଛନ୍ତି । ମୁଁ ପ୍ରଥମେ ଟିକେ କୁଁ କାଁ କଲି । ମନେ ମନେ କିନ୍ତୁ ଖୁସି –'ଏ ମନ ଭାବୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା'... ମନେ ମନେ ଗାଇଲି ।

ଓଡ଼ିଶା କଲେଜ ଇଲେକ୍ସନ୍ ଆଉ ଶାନ୍ତିନିକେତନ ଇଲେକ୍ସନ୍ ଭିତରେ ଅନେକ ତଫାତ୍ । ଭାଷଣବାଜି ଏଠି କମ୍ । ଗ୍ରୁପ୍‌ରେ, ବ୍ୟକ୍ତିଗତ ଭାବେ – ଲାଇବ୍ରେରୀରେ, କ୍ୟାଣ୍ଟିନ୍‌ରେ ଭୋଟ୍ ବିଷୟରେ କଥାବାର୍ତ୍ତା ଓ ପ୍ରଚାର । ମୁଁ ଅଭିନୟ କଲି ସତେ ଯେମିତି ମୋର ଛିଡ଼ା ହେବାକୁ ଜମା ଇଚ୍ଛା ନାହିଁ, ମୋତେ ବାଧ୍ୟ କରାଯାଇଛି, ଡିପାର୍ଟମେଣ୍ଟର ସମ୍ମାନ ଦୃଷ୍ଟିରୁ ମୋତେ ଛିଡ଼ା ହେବାକୁ ପଡ଼ିବ, ଇତ୍ୟାଦି ।

ମୋ ବିପକ୍ଷରେ ତିନିଜଣ ଛିଡ଼ା ହୋଇଥିଲେ । ପରେ ସେମାନଙ୍କ ଭିତରେ କ'ଣ ସବୁ ବୁଝାମଣା ହୋଇଗଲା । ଶେଷରେ ତାଙ୍କ ସାମ୍ମୁଖ୍ୟ ତିଆରି ହୋଇ 'ପ୍ରେସିଡେଣ୍ଟ୍' ପୋଷ୍ଟ ପାଇଁ ଏମ୍.ଏ. ବଙ୍ଗଳା ବିଭାଗର ସିନିୟର୍ ଝିଅ ଜଣେ ଛିଡ଼ା

ହେଲା । ସେ କୁଆଡ଼େ ନର୍ସରୀ କ୍ଲାସରୁ ଶାନ୍ତିନିକେତନରେ, ମାନେ, ସତର/ଅଠର ବର୍ଷ ହେଲା ବୋଲପୁର-ଶାନ୍ତିନିକେତନର ମାଟି, ଗୋଡ଼ି ସହିତ ପରିଚିତ, ଆଉ ମୁଁ ? ମୋର ତିନିମାସ ବି ହୋଇନି ଏଠି । ଆଉ ଗୋଟେ ଅସୁବିଧା ହେଲା ମୁଁ ବଙ୍ଗଳା ଜାଣିନି । ସବୁଠି ବଙ୍ଗଳା ଭାଷାରେ ମିଟିଂ ଚାଲିଛି । ଆଗରୁ ଏଠି ଯେତେ ୟୁନିୟନ୍ ପ୍ରେସିଡେଣ୍ଟ୍ ହୋଇଛନ୍ତି, ସମସ୍ତେ ବଙ୍ଗାଳୀ ଥିଲେ । ତା'ପରେ ଆମ ଡିପାର୍ଟମେଣ୍ଟକୁ ଛାଡ଼ିଦେଲେ ସପୋର୍ଟବେସ୍ ଆଉ କୋଉଠି ମୁଁ ଦେଖିପାରୁନି । ଓଡ଼ିଆ ବିଭାଗରେ ସବୁ ମିଶି ୪-୫ ଜଣ ପିଲା । ସେମାନଙ୍କ ଭିତରୁ ଦୁଇଜଣ ମୋତେ ପ୍ରତିଦିନ ଓହରିଯିବାକୁ କହିଚାଲିଛନ୍ତି... ମୁଁ ହାରିଯିବି, ହାସ୍ୟାସ୍ପଦ ପରିସ୍ଥିତି ହୋଇପାରେ, ଇତ୍ୟାଦି ।

ଏସବୁ ଶୁଣି ମୋର ଜିଦ୍ ବଢ଼ିଲା । ନିଜ ଭିତରେ ଛୋଟବେଳୁ ଲକ୍ଷ୍ୟ କରିଛି ପ୍ରତିକୂଳ ପରିସ୍ଥିତିରେ, ଚ୍ୟାଲେଞ୍ଜ୍ ଥିଲେ, ମୁଁ ଭଲ ମୁକାବିଲା କରିପାରେ । ଭିତରେ କେଉଁଠି ବ୍ୟବହାର ନ ହୋଇଥିବା, ଲୁଚିରହିଥିବା ସାହସ ଓ ଶକ୍ତି ଥାଏ କେଜାଣି, ମୁଁ ସାଧାରଣତଃ ସଫଳ ହୋଇଥାଏ ।

ବେଶୀ କିଛି କରିବାକୁ ପଡ଼ିଲାନି । ମୋତେ କଣ୍ଟେଷ୍ଟ୍ କରୁଥିବା ଝିଅକୁ ଥରେ ଦେଖାକରି 'ଦିଦି ଫିଦି' ଡାକି, ଟେକାଟେକି କରି କହିଲି – ମୁଁ ଖାଲି ସେମିତି ଛିଡ଼ା ହୋଇଛି... ହାରି ଯିବି ନିଶ୍ଚେ... ମୋତେ କିଏ ଏଠି ଚିହ୍ନିଛି ଯେ ଭୋଟ ଦେବ ?... ମୁଁ ତାଙ୍କର ଜଣେ ବିରାଟ ଫ୍ୟାନ୍... ଇତ୍ୟାଦି ।

ସେ ଖୁବ୍ ଖୁସି ହୋଇଗଲେ, ଆଉ ସେଦିନଠୁଁ ପ୍ରଚାରସଭାକୁ ଗଲେ ନାହିଁ, ଧରିନେଲେ ମୁଁ ସତରେ ହାରିଯିବି । କ୍ୟାଣ୍ଟିନ୍‌ରେ ଥରେ 'ରାଜଭୋଗ' ବି ଖୋଇ ପକେଇଲେ – ଖୁସିରେ । ଶେଷରେ ମୋ ଷ୍ଟ୍ରାଟେଜି କାମ ଦେଲା । ଇଲେକ୍ସନ୍ ପୂର୍ବଦିନ 'ହ୍ୱାଇ-ଆଇ-ଷ୍ଟାଣ୍ଡ୍' ମିଟିଂରେ ଘାଟିହେଲା ମୋତେ ବଙ୍ଗଳାରେ କହିବାକୁ ପଡ଼ିବ । ମୁଁ ବା କେତେ ବଙ୍ଗଳା ଜାଣିଛି, କହିବି ? ମୁଣ୍ଡରେ ଗୋଟେ ବୁଦ୍ଧି ପଶିଲା । ମାଇକ୍ ପାଖକୁ ନେଇ କହିଲି – ମୁଁ ନିଶ୍ଚୟ ବଙ୍ଗଳାରେ କହିବି । ଯଦି ଦିଦି ଶୁଦ୍ଧ ଇଂରାଜୀରେ ଦଶଟି ବାକ୍ୟ କହିବେ, ତା'ହେଲେ ଅଶୁଦ୍ଧ ହେଉପଛେ; ବଙ୍ଗଳାରେ ମୁଁ କୋଡ଼ିଏଟି ବାକ୍ୟ ନିଶ୍ଚୟ କହିବି ।

ଦିଦିଙ୍କ ପାଇଁ ବଡ଼ ଅସୁବିଧା ପରିସ୍ଥିତି ହେଇଗଲା । ଦିଦି ଲମ୍ବା ଚଉଡ଼ା ଦେଖିବାକୁ ନିଶ୍ଚୟ... 'ସୁନ୍ଦର' କୁହାଯାଇପାରେ, କିନ୍ତୁ ଇଂରାଜୀଭାଷାଟି ତାଙ୍କର ସୁନ୍ଦର ନୁହେଁ । ଇଂରାଜୀରେ ଭାଷଣ... ନା, କେବେ ପାରିବେନି ! ଶେଷରେ ସେ

ବଙ୍ଗଳାରେ ହଁ କହିଲେ, ମୁଁ ଇଂରାଜୀରେ । ଶେଷ ଆଡ଼କୁ ଯାତ୍ରୁ ସ୍ୟାତ୍ରୁ ଯୋଗାଡ଼ କରିଥିବା ବଙ୍ଗଳା ଟିକେ କହି ପକେଇଲି । ତେବେ ମୋର କହିବା କଥା – 'ମହାମାନବ'ର ଦେଶରେ ଗୁରୁଦେବ ରବୀନ୍ଦ୍ରନାଥଙ୍କ 'ବିଶ୍ୱଭାରତୀ'ରେ ଛାତ୍ର ୟୁନିୟନ୍ ସଭାପତି ଆନ୍ତର୍ଜାତିକ ଭାଷା, ଇଂରାଜୀ ନକହି ବଙ୍ଗଳା କାହିଁକି କହିବ ? କେତେ ବିଦେଶୀ, ଅଣବଙ୍ଗାଳୀ ପିଲା ଅଛନ୍ତି ! ଆଉ ଯଦି ସେ ବଙ୍ଗଳା ନ ଜାଣିଛି, ପରେ ଆସ୍ତେ ଆସ୍ତେ ଶିଖିନେବ... କ୍ଷତି କ'ଣ ? ବଙ୍ଗଳା ଜାଣିନି ବୋଲି ବା ଆଗରୁ କେହି ପଶ୍ଚିମବଙ୍ଗ ବାହାରୁ 'ପ୍ରେସିଡେଣ୍ଟ୍' ହୋଇ ନଥିଲେ ବୋଲି କ'ଣ ସେ 'ପ୍ରେସିଡେଣ୍ଟ୍' ପୋଷ୍ଟ ପାଇଁ ଅଯୋଗ୍ୟ ? ପଏଣ୍ଟଟା କାମ ଦେଲା । ଯେଉଳି ଭାବରେ ଶୁଣିଲେ, ମୋତେ ଲାଗିଲା, ପିଲାମାନେ ମୋ ଆଡ଼କୁ ଢଳିଲେଣି ।

ରାତିରେ ହଷ୍ଟେଲକୁ ଫେରୁ ଫେରୁ ଦଶଟା । କେହି ଶୋଇ ନାହାନ୍ତି । ପୂରା 'ବିଦ୍ୟାଭବନ' ହଷ୍ଟେଲରେ ସମସ୍ତେ ଜଣେ ଜଣେ ପ୍ଲାଟୋ, ଆରିଷ୍ଟୋଟ୍ଲ୍ ହୋଇଯାଇଛନ୍ତି । ସମସ୍ତଙ୍କ ଚିନ୍ତା – କାଲି କ'ଣ ହେବ... ମୁଁ ଜିତିବି ତ ? ରୁମ୍‌କୁ ଗଲା ବେଳକୁ ପାଖ ରୁମ୍‌ରୁ ମଣିପୁର ପିଲା ଦି'ଟା ଚିଲେଇବାରେ ଲାଗିଲେଣି । ମୋ ରୁମ୍‌ରେ ପହଞ୍ଚିଲା ବେଳକୁ ସେଠି 'କଳାଭବନ', 'ଶିକ୍ଷାଭବନ'ର କେତେଜଣ ପୁଅଝିଅଙ୍କୁ ନେଇ ସୁମିତ୍ର, ସୁକୁମାର କ'ଣ ସବୁ ଇଲେକ୍‌ସନ୍ ବିଷୟରେ ଫୁସୁରୁଫାସର ହେଉଛନ୍ତି । ଶେଷରେ କମନ୍‌ରୁମ୍ ଆଡ଼କୁ ମାଡ଼ିଗଲି । ଅନିଲ୍ ସମର୍ଥ ଏକା ବସି 'ରେଡିଓ ସିଲୋନ୍'ରୁ ଦୁଃଖ ଗୀତଟିଏ ଶୁଣୁଛି... ଯିଏ କେହି କହିପାରିବ କିଏ ଗାଉଛନ୍ତି – 'ଯୋ ପ୍ୟାର୍ ମୈନେ ତୁଝକୋ ଦିଆ ଥା / ଓ ପ୍ୟାର୍ ଫିର୍ ମୈ ଲୌଟା ରହା ହୁଁ ।' 'ପ୍ୟାର୍' ଦିଆ ନିଆ ହିସାବ ରଖିବାକୁ ବେଳ ନାହିଁ, ଇଚ୍ଛା ନାହିଁ । ନିଦ୍ରାଦେବୀ ଅତି ନିକଟକୁ ଆସିଗଲେଣି । ମୁଁ ଆଉ ତାଙ୍କୁ ଫେରାଇ ପାରୁନି । ଆସ୍ତେ ଆସ୍ତେ ମୋର ଆଖି ଦୁଇଟି ବନ୍ଦ ହେବା ଉପରେ... ପରିଚିତ ପୃଥିବୀରୁ ମୁଁ ଘୁଞ୍ଚିଘୁଞ୍ଚି ଯାଉଛି ଦୂରକୁ..., ଅନେକ ଦୂରକୁ ।

## ୩୯

ଇଲେକ୍‌ସନ୍ ସରିଲାଣି, ଗଣତି ଚାଲିଛି । ମୁଁ ଖସି ଆସି ମୋ ରୁମ୍‌ରେ, ବିଛଣାରେ ଛଟପଟ ଅବସ୍ଥାରେ । ଗୋଟାଏ ଚିନ୍ତା – ଶେଷ ଚାନ୍ସ୍ ଏଥର, ଜିତିବି ନା ହାରିବି ? କିଛି ସମୟ ପରେ ବାଣ ଫୁଟା ଶବ୍ଦ ଶୁଭିଲା । ତା' ମାନେ, ଫଳାଫଳ ବାହାରି ଗଲାକି ?

କାଇଁ ମୋ' ପାଖକୁ ତ କେହି ଆସିଲେନି ? ହାରିଗଲିକି ମୁଁ ? ଫୋନ୍ ଶବ୍ଦକୁ କାନଡେରି ସେମିତି ବିଛଣାରେ ପଡ଼ିଥାଏ ।

ପୁଣି ବାଣ ଫୁଟିଲା । ଏଥର 'କ୍ରିଂ କ୍ରିଂ' ଶବ୍ଦ – କିଚେନ୍ ଫୋନ୍‌ରୁ । ମୁଁ ଇଲେକ୍‌ଟ୍ରିକ୍ ସକ୍ ଖାଇଲା ପରି ବିଛଣାରୁ ଉଠି କୁଦାଟେ ମାରି ଚଉକି ଉପରେ । ରୁମ୍ ଖୋଲି ବାହାରକୁ ଯିବି ଭାବୁଛି, ଗୋବିନ୍ଦ ଅଧାଟେକା ଲୁଙ୍ଗି ଓ ଖୋଲା ପେଟରେ ଧଇଁ ସଇଁ ହୋଇ ମୋ ରୁମ୍ ପାଖରେ ହାଜର – 'ଦାଦା... ତୁମି ଜିତେଗେଛ... ଜିତେଗେଛ... ମିଷ୍ଟି ଦାଓ, ମିଷ୍ଟି... ତାଡ଼ାତାଡ଼ି' । ଏ ଭିତରେ ହଷ୍ଟେଲ ପିଲା ଆମର ୫-୬ ଜଣ ଆସି ପହଞ୍ଚିଗଲେଣି । ତା' ହେଲେ ଶେଷରେ ମୁଁ ଜିତିଗଲି, ଭଲ ମାର୍ଜିନ୍ ନେଇ । ଦୁଇଶହ ଚବିଶ ଅଧିକା ଭୋଟ ମିଳିଥିଲା ।

ତା'ପରେ... ଗୋଟିକ ପରେ ଗୋଟିଏ ଉତ୍ସବ, ସଭା । ଓଡ଼ିଶାର ଖବରକାଗଜମାନଙ୍କରେ ଖବରଟି ବାହାରିଗଲା । ତା'ପରେ ଚିଠି, ଅଭିନନ୍ଦନ – ପ୍ରିନ୍‌ସିପାଲ୍ ଡଃ ମାନସିଂ, ଡଃ ହରେକୃଷ୍ଣ ମହତାବ, ଅନେକ ମନ୍ତ୍ରୀ, ସାଂସଦ, ବ୍ରହ୍ମପୁରରୁ, ବୁର୍ଲାରୁ, କଟକରୁ ପଠେଇଛନ୍ତି । ତା'ପରେ... ବିଶ୍ୱଭାରତୀ ଚାନ୍‌ସେଲର୍ ଇନ୍ଦିରା ଗାନ୍ଧିଙ୍କ ସହ ଫଟୋ ସେସନ୍, ଡିନର୍ ।

ଶ୍ରୀମତୀ ଗାନ୍ଧିଙ୍କୁ ଫଟୋରେ, ଖବରକାଗଜରେ ଖାଲି ଦେଖିଥିଲି, ପାଖରେ କେବେ ଦେଖି ନଥିଲି, କଥାବାର୍ତ୍ତା କରି ନଥିଲି । ଭୁବନେଶ୍ୱର ସଭାରେ ଟେକାମାଡ଼ରେ ନାକ ତାଙ୍କର ଫାଟିଯାଇଥିଲା । ସେହିଦିନ ବ୍ରହ୍ମପୁରରେ ଥିଲେ ବି ଆମକୁ କୁଆଡ଼େ ପୋଲିସ୍ ସନ୍ଦେହ କରି ଖୋଜୁଥିଲା ଭୁବନେଶ୍ୱରରେ । ସି.ଆଇ.ଡି. ସ୍ପେଶାଲ୍ ବ୍ରାଞ୍ଚ୍ ଏସ୍.ପି. ମୋର ସମ୍ପର୍କୀୟ ବନ୍ଧୁ – ତାଙ୍କ ଜରିଆରେ ଜାଣିବା କଥା ।

ନେହେରୁଙ୍କ ସମୟରୁ ଭାରତର ପ୍ରଧାନମନ୍ତ୍ରୀ ହିଁ ଶାନ୍ତିନିକେତନ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର କୁଳପତି ବା ଚାନ୍‌ସେଲର୍ ହୋଇଛନ୍ତି । ଶ୍ରୀମତୀ ଗାନ୍ଧି ହେବାର ଆଉ ଏକ କାରଣ,ସେ ନିଜେ ଏଠାକାର ଛାତ୍ରୀ ଥିଲେ । କନ୍‌ଭୋକେସନ୍‌କୁ ସବୁ ବର୍ଷ ଆସନ୍ତି, ଏଥର ବି ଆସିଲେ । ଆମ ୟୁନିୟନ୍‌ର ହେଲେ ମୁଖ୍ୟ ଅତିଥି, ମୁଖ୍ୟ ଆକର୍ଷଣ ।

ଲମ୍ବା ଆକୃତି, କ୍ଷୀପ୍ର ଗତି – କାଶ୍ମିରୀ ଚେହେରା ଓ ରଙ୍ଗ । ତାଙ୍କ ସହିତ ପାଦ ମିଳାଇ ଚାଲିବା ମୁସ୍କିଲ୍ । ଭାଇସ୍‌ଚାନ୍‌ସେଲର୍ କାଳିଦାସ୍‌ଦାଙ୍କ ସହିତ କଥାବାର୍ତ୍ତା କଲାବେଳେ ସେ ମଝିରେ ମଝିରେ ବଙ୍ଗଳା କହି ପକାନ୍ତି ।

'ବଙ୍ଗଳାରେ ହସି ବି ପାରନ୍ତି' – ମୁଁ କହିଥିଲି । ଶ୍ରୀମତି ଗାନ୍ଧି ହସି ଉଠିଲେ । ହସିଲେ ନେହେରୁଙ୍କ ପରି ଖୁବ୍ ସୁନ୍ଦର ଦିଶନ୍ତି । ରବୀନ୍ଦ୍ରନାଥଙ୍କ ସହ ଇନ୍ଦିରାଙ୍କ ଛୋଟବେଳର, 'କଳାଭବନ'ରେ ପଢ଼ିଲା ବେଳର ଫଟୋ ଶାନ୍ତିନିକେତନରେ ଦେଖିଥିଲି – ବଡ଼ ବଡ଼ ଆଖି, ଲମ୍ବା ନାକ, ବବ୍‌କଟ୍ ବାଳ – ଆଜି ବିଶ୍ୱର ବୃହତ୍ତମ ଗଣତନ୍ତ୍ରର ପ୍ରଧାନମନ୍ତ୍ରୀ । ଭାବିଲେ କେମିତି ଗୋଟାଏ ଆନନ୍ଦ, କେମିତି ଗୋଟାଏ ଶିହରଣ ଆସୁଛି ।

ମୋ ଜିତିବା ପଛରେ କିଛି ପରିମାଣରେ ଥିଲା ମୋ 'ଦୁଇ-ପଏଣ୍ଟ୍-ଇସ୍ତାହାର' – ଏକ୍, ବିଶ୍ୱଭାରତୀରେ ଏମ୍.ଏସ୍.ସି. ଓ ବିଜ୍ଞାନରେ ପି.ଏଚ୍.ଡି./ ଡି.ଏସ୍.ସି. ଖୋଲିବ; ଦୁଇ, ବାଧ୍ୟତାମୂଳକ ଥିବା ଗେମ୍‌ସ୍ ଉଠିବ । ଏହି ଦୁଇଟି ଦାବି ନେଇ ଯେତେବେଳେ ପ୍ରକ୍ଟର୍ ଡଃ ତିୱାରୀ ଓ ଭାଇସ୍‌ଚାନ୍‌ସେଲର୍ ଡଃ. ଭଟ୍ଟାଚାର୍ଯ୍ୟଙ୍କ ପାଖରେ ପହଞ୍ଚିଲି, ସେମାନେ ସିଧାସଳଖ ମନା କରିଦେଲେ । କାରଣ, ଟଙ୍କା ନାହିଁ ନୂଆ କୋର୍ସ ଖୋଲିବାକୁ । ତା'ଛଡ଼ା ଆଶ୍ରମବାସୀଙ୍କ ମତାମତ ହେଲା ଗୁରୁଦେବ କୁଆଡ଼େ କଳା ଓ ସାହିତ୍ୟ ପାଇଁ ବିଶ୍ୱଭାରତୀ କରିଥିଲେ, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପାଇଁ ନୁହେଁ । କେହି କହିଲେ – ସାଇନ୍ସ ପି.ଜି. ଓ ରିସର୍ଚ୍ଚ୍ କୋର୍ସ୍ ଖୋଲିଲେ ଗଣ୍ଡଗୋଳ ଆରମ୍ଭ ହୋଇଯିବ, ପରେ ପରେ ଦାବି ହେବ ମେଡିକାଲ୍ ଓ ଏଞ୍ଜିନିୟରିଂ କୋର୍ସ ଖୋଲିବାକୁ ଇତ୍ୟାଦି, ଇତ୍ୟାଦି ।

ଏଠି ଡଜନେ ଖଣ୍ଡେ ଖେଳପଡ଼ିଆ ଥିବାର ଦେଖୁଛି – ବେଶ୍ ବଡ଼ ଧରଣର, ଏପରିକି ଏକାବେଳକେ ମୋହନ୍‌ବାଗାନ୍-ଇଷ୍ଟ୍‌ବେଙ୍ଗଲ୍ ଭିତରେ ମ୍ୟାଚ୍ ବି ହୋଇ ପାରିବ ଆରାମ୍‌ରେ । କିନ୍ତୁ ଦୁଃଖର ବିଷୟ, ଏଠିକା ପିଲା ଜିଲ୍ଲାସ୍ତରୀୟ ଟୁର୍ଣ୍ଣାମେଣ୍ଟରେ ବି କେବେ ଜିତି ନାହାନ୍ତି । କୋଚ୍, ଇନଷ୍ଟ୍ରକ୍‌ଟର୍ ୧୫-୨୦ ଅଛନ୍ତି – କେନ୍ଦ୍ରୀୟ ସରକାରୀ କର୍ମଚାରୀ ଭାବେ ଦରମା ଓ ଅନ୍ୟାନ୍ୟ ଭତ୍ତା – ହ୍ୱିସିଲ୍ ମାରି ସନ୍ଧ୍ୟାରେ ସର୍ଟ୍‌ସ୍ ଫର୍ଟ୍‌ସ୍ ପିନ୍ଧି ଆବୁରୁଜାବୁରୁ ହୁଅନ୍ତି – ରେଜଲ୍ଟ୍ ଆଳୁ । ଏଭଳି ପରିସ୍ଥିତିରେ ପୋଷ୍ଟ୍‌ଗ୍ରାଜୁଏଟ୍ ପିଲାଙ୍କ ପାଇଁ ବାଧ୍ୟତାମୂଳକ ଖେଳ ରଖିବାର ତାତ୍ପର୍ଯ୍ୟ କ'ଣ ରହିଲା ମୁଁ ବୁଝିପାରୁ ନଥାଏ ।

ଖୋଳାତଡ଼ା କରି ପରେ ମୁଁ ଜାଣିଲି ସୁପ୍ରିମ୍‌କୋର୍ଟ୍‌ର ମୁଖ୍ୟବିଚାରପତି ସୁଧିରଂଜନ ଦାଶ ଅବସର ଗ୍ରହଣ କରିବା ପରେ ଯେତେବେଳେ ଏଠି ଭାଇସ୍-ଚାନ୍‌ସେଲର୍ ହେଲେ, ସେ ଦେଖିଲେ କ୍ଲାସ ପରେ କ୍ୟାଂପସ୍‌ରେ ଖାଲି ଝିଅ-ପୁଅ ମାଳମାଳ ବୁଲୁଛନ୍ତି : କ୍ୟାଣ୍ଟିନ୍‌ରେ ପଞ୍ଚାଏ, ଫୁଟ୍‌ବଲ୍ ପଡ଼ିଆ ଚାରିପାଖରେ ଥିବା

ସିମେଣ୍ଟ ବେଞ୍ଚରେ, ଲାଇବ୍ରେରୀ ବାରଣ୍ଡାରେ, 'ଆମ୍ରକୁଞ୍ଜ' ତଳେ, ଯେଉଁଠି ଦେଖିବ ଖାଲି ମେଳା – ଝିଅପୁଅ, ପୁଅଝିଅ । ଏହା ଦେଖି ସେ ବୋଧେ ବିରକ୍ତ ହୋଇ ଖେଳକୁ ବାଧ୍ୟତାମୂଳକ କରିଦେଲେ । ସକାଳେ ଓ ରାତିରେ 'ବୈତାଳିକ' ଯେମିତି ବାଧ୍ୟତାମୂଳକ ହେଇଗଲା । ଭଲ କଥାଟିଏ କଲେ, କିନ୍ତୁ ସେ ଚାଲିଗଲା ପରେ ଖେଳର ନାଁ ଗନ୍ଧ ନାହିଁ, କିନ୍ତୁ ପିଲାଙ୍କୁ ପଡ଼ିଆରେ ଉପସ୍ଥିତ ରହିବାକୁ ପଡ଼ିବ ! ପି.ଟି.ଆଇ.ଙ୍କ କି ଦୌରାତ୍ମ୍ୟ ! ଆମ ଦେଶରେ ଟିକେ କ୍ଷମତା ପାଇଗଲେ ଲୋକେ ଯାହା ହୁଅନ୍ତି ! କ୍ଷମତାର ବ୍ୟବହାର ତ ହୁଏନା – ଅପବ୍ୟବହାର କେବଳ ହୋଇଥାଏ, ନିଜର ଇଗୋ/କର୍ତ୍ତୃତ୍ୱକୁ ଜାହିର କରିବାପାଇଁ ।

ଦୁଇଟିଯାକ ଦାବି ଫେଲ୍ ମାରିଲା । ମୁଁ ମନେ ମନେ ସ୍ଥିର କରିନେଲି, କିଛି ଗୋଟାଏ କାଣ୍ଡ କରିବାକୁ ପଡ଼ିବ, ନହେଲେ ଅଥରିଟି ଶୁଣିବେନି । ତେବେ କନ୍‌ଭୋକେସନ୍ ସରିଯାଉ, ପ୍ରଧାନମନ୍ତ୍ରୀ ଦିଲ୍ଲୀ ଫେରିଯା'ନ୍ତୁ । ତା'ପରେ ଏଇଠୁ ବାଣଟେ ଛାଡ଼ିବା, 'ଫୁଟିଲେ' ଯେମିତି ଦିଲ୍ଲୀରେ ଶୁଭିବ । ଖବରକାଗଜବାଲାତ ସହଜରେ ସେନ୍‌ସେସନ୍ ଅପେକ୍ଷାରେ ବସିଛନ୍ତି, ସେମାନେ ଖବରଟିକୁ 'ବ୍ଲୋ ଅପ୍' କରି ବାହାର କରିବେନି ?

ଫାଙ୍କା ଜୀବନରେ ବେଳେବେଳେ କିଛି ଘଟେ ନାହିଁ, ଆଉ ବେଳେ ବେଳେ ଅଳ୍ପ ସମୟ ଭିତରେ ଏତେ ଗୁଡ଼ିଏ ଘଟଣା ଘଟିଯାଏ, ତାହା ଠିକ୍ ଧରି ହୁଏନା, ବୁଝିହୁଏନା । ବୁଝିଲାବେଳକୁ ସବୁ ସରିଯାଇଥାଏ । ସେମିତି କିଛି ହେଲା ସପ୍ତାହକ ଭିତରେ ।

ଫୋନ୍ ଆସିଲା ପ୍ରଥମେ, ବାପା ଆସିଛନ୍ତି କନ୍‌ଭୋକେସନ୍ ଡ୍ୟୁଟିରେ, ପ୍ରଧାନମନ୍ତ୍ରୀଙ୍କ ସେକ୍ୟୁରିଟି ଟିମ୍‌ରେ – ଓଡ଼ିଶାରୁ । ଶ୍ରୀମତୀ ଗାନ୍ଧିଙ୍କ କଲିକତା ପ୍ରୋଗ୍ରାମ୍ ସବୁ ବାତିଲ୍ କରାଯାଇଛି, ନକ୍ସାଲାଇଟ୍ ଆନ୍ଦୋଳନ ବଢ଼ିଚାଲିଛି । ଅଜୟ ମୁଖାର୍ଜୀଙ୍କ ସିଆଡ଼େ ୟୁନାଇଟେଡ୍ ଫ୍ରଣ୍ଟ୍ ଆଣ୍ଟି-କଂଗ୍ରେସ, ଆଣ୍ଟି-ଇନ୍ଦିରା ମନୋଭାବ ନେଇ ସରକାର ଚଳେଇଛି – ଇଣ୍ଟେଲିଜେନ୍ସ ରିପୋର୍ଟ ଏହି ରକମ ।

ଓଡ଼ିଶାରେ ଅନୁରୂପ ଅବସ୍ଥା–ସାନି ଇଲେକ୍‌ସନ୍‌ରେ ପୁରୁଣା ସରକାରଙ୍କ ଶୋଚନୀୟ ପରାଜୟ ହୋଇ ମହାରାଜା ସିଂହଦେଓଙ୍କ ନେତୃତ୍ୱରେ ନୂଆ ସରକାର ଆସିଛି । ଦୁର୍ନୀତି ବିରୁଦ୍ଧରେ ଲଢ଼ି ପିଲାମାନେ ନୂଆ ବାତାବରଣ ସୃଷ୍ଟି କରିଛନ୍ତି । ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ ନୂଆ ସରକାରଙ୍କୁ ସ୍ୱାଗତ କରି ସଭା ହୋଇଥିଲା – ମନେ ପଡୁଛି, ଛାତ୍ରନେତାମାନଙ୍କ ଗହଣରେ ନୂଆ ମୁଖ୍ୟମନ୍ତ୍ରୀ । ବକ୍ତୃତା ଚାଲିଲା ମାରାଥନ୍ ବେଗରେ... ବନ୍ଧୁ ପାଢଶାଣୀଙ୍କ ବେଳକୁ ମାଇକ୍ ଆଉ କାମ କଲାନି । ତେବେ ସେ

କୋଉ ଛାଡ଼ିବା ଲୋକ, ସେମିତି ଚଳେଇଲେ । ହଜାର ହଜାର ଶ୍ରୋତାଙ୍କ କରତାଳି । ପେଶାଦାର ବକ୍ତା ଭାବେ ଆମେ ସବୁ ଭାଷଣ ମାରିଲୁ – କେତେ ଆଶା କେତେ ସ୍ୱପ୍ନ ଦେଖିଲୁ ଓ ଶ୍ରୋତାଙ୍କୁ ଦେଖାଇଲୁ ।

ଆଜି କନ୍‌ଭୋକେସନ୍, ରୁମ୍ ସବୁ ଭର୍ତ୍ତି – ନୂଆଲୋକ ସବୁ ହଷ୍ଟେଲ ବାରଣ୍ଡାରେ, ଡାଇନିଂ ରୁମ୍‌ରେ, ଦେଖିବାକୁ ଆସିଛନ୍ତି ଦୂର ଦୂରାନ୍ତରୁ । ତା'ପରେ ପୁଣି ପୌଷମେଳା, ଏଲାହାବାଦ୍‌ର କୁମ୍ଭମେଳା ପରି ପ୍ରସିଦ୍ଧ, ଲୋକାରଣ୍ୟ । ଯେଉଁଠି ଦେଖିବ ଲୋକ – ପିଲା, ବୁଢ଼ା, ଯୁବକ, ଯୁବତୀ, ଛାତ୍ର, ପର୍ଯ୍ୟଟକ – ବିଭିନ୍ନ ପ୍ରଦେଶରୁ, ଭାରତ ବାହାରୁ ମଧ୍ୟ । ପୋଲିସ୍ – ପ୍ଲେନ୍‌ଡ୍ରେସ୍‌ରେ ହଜାରେ ଉପରେ, ୟୁନିଫର୍ମ୍‌ରେ ତିନିହଜାର ଖଣ୍ଡେ ବୋଲି ଶୁଣୁଛି, ଭି.ଭି.ଆଇ.ପି. ସବୁ ଏଇଠି ।

ସମୀକ୍ଷା କଲିକତାରୁ ଆସି ପହଞ୍ଚିଯାଇଛି, ଦୀପଙ୍କର ବି । ମୋର ଆଶଙ୍କା ହେଲା ତା' ନାଁରେ ତ ନନ୍-ବେଲେବ୍‌ଲ୍ ୱାରେଣ୍ଟ୍ ଅଛି, କେତେବେଳେ ଯେ ଧରିନେବେ । ସିଏ କାଇଁକି ଆସିଛି ? ସୁପ୍ରିମ୍‌କୋର୍ଟ୍‌ର ପୁରୁଣା ଆଡ୍‌ଭୋକେଟ୍ ହଜାରୀ କିଏ ଜଣେ ଆସିଛନ୍ତି, ସାଙ୍ଗରେ ପୁଣି ସ୍କୁଲରେ ପଢୁଥିବା ନାତୁଣୀ । ତାଙ୍କୁ 'ପାସ୍' ଦର୍କାର, କନ୍‌ଭୋକେସନ୍ ଦେଖିବେ । ମୋ' ପାଖରେ ପାସ୍ କାହିଁ ? ଦଶଟା ଦେଇଥିଲେ, କିଏ କିଏ ସବୁ ନେଇଗଲେ । ସୁମିତ୍ର ଫୋନ୍ ଫାନ୍ କରି ଯୋଗାଡ଼ କଲା । ତା' ଭିତରେ ପୁଣି ଝିଅଟି ମେଳା ଭିତରେ ହଜିଗଲା । ତାକୁ ବାହାରକରି ଆଣିବା କାମ ଆମ ଡିପାର୍ଟମେଣ୍ଟ ପିଲା କଲେ ।

ସେ' ବି ଏକ ଅନୁଭୂତି ! ଛୋଟ ବଡ଼ ଏମିତି କେତେ ଯେ ଅନୁଭୂତି ମୋ କୋଟାରେ ଅଛି ଏ ପର୍ଯ୍ୟନ୍ତ ଜାଣି ପାରିଲିନି । ଆଗେଇ ଯିବା କଥା, ଜୀବନରେ । ଆଗକୁ ମାଡ଼ିଚାଲିବା କଥା, କିନ୍ତୁ କେଉଁ ରାସ୍ତାରେ ? ସେଇଟା ଆଗକୁ ନା ପଛକୁ – ଭାବିଦେଖିଲେ, ଟିକେ ତଳେଇ ଦେଖିଲେ, ବୁଝିସାରିଲା ପରେ ବିଚାର କଲେ, ସେଇଟା 'ଆଗକୁ' ନ ହେଇ 'ପଛକୁ' ବି ହୋଇପାରେ, ବାଆଁକୁ ବା ଡାହାଣକୁ ବି ହୋଇପାରେ । ଗତି ହିଁ ଜୀବନ – ମୁଁ ଭାବେ, କିନ୍ତୁ ଗତି ହିଁ ଉନ୍ନତି ନୁହେଁ, ହୁଏତ ବଞ୍ଚିବାର ଅନ୍ୟ ନାମ ।

ହଠାତ୍ ଆମ୍ରକୁଞ୍ଜରେ ବିସ୍ଫୋରଣ । କିଏ ଜଣେ ବୋମା ପକେଇଛି । ଶ୍ରୀମତୀ ଗାନ୍ଧି ସଭାମଞ୍ଚରେ ଥିଲେ । ଧୂଆଁ ହେଇଗଲା ଚାରିଆଡ଼େ । ବେଶୀ କେହି ଆହତ ହେଇ ନାହାନ୍ତି, ଖାଲି ଜଣେ ଏନ୍.ସି.ସି. ପିଲା । ମାଇକ୍‌ରୁ ଶୁଭୁଥିଲା ଶ୍ରୀମତୀ ଗାନ୍ଧିଙ୍କ କଣ୍ଠସ୍ୱର – 'ଏଭଳି କାଣ୍ଡ କରିଛନ୍ତି ଯେଉଁମାନେ ସେମାନେ ଭାରତୀୟ ଗଣତନ୍ତ୍ରର ଶତ୍ରୁ' ।

ବି.ବି.ସି. ପ୍ରତିନିଧି କେଉଁଠି ଥିଲେ ଚାଲି ଆସିଲେ । ପ୍ରଶ୍ନ କଲେ ମୋତେ, ଆଉ କେତେଜଣ କର୍ମକର୍ତ୍ତାଙ୍କୁ, ସଭାକୁ ଆସିଥିବା କେତେଜଣ ପୁରୁଖା ପ୍ରଫେସର ଓ ଜଜ୍‌ଙ୍କୁ । ପରଦିନ ଇଂଲିଶ୍ ଖବରକାଗଜରେ ଖବର ବାହାରିଗଲା । ମୁଁ ମନେ ମନେ ଭାବିଲି ବୋଧେ ଶ୍ରୀମତୀ ଗାନ୍ଧିଙ୍କ ବିରୋଧରେ ରାଜନୈତିକ ଅଭିସନ୍ଧି ଥାଇ ଘଟଣାଟି ଘଟିଲା । କୌଣସି କଲିକତା ଅର୍ଗାନାଇଜେସନ୍‌ର ହାତ ଅଛି ଏହି ଘଟଣା ପଛରେ । ପ୍ରେସ୍‌କୁ କହିଲାବେଳେ ମୁଁ ସିଧାସଳଖ କହିଥିଲି –‘ଘଟଣାଟି ନିଶ୍ଚିତ ଭାବରେ ନିନ୍ଦନୀୟ । ପ୍ରଧାନମନ୍ତ୍ରୀଙ୍କୁ ବିରୋଧ କରିବାରେ କୌଣସି ଯୁକ୍ତି ନାହିଁ, କାରଣ ସେ ବିଶ୍ୱଭାରତୀର ‘ଆଚାର୍ଯ୍ୟ’ ବା ‘ଚାନ୍‌ସେଲର୍’ ହିସାବରେ ଏଠାକୁ ଆସିଛନ୍ତି । ବିକ୍ଷୋଭ କରିବାକୁ ଗଲେ ଦିଲ୍ଲୀ ଯାଅ, ସେଇଠି କର ।’

ବାପା ମୋ’ ଇଲେକ୍‌ସନ୍‌ରେ ଖୁସୀ ହୋଇଥିଲେ କି ନା ଠିକ୍ ଜଣାପଡ଼ିଲାନି । ତେବେ ମୁଁ କହିଦେଲି – ‘ମୋର ପଢ଼ାପଢ଼ିରେ ବ୍ୟାଘାତ ଘଟିବନି । ମୁଁ ଫେଲ୍‌ଫାଲ୍ କେବେ ହେବିନି, ପରୀକ୍ଷା ଡ୍ରପ୍ କରିବିନି । (ପରୀକ୍ଷା ଡ୍ରପ୍ କରିବା ଆଜିକାଲି ଗୋଟେ ଫ୍ୟାଶନ୍ ହୋଇଗଲାଣି... ‘କିରେ କାଇଁକି ଡ୍ରପ୍ କଲୁ ?’... ‘କ୍ଲାସ ପାଇଁ ।’ ସତେ ଯେମିତି ଦ୍ୱିତୀୟଥର ଏମ୍.ଏ. ପରୀକ୍ଷାଟା ଦେଇଦେଲେ ଫାଷ୍ଟ୍ କ୍ଲାସଟା ଥୁଆ !

ଷ୍ଟେସନ୍‌ରେ ବାପାଙ୍କ ସାଙ୍ଗରେ ପଞ୍ଜାବ୍‌ର ଜଣେ ପୋଲିସ୍ ଅଫିସର୍ ଥିଲେ । ରିଫ୍ରେସ୍‌ମେଣ୍ଟ୍ ରୁମ୍‌ରେ ମୋତେ ସେ ପଚାରିଲେ – ‘ଜିନ୍ଦେଗୀମେଁ କ୍ୟା କରୋଗେ ?’ ‘ଆଉଟ୍ ଅଫ୍ ସିଲାବସ୍ କ୍ୱେଶ୍ଚିନ୍.... ଉତ୍ତର ଦେବା ନ୍ୟାଚୁରାଲି କଷ୍ଟ’ – ମୁଁ କହିଲି । ସେ ଖୁବ୍ ଜୋର୍‌ରେ ହସିଥିଲେ, ଆଉ ବାପାଙ୍କୁ ଅନାଇ କହିଲେ – ‘ହି ଉଇଲ୍ ମେକ୍ ଏ ଗୁଡ୍ ଡିପ୍ଲୋମ୍ୟାଟ୍’ ।

ଆମେ ସବୁ ହସିଲୁ । ଏ ଭିତରେ ଗାଡ଼ି ଆସିଗଲା । ବାପାଙ୍କ ମୁହଁରେ ଭିନ୍ନ ଏକ ରଙ୍ଗ ଆସିଗଲା, ଯା’ ସହିତ ମୁଁ ପିଲାଦିନୁଁ ପରିଚିତ । ପକେଟ୍‌ରୁ କିଛି ଟଙ୍କା ବାହାରକରି ମୋ ଆଡ଼କୁ ବଢେଇ ଦେଲେ । ମୁଁ ପାଦଧୂଳି ନେଲାବେଳକୁ ମୋତେ ଲାଗିଲା ସେ ଯେମିତି କହୁଛନ୍ତି – ‘ବାବୁ... ଯାଉଛୁ, ଯା’... ସାବଧାନରେ ରହିବୁ... ଚିଠି ଦେବୁ ।’

ମୁଁ ପ୍ରକୃତରେ ବୁଝିପାରୁ ନଥିଲି ଯାଉଛି କିଏ, ଆଉ ଛାଡ଼ିବା ପାଇଁ ଆସିଛି କିଏ ? ଲାଗିଲା, ଅନେକ କିଛି ସେ କହିଗଲେ, ମୁଁ କିଛି କହିପାରିଲିନି ।

## ୪୦

ଶାନ୍ତିନିକେତନରେ 'ଅଶାନ୍ତି' ସବୁ ଖବରକାଗଜରେ ହେଡ୍‌ଲାଇନ୍ ନିଉଜ୍ – 'ସଭାପତିଙ୍କ ଅନଶନ, ଧର୍ମଘଟ ନୋଟିସ୍, ସାତଦିନ ଭିତରେ ଦାବି ପୂରଣ ନ ହେଲେ... ।' ଭାଇସ୍‌ଚାନ୍‌ସେଲର୍, ପ୍ରକ୍ଟର୍ ଡକେଇଲେ, ବୁଝେଇଲେ । ସବୁ ଶୁଣିଲି, କିନ୍ତୁ ଦାବିରେ ପରିବର୍ତ୍ତନ ନାହିଁ । ଖାଲି ସମୟ ସୀମା ବଢ଼େଇ ଦିଆଗଲା – ଏକମାସ ।

ଏ' ଭିତରେ ବାରଜଣ ବିଦେଶୀ ଛାତ୍ରଛାତ୍ରୀ ବନାରସ୍‌ରେ ଦୁଇ ସପ୍ତାହ କଟେଇ ବିଶ୍ୱଭାରତୀ ଆସିଛନ୍ତି, ଆଉ ଦୁଇ ସପ୍ତାହ ଏଇଠି କଟେଇବେ । ଭାଇସ୍‌ଚାନ୍‌ସେଲର୍‌ଙ୍କ କହିବା ଅନୁସାରେ ୟୁନିୟନ୍ ତରଫରୁ ଗୋଟେ ରିସେପ୍‌ସନ୍ କମିଟି କରାଗଲା । ଆମେରିକାରୁ ଦୁଇଜଣ 'ଲ' ଛାତ୍ର, ଇଟାଲୀରୁ ଝିଅ ଜଣେ – ଆନ୍ନାମେରିୟା ଫେରାରୋ, ଗ୍ରୀସ୍‌ରୁ ଆରିୟାନା ସ୍ପାସିନୋପୁଲସ୍, ବାକିସବୁ ସୁଇଟ୍‌ଜର୍ଲ୍ୟାଣ୍ଡ୍ ଓ ଇଂଲ୍ୟାଣ୍ଡରୁ ।

ଆନ୍ନାମେରିୟା ଭାରି ଲାଜକୁଳୀ ଝିଅଟେ । ଆମ ପିଲା ତାକୁ ଶାଢ଼ି ପିନ୍ଧେଇ ପକେଇଲେ । ମୋ' ଇଂରାଜୀ କବିତା ନେଇ ଛୋଟ ଡିକ୍ସନାରିଟେ ବାହାର କରି ତା'ର ଇଟାଲିଆନ୍ ବ୍ୟାଖ୍ୟା କରିପକେଇଲା, ସୁକୁମାରକୁ ବଂଶୀ ବଜେଇ ବଜେଇ ଅଥୟ କରିଦେଲା । ସବୁଠୁଁ ଗ୍ଳାମରସ୍, ସବୁଠୁଁ ସୁନ୍ଦର ଝିଅ ଥିଲା ଆରିୟାନା – ଗ୍ରୀସ୍‌ର । କିନ୍ତୁ ଲଣ୍ଡନରେ ସ୍କୁଲିଂ ଓ କଲେଜ, ଇକନମିକ୍ସ ମେଜର୍ କରୁଥିଲା କେମ୍ବ୍ରିଜ୍‌ରେ, ମାନେ ବି.ଏ. ଇକନମିକ୍ସ (ଅନର୍ସ), ଛ' ଫୁଟ ଖଣ୍ଡେ ଲମ୍ବା, ସ୍ୱର୍ଣ୍ଣାଭ କେଶ, ଶରୀରର ପ୍ରତିଟି ଅଙ୍ଗ ଭରପୂର, ସୁନ୍ଦର – ଦେଖିଲା ଭଳି, ମନେ ରଖିଲା ଭଳି, ଭଲ ପାଇବା ଭଳି ଝିଅଟେ । ସବୁବେଳେ ଦୁଷ୍ଟାମିର ହସ ମୁହଁରେ ।

କହିଲା, ଆମ କ୍ଲାସରେ ବସିବ । ମୁଁ କହିଲି ଠିକ୍ ଅଛି । ନେଇଗଲି ଶିଶିର୍‌ଦାଙ୍କ କ୍ଲାସକୁ, ଏଲିୟଟ୍ ପଢ଼ାଉଥିଲେ । ତାକୁ ଦେଖି ଗ୍ରୀକ୍ ଆରମ୍ଭ କରିଦେଲେ । ଆରିୟାନା ସହିତ ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ । ଶିଶିର୍‌ଦା ଗ୍ରୀକ୍ କେଉଁଠି ଶିଖିଲେ ? ଆରିୟାନାକୁ ଦିନେ ଲଞ୍ଚ୍ ପରେ ଶିଳ୍ପୀ ରାମକିଙ୍କର୍‌ଦାଙ୍କ ପାଖକୁ ନେଇଗଲି । ଖରାଟାରେ ଚାଲି ଚାଲି ବିଚରା ଆରିୟାନାର ମୁହଁରୁ ସବୁ ମେକ୍‌ଅପ୍ ଖସିଗଲାଣି... 'ଫାଉଣ୍ଡେଶନ୍' ବି ଯିବା ଉପରେ । ରାମକିଙ୍କର୍‌ଦା ତାକୁ ଦେଖି ଭାରି ଖୁସି । କିଛି ଝିଅ ଆସୁଥିଲେ... ସାନ୍ତାଳ ଝିଅ, ସେମାନଙ୍କୁ ପାଖକୁ ଡାକିଲେ । ତା'ପରେ ଆରିୟାନାକୁ ଲକ୍ଷ୍ୟ କରି କହିଲେ ମେକ୍‌ଅପ୍ ଛଡ଼ା, ତା' ପର୍ଲ ନେକ୍‌ଲେସ୍ ବ୍ୟତୀତ

ସେ ଆହୁରି ସୁନ୍ଦର ଦିଶିବ । ଢଣେ ସାନ୍ତାଳ ଝିଅର ଓଠକୁ ଧରି ବୁଝେଇବାକୁ ଲାଗିଲେ ଲିପ୍‌ଷ୍ଟିକ୍ କେମିତି ଓଠର ସୌନ୍ଦର୍ଯ୍ୟ ନଷ୍ଟ କରିଦିଏ । ଭାବପ୍ରବଣ ହୋଇ ଇଂରାଜୀରେ ରାମକିଙ୍କରଦା କହିଲେ – 'ଥରେ ଲିପ୍‌ଷ୍ଟିକ୍ ନ ଲଗାଇ, ନେକ୍‌ଲେସ୍ ଜାଗାରେ ଫୁଲମାଳ ପକେଇ ଦେଖ, ତୁମେ କେମିତି ଦିଶୁଛ ?'

ଆରିୟାନାର ଓଠରେ ସମ୍ମତିର ହସ... ହସ ଭିତରେ ହୁଏ ତ ଲୁଚି ରହିଥିଲା ନିଜକୁ ବଦଳାଇବାର ପ୍ରତିଶ୍ରୁତି ।

ଠିକ୍ ତା'ପରଦିନ ଆରିୟାନା ମୋତେ ଧରି ବିନା ମେକ୍-ଅପ୍‌ରେ ରାମକିଙ୍କରଙ୍କ ପାଖରେ ପହଞ୍ଚିଲା । ରାମକିଙ୍କରଦାଙ୍କ ଶାର୍ଟ୍‌ଟା ଅଧା ଖୋଲା, ବୋତାମ କିଛି ନାହିଁ... ପ୍ୟାଣ୍ଟ୍ ଗୋଟା ଫାଳ ଫୋଲ୍ଡିଂ ହୋଇଛି... ବାହାରି ଆସି କୁଣ୍ଢେଇ ପକେଇଲେ ଆରିୟାନାକୁ...ଆଉ କହିଲେ -

'ନାଓ ୟୁ ଲୁକ୍ ଲାଇକ୍'... ମୋ ପାଟିରୁ ବାହାରିଗଲା... 'ଏନ୍ ଏଂଜେଲ୍' ।

ସତରେ ଆରିୟାନା ପରୀଟିଏ ପରି ଦିଶୁଥିଲା । ମୋର ହେଲେନ୍ କଥା ମନେ ପଡ଼ିଗଲା । ଇଚ୍ଛା ହେଲା ମୁଁ ରାମକିଙ୍କରଙ୍କ ପରି ଝିଅଟିକୁ କୁଣ୍ଢେଇ ପକେଇବି । ନା, ସେ ଯଦି ଖରାପ ଭାବିବ ?

କିନ୍ତୁ ରାମକିଙ୍କର୍... କିଛି ଖରାପ ଭାବିଲାନିତ ? କିଛି ସେମିତି କହିଲାନି ? ଆଉ ମୁଁ କଲେ ? ନା, ଏଡ଼େ ବଡ଼ ଆର୍ଟିଷ୍ଟ, ତାଙ୍କ କଥା ଭିନ୍ନ । ମୁଁ ଗୋଟେ କଲେଜ ପିଲା, ମୁଁ ସେମିତି କଲେ ଶୁଣେଇବ ଯଦି ? ମୋ' ଇଚ୍ଛା ଓ ସ୍ୱାଭିମାନ ଭିତରେ ଲାଗିଲା ସଂଘର୍ଷ.. ଲମ୍ବିଲମ୍ବି ଗଲା ଫେରିବା ରାସ୍ତା ଆମର । ସନ୍ଧ୍ୟା ହୋଇଗଲାଣି... ରାସ୍ତାରେ କେବଳ ଆମେ ଦୁହେଁ । କେହି କିଛି କହୁ ନାହୁଁ । ମୁଁ ଅପେକ୍ଷା କରିଛି ମୋ' ଭିତରେ ସାହସୀ ପୁରୁଷଟିଏ କେତେବେଳେ, କେତେ ଶୀଘ୍ର ଜନ୍ମ ନେବ ଓ ସାଥୀରେ ଥିବା ଏତେ ସୁନ୍ଦର, ଏତେ ପ୍ରାଚୁର୍ଯ୍ୟଭରା ଶରୀରଟିକୁ ଗ୍ରାସ କରିବ ।

ହଷ୍ଟେଲ ପାଖାପାଖି ହୋଇଗଲୁଣି । ମୁଁ ଆଉ ଧୈର୍ଯ୍ୟ ଧରି ରହି ପାରିଲିନି । ଆରିୟାନାର ହାତକୁ ଧରିନେଇ କହିଲି – 'ଗ୍ରୀସ୍‌ର ସବୁ ଝିଅ କ'ଣ ତୁମରି ପରି ସୁନ୍ଦର ?... ତୁମରି ପରି ଇର୍‌ରେଜିଷ୍ଟିବ୍ଲ୍ ?'

ସେ କ'ଣ କହିଲା କେଜାଣି ? ମୋତେ ଶୁଭିଲା – 'ୟୁ ରିୟଲି ମିନ୍ ଇଟ୍ ?' ମୁଁ ଆଉ କାଳବିଳମ୍ବ ନ କରି ତାକୁ ମୋ ଆଡ଼କୁ ଓଟାରି ଆଣି ସିଧା ତା' ଓଠ ଉପରେ ହାତ ରଖି ମୁଖସ୍ଥ କରିଥିବା ଧାଡ଼ିଟିଏ ନର୍ଭସ୍ ଅବସ୍ଥାରେ କହି ପକେଇଲି –

'ଇଜ୍ ଦିଶ୍ ଦା ଫେସ୍ ଦ୍ୟାଟ୍ ଲଞ୍ଚ୍ଡ୍ ଏ ଥାଉଜେଣ୍ଡ୍ ସିପ୍ସ୍ ?' ମାର୍ଲୋଙ୍କ ପୁରାଧାଡ଼ିଟି କହିପାରିଲି କି ନାହିଁ, ମନେ ପଡୁନି, କିନ୍ତୁ ପରିଷ୍କାର ମନେପଡୁଛି, ମୋ' ଓଠ କେତେବେଳେ ଆରିୟାନାର ଓଠରୁ ଖସି ତା' ବେକତଳ ଫୁଲମାଳର ଫୁଲ ଭିତରେ ପଶିଗଲାଣି... ତା'ର ଓଠ ଓ ଛାତି ଉପରେ ଛିଣ୍ଡିଯାଉଥିବା ଫୁଲମାଳର ପାଖୁଡ଼ା ଭିତରେ ତଫାତ୍ କିଛି ମୁଁ ଜାଣିପାରୁନି... ମୁଁ ହଜିଯାଇଛି... ଆଉ ଦେଖିବାକୁ ଚାହିଁଛି ଜଣେ ନାରୀର ସଂଗଠିତ ଓ ବିକ୍ଷିପ୍ତ ସୌନ୍ଦର୍ଯ୍ୟ... ଅନୁଭବ କରିବାକୁ ଚାହିଁଛି – ଏକ ଅପରିଚିତ ଉତ୍ତାପ ଓ ଶିହରଣ । ଏହି ଅନୁଭବ ଭିତରେ ଭୁଲିଯିବାକୁ ଚାହିଁଛି ତା'ର ଶରୀର ଓ ସୌନ୍ଦର୍ଯ୍ୟ ବାହାରେ ଥିବା ସମୟ ଓ ପୃଥିବୀକୁ, ବଞ୍ଚିବାର ଦାୟିତ୍ୱ ଓ ଲୋଭକୁ, ଆନନ୍ଦ ଓ ଦୁଃଖକୁ । ଷ୍ଟ୍ରିଟ୍ ଲାଇଟ୍ ତଳେ ପହଞ୍ଚିଲା ବେଳକୁ ଆମ ଦୁହିଁଙ୍କ ଭିତରେ ଭାଷା ସବୁ ସରି ଯାଇଥିଲା । ସ୍ୱାଭାବିକ ଅବସ୍ଥାରେ କଥାବାର୍ତ୍ତା କରିବା ଅସ୍ୱାଭାବିକ ଲାଗିଲା । ଗେଷ୍ଟ୍ ହାଉସ୍‌ରେ ପହଞ୍ଚି 'ଗୁଡ୍ ନାଇଟ୍' କେମିତି କହିଲି ମୋର ମନେ ପଡୁନି । ଆରିୟାନାର ମୁହଁଟି ଟ୍ୟୁବ୍‌ଲାଇଟ୍‌ରେ ଆହୁରି ସୁନ୍ଦର, ଆହୁରି ଜୀବନ୍ତ ଦିଶୁଥିଲା । ଫେରିଲାବେଳକୁ ମୁଁ ଆଉ ପଛକୁ ଚାହିଁଲିନି, ଚାହିଁ ପାରିଲିନି ।

ରୁମ୍‌କୁ ସିଧା ନ ଯାଇ ଡାଇନିଂ ରୁମ୍‌କୁ ଚାଲିଗଲି । କ'ଣ ଖାଇଲି ମନେ ନାହିଁ, କିଏ ପାଖରେ ସବୁ ବସିଥିଲେ ଜାଣିପାରିଲିନି । ହାତ ଧୋଉଛି, ସିହ୍ନାର ପାଟି ଶୁଭିଲା । ବୁଲି ଅନେଇଲି... କହିଲା 'ଫୋନ୍ ।'

ସିହ୍ନା ବେଶୀ କଥା କହେନା । କହିବା ଦରକାର ହୁଏନା । ଯେତିକି ଦରକାର ସେତିକି କହେ । ଫୋନ୍ ପାଖକୁ ଗଲାବେଳକୁ ଖାଲି ମୋ କାନରେ ଧୀରେ କହିଲା – 'ସମ୍‌ଓ୍ୱାନ୍ ସୁଇଟ୍ ଅନ୍ ଦି ଲାଇନ୍ ଫର୍ ୟୁ' । ମୁଁ ଫୋନ୍ ଧରିଲାବେଳକୁ ଅନ୍ୟ ପାଖରେ ତରବରିଆ ଗଳାରେ ପାଞ୍ଚଟି ଶବ୍ଦର ବାକ୍ୟଟିଏ, ଯାହାକି ବିଭିନ୍ନ ପରିସ୍ଥିତିରେ ବିଭିନ୍ନ ଗଳାରେ ଶୁଣିଛି ଆଗରୁ, କିନ୍ତୁ ଆଜି, ଏବେ, ଏହି ଶବ୍ଦର ଝଙ୍କାର ଭିନ୍ନ ପ୍ରତିକ୍ରିୟା ସୃଷ୍ଟି କରୁଛି – ମନ ଭିତରେ, ଛାତି ଭିତରେ ।

'ଥ୍ୟାଙ୍କ୍ସ୍ ଫର୍ ଏ ଓ୍ୱଣ୍ଡରଫୁଲ୍ ଇଭିନିଂ... ସୁଇଟ୍ ଡ୍ରିମ୍ସ୍...'

'ସେମ୍ ଟୁ ୟୁ' – କହିବାକୁ ଯାଇ ବେତାଳିଆ କିଛି କହିପକେଇଲି ବୋଧେ !

ରାତିରେ ଡ୍ରିମ୍ସ୍‌ର ପ୍ରଶ୍ନ ନାହିଁ... ନିଦ ତ ମୂଳରୁ ହେଲାନି । ସିହ୍ନା ରୁମ୍‌କୁ ଗଲି । ସିଗାରେଟ୍ ଗୁଡ଼ାଏ ଟାଣି ପକେଇଲେ ଭଲ ଲାଗିବ ଭାବିଲି । ସିହ୍ନା ଗ୍ଲାସ୍‌ଟେ ବଢ଼େଇଦେଲା । ତା' ଝରକା ବାହାରେ ଅନ୍ଧାର... କଳା ଅନ୍ଧାର । ମୋତେ ପଚାରିଲା 'ରାତିଟା କେମିତି ?'

ମୁଁ କହିଲି – 'ବ୍ଲାକ୍ ନାଇଟ୍ ।'

ସିହ୍ନା ହସିକି କହିଲା – 'ତୁମ ଗ୍ଲାସ୍ ଭିତରେ ଦେଖ, ଠିକ୍ ସେୟା' । ମୁଁ ବୁଝିପାରିଲି ଭାରସାମ୍ୟ ହରେଇଥିବା ମନକୁ ଶାନ୍ତ ଓ ସହଜ କରିବା ପାଇଁ 'ବ୍ଲାକ୍‌ନାଇଟ୍' ହିଁ ଦରକାର୍ ... ପଚାରିଲି 'ଷ୍ଟକ୍ ଆଉ ଅଛି ନା, ଭୁବନତଙ୍ଗା ଯିବା, ଆଉ ଆଣିବା ?'

ସିହ୍ନା ହସି ଆଲମାରି ଆଡ଼କୁ ହାତ ବଢ଼େଇଲା । ମୁଁ ହସିଲି । ପିଲାଟି ଠିକ୍ ଲାଇନ୍ ଉପରେ ଅଛି । ଅଦ୍ଭୁତ କିସମର । ଗୌହାଟୀରେ ପଢ଼ିଲା ବେଳଠୁଁ, ହୁଏ ତ ଆହୁରି ଆଗରୁ, ସ୍କୁଲବେଳୁ ପିଆପିଇ ଆରମ୍ଭ କରି ଦେଇଛି । ବାପା କୁଆଡେ ହ୍ୱିସ୍କିରେ ମୁହଁ ଧୁଅନ୍ତି ସକାଳୁ ଉଠି ! କି ଖାନ୍‌ଦାନୀ ଅଭ୍ୟାସ ! ବେଳେବେଳେ ବାପ ପୁଅ ମିଶି... ବର୍ଷା କ୍ରମାଗତ ଚାଲିଥାଏ ଯେତେବେଳେ... (ସିହ୍ନା କହେ)... କଙ୍କଡ଼ା ବା ନଈମାଛ ପ୍ଲେଟ୍ ପରେ ପ୍ଲେଟ୍ ସଫା ହୋଇଯାଏ । ଗୁଡ଼ାଏ ଚା' ବଗିଚା, ପୁଣି ଶିଲଂରେ ଚାରି ପାଞ୍ଚଟା କୋଠା, ଟଙ୍କା ପ୍ରଚୁର, ସମୟ ପ୍ରଚୁର, ଆଉ ଅସୁବିଧା ରହିଲା କେଉଁଠି ? ବଞ୍ଚିବାର ଇଏ ବି ଆଉ ଏକ ନାମ !

ମୋ ରୁମ୍‌କୁ ନ ଯାଇ ସେଦିନ ସିହ୍ନା ରୁମ୍‌ରେ ଶୋଇ ପଡ଼ିଲି ।

## ୪୧

ସକାଳ ହେବା ଆଗରୁ ନିଦ ଭାଙ୍ଗିଯାଇଛି । ଦେଖିଲି ସିହ୍ନା ଶୋଇ ରହିଛି – ପାଇଜାମା ଓ ଖାଲିଦିହ, ଛୋଟ ସ୍କୁଲ ପିଲାଟିଏ ଶୋଇଲାପରି । ମୁହଁରେ ଯେମିତି ହସର ପାଖୁଡ଼ାଟିଏ ଝୁଲି ରହିଛି, ବଡ଼ ମଣିଷର କୌଣସି ଦୁଃଖ ବା ଭାବନା ନାହିଁ ସେ ମୁହଁରେ, ନାହିଁ ଅଲୋଡ଼ା ଭୟ ବା ସ୍ୱପ୍ନ । କେଉଁ ପୃଥିବୀରେ ପହଞ୍ଚି ଅଟକି ଯାଇଛି ସିହ୍ନା – ମୁଁ ବୁଝିପାରିଲିନି । ଫ୍ୟାନ୍‌ଟି ଜୋର୍‌ରେ ବୁଲୁଥିଲା, ରେଗୁଲେଟର୍‌କୁ ଟିକିକୁ କମେଇ, ଆସ୍ତେ ରୁମ୍‌କୁ ଆଉଜେଇ, ମୁଁ ବାହାରିପଡ଼ିଲି 'ଉତ୍ତରାୟଣ' ରାସ୍ତାରେ । ଲାଇବ୍ରେରୀ ମୋଡ଼ରେ ଝିଅଟିଏ ହାତ ହଲେଇ ଚାଲିଗଲା, ମୁଁ ଚିହ୍ନି ପାରିଲିନି, ତଥାପି ହାତ ହଲେଇ ଦେଲି ସୌଜନ୍ୟତା ଦୃଷ୍ଟିରୁ । ନିଜ ଭିତରେ ଗର୍ବ, ତା ସହିତ ଅନେକଟା ଆତ୍ମସନ୍ତୋଷ ଅନୁଭବ କଲି । ମନେ ମନେ ଭାବି ନେଲି ମୋର ସମସ୍ତଙ୍କୁ ଚିହ୍ନିବା କ'ଣ ଦରକାର ? ତା ଛଡ଼ା ସମ୍ଭବ ବି ନୁହେଁ । 'ୟୁନିୟନ୍ ସଭାପତି' – ସମସ୍ତେ ମୋତେ ଚିହ୍ନିବେ, ମୁଁ କ'ଣ ସମସ୍ତଙ୍କୁ ବ୍ୟକ୍ତିଗତ ଭାବେ ଜାଣିପାରିବି ନା ଚିହ୍ନିପାରିବି ?

ଉତ୍ତରାୟଣ ବଗିଚାରେ ବୁଢ଼ା ଜଣେ ଏପାଖ-ସେପାଖ ହେଉଛନ୍ତି । ପାଖକୁ ଗଲାରୁ ବଙ୍ଗଳାମିଶା ଓଡ଼ିଆରେ କଥାବାର୍ତ୍ତା ଆରମ୍ଭ କରିଦେଲେ । ଗୁରୁଦେବଙ୍କ ବେଳୁ ବୁଢ଼ା ଏଇଠି ଅଛନ୍ତି । ପଚିଶ ତିରିଶ ମାଳୀ ଶାନ୍ତିନିକେତନରେ, ସେମାନଙ୍କ ଭିତରେ ବୁଢ଼ା—ହେଡ୍‌ମାଳୀ, ଘର ଓଡ଼ିଶା, ବାଲେଶ୍ୱରକୁ 'ବାଲାସୋର୍' କହିଲେ । କଲିକତା, ଖଡ଼ଗପୁର, ଦୁର୍ଗାପୁରରେ କିଛି ବର୍ଷ ରହିଗଲେ ଅପଭ୍ରଂଶ କରି ଓଡ଼ିଆ ଭାଷା ଓ ଓଡ଼ିଶାର ସ୍ଥାନମାନଙ୍କୁ ଉଚ୍ଚାରଣ କରିବା ଅନେକ ଓଡ଼ିଆଙ୍କ ପ୍ରକୃତି ମୁଁ ଲକ୍ଷ୍ୟ କଲିଣି । ଏକ ପ୍ରକାର କଂପ୍ଲେକ୍ସ, 'ଇନ୍‌ଫିରିୟରିଟି କଂପ୍ଲେକ୍ସ' କୁହାଯାଇପାରେ । ତେବେ ବର୍ଷ ବର୍ଷ କଳକାରଖାନାରେ ଶ୍ରମିକ ଭାବେ, କଲିକତାରେ ପାନଦୋକାନୀ, ପୂଜାରୀ ହୋଇ ରହିବାଯୋଗୁଁ ହୁଏତ ଏ'ଭଳି ମନୋଭାବ । କିନ୍ତୁ ଏଠିତ ପୁଣି କଲେକ୍ଟର ତିନି ଚାରିଜଣ ଓଡ଼ିଆ ଅଛନ୍ତି, ଏ.ଜି (ଏକାଉଂଟାଣ୍ଟ ଜେନେରାଲ୍), ଚେମ୍ବର୍ ଅଫ୍ କମର୍ସରେ ବହୁତ ଉପରେ କେତେ ଓଡ଼ିଆ ଅଛନ୍ତି !

ସେ ଯା'ହେଉ, ବୁଢ଼ାଜଣକ ମୋ' ପାଖରେ ବେଶୀ ସମୟ ରହିଲେ ନାହିଁ । ମୁଁ ତାଙ୍କ ପାଖରୁ ତାଙ୍କ ଅତୀତ ଓ ବିଶ୍ୱଭାରତୀର ଅତୀତ ସମ୍ପର୍କରେ ଅନେକ କିଛି ଜାଣିବାକୁ ଚାହିଁଥିଲି । ସ୍କୁଲ ସେକ୍ସନ୍ – 'ପାଠଭବନ'ର ଝିଅ ଦୁଇଜଣ କଳା ଗୋଲାପ ନେବାକୁ ଆସିଲେ । ବୁଢ଼ା ରାଗିବାର ଛଳନା କରି ତାଙ୍କ ଆଡ଼କୁ ମାଡ଼ିଗଲେ । ସେମାନେ ଜୀବନର ନିତିଦିନିଆ ଛଳନା ସହିତ ଅଭ୍ୟସ୍ତ ମନେ ହେଲା । ଶେଷରେ ସେମାନେ ଯାହା ଚାହିଁଥିଲେ ତାହାହିଁ ପାଇଲେ । ମୁଁ 'ଗୀତାଞ୍ଜଳୀ'ର ଧାଡ଼ି କେତୋଟି ମନେ ମନେ ଆବୃତ୍ତି କରି ହଷ୍ଟେଲ ଫେରିଲି ।

ହଷ୍ଟେଲକୁ ଲାଗି ଇଣ୍ଟର୍ନ୍ୟାସନାଲ୍ ଗେଷ୍ଟ ହାଉସ୍ । ଚା ପିଇବାକୁ ଇଚ୍ଛାହେଲା । ଡାଇନିଂ ରୁମ୍‌ରେ ପହଞ୍ଚି ଦେଖିଲି ପୁଣି ସେହି ଝିଅ, ପିକ୍‌ନିକ୍ ଗଲାବେଳେ ବସ୍‌ରେ ଯା' ପାଖରେ ମୁଁ ବସିଥିଲି ।

'ହ୍ୟାଲୋ'ର ଆଦାନପ୍ରଦାନ ପରେ ମୁଁ ପଚାରିଲି –

'କ'ଣ ଏତେ ସକାଳୁ ? ଆଉ ଖବର କ'ଣ ?'

'ଆଚ୍ଛା କିଛି ସମୟ ଆଗରୁ ମୁଁ ତୁମକୁ ଦେଖି ଆମ ହଷ୍ଟେଲ ପାଖରେ ହାତ ହଲେଇ ଥିଲି, ତୁମେ ଦେଖି ପାରିଲନି ବୋଧେ ?'

'ନା, ମୁଁ ଠିକ୍ ଦେଖିଛି... କିନ୍ତୁ ଚିହ୍ନି ପାରିନଥିଲି ।'

ସେ ହସିଲା ଓ ପରିଷ୍କାର ଜଣେଇ ଦେଲା ମୁଁ ମିଛ କହୁଛି । ମୁଁ କିନ୍ତୁ ସତ କହିଥିଲି । ହାତ ହଲେଇ ଥିଲି, ମୋର ମନେ ଅଛି ।

ଏ' ଭିତରେ ଗୋଟିଏ ଟେବ୍ଲ୍ ଆମେ ନେଇଯାଇଛୁ । ଟୋଷ୍ଟ, ଅମ୍ଲେଟ୍, ଚା' ଦୁଇ ରାଉଣ୍ଡ୍ ହୋଇଗଲାଣି । ଆଲୋଚନା ଏଥର ବ୍ୟକ୍ତିଗତ ସ୍ତରକୁ ଚାଲିଗଲାଣି । ଝିଅଟିର ନାଁ ଡେଲ୍‌ଫି, ଭାରତୀୟ ନୌବାହିନୀର ଜଣେ କମ୍ପୋଡର୍‌ଙ୍କ ଏକମାତ୍ର ଝିଅ । ସ୍କୁଲପଢ଼ା ଲଣ୍ଡନରେ, ବମ୍ବେରେ, ଦିଲ୍ଲୀ ଓ ରାଜସ୍ଥାନରେ । ଶାଢ଼ିପିନ୍ଧାରୁ ଜଣାଯାଉଛି ନୂଆ ନୂଆ ଶାଢ଼ି ପିନ୍ଧୁଛି, ଆଗରୁ ଅଭ୍ୟାସ ନାହିଁ । ବେକରେ କିଛି ନାହିଁ, କାନରେ ଡାଏମଣ୍ଡ୍ ଇଅରିଂ ପରି ଦିଶୁଛି, ଶାଢ଼ି ନୀଳରଙ୍ଗର, ସୂତା ଶାଢ଼ି – ଖୁବ୍ ସୁନ୍ଦର ମାନୁଛି । ଶରୀରରେ ଭରି ରହିଛି ଫୁଟିଲା ଗୋଲାପର ମହକ, ଓଠ ଓ ଛାତିର ଅଦ୍ଭୁତ ଆକର୍ଷଣ – ହଜେଇ ଦେବାର ଓ ପାଇବାର ।

'ଆଚ୍ଛା ସନ୍ଧ୍ୟାରେ କ'ଣ କରୁଛ ?' ସମ୍ଭାଳି ନ ପାରି ପଚାରିପକେଇଲି ।

'କାହିଁକି ? ଯଦି ଟ୍ରିଟ୍ ଦେବାର କଥା ଅଛି, ମୋ'ର ଆଦୌ ଆପତ୍ତି ନାହିଁ । ଇଲେକ୍‌ସନ୍ ଟ୍ରିଟ୍‌ଟା ତ 'ଡ୍ୟୁ' ଅଛି, କିନ୍ତୁ ମୁଁ ମାଗିବିନି ।'

'କାହିଁକି ?' ମୁଁ ପଚାରିଲି ।

'କାହିଁକି ନା, ମୁଁ ତୁମକୁ ଭୋଟ୍ ଦେଇ ନ ଥିଲି ।'

ଆଚ୍ଛା ! ତା' ହେଲେ ମୁଁ ଏବେ ଜାଣିଗଲି ଆମ ଡିପାର୍ଟ୍‌ମେଣ୍ଟରୁ ଗୋଟିଏ ଭୋଟ୍ ମୋ ସପକ୍ଷରେ ଯେଉଁ ସର୍ଟ୍ ଥିଲା, ସେଇଟା କାହାର ବଦାନ୍ୟତାରୁ । ମନେ ମନେ ଭାରି ରାଗ ଲାଗିଲା, କିନ୍ତୁ ମୋଟେ ଜଣେଇଲିନି ଝିଅଟିକୁ । ଜଣେଇଲି ସତେ ଯେମିତି ମୁଁ ମୋଟେ ମାଇଣ୍ଡ୍ କରିନି, ଭାରି ଯେମିତି ଜେନେରସ୍, ବିଶାଳ-ହୃଦୟ... । ପ୍ରକୃତରେ ତାହା ମୋଟେ ନୁହେଁ । ମୁଁ ଖାଲି ମାଇଣ୍ଡ୍ କରି ନଥିଲି, ସ୍ଥିର କରି ନେଇଥିଲି ବାହାର କରିବି ସେ ପିଲାଟି କିଏ ? କେଉଁ ସହରରୁ, କେଉଁ ସ୍କୁଲରୁ ଏଠିକି ଆସିଛି– ଡିପାର୍ଟ୍‌ମେଣ୍ଟରେ ସମସ୍ତେ ମୋତେ ଭୋଟ୍ ଦେଲେ, ଏ ପିଲାଟି କାହିଁକି ଦେଲାନି ?

'ମୋତେ କାହିଁକି ଭୋଟ୍ ଦେଇ ନଥିଲ ?' ଭାବୁ ଭାବୁ ପଚାରି ପକେଇଲି ।

'କାହିଁକିନା, ଝିଅଟିଏ ତମକୁ କଣ୍ଟେଷ୍ଟ୍ କରୁଥିଲା । ମୁଁ ଝିଅ ହିସାବରେ ତାକୁ ଦେଇଦେଲି ? କ'ଣ କନ୍‌ଭିନ୍‌ସିଂ ଲାଗୁନି ?'

'ନାଇଁ, ତା ନୁହେଁ ଯେ, ଗୋଟେ ଗ୍ରାମାଟିକାଲ୍ ମିଷ୍ଟେକ୍ କରି ପକେଇଲ ତୁମେ'– ମୋ ପାଟିରୁ ବାହାରିପଡ଼ିଲା ।

'ଆଚ୍ଛା, ଗୋଟେ କଥା, ତମେ ସବୁ ରୁମ୍‌ମେଟ୍ସ ମିଶି କାହାକୁ ଭୋଟ୍ ଦେବ ଠିକ୍ କରି ନଥିଲ ?'

'କରିଥିଲେ ସେମାନେ, ତମ ଗ୍ରୁପ୍‌ର ସେମାନେ, ମୁଁ କିନ୍ତୁ କ'ଣ କରିବି ନିଜେ ଠିକ୍ କରେ' କହି ବାଳକୁ ହଲେଇ ଦେଲା ଜୋର୍‌ରେ ।

ମୋର ଭୀଷଣ ଇଚ୍ଛାହେଲା ତାକୁ ମୋ ନିଜ ଆଡ଼କୁ ଭିଡ଼ିଆଣି ଓଠର ଗୋଟାଏ ସେଣ୍ଟିମିଟର୍ ଦୂରରେ ବାଷ୍ପରୁଦ୍ଧ ହୋଇ ପଚାରିବି... କିନ୍ତୁ, ସେମିତି କିଛି ନ କରି ଖାଲି ପଚାରିଲି- 'ତମ ନାଁ ?' ଇଂରାଜୀରେ ।

'ଡେଲ୍‌ଫି...' ତାପରେ ଗଳାଟିକୁ ମେଲୋଡ୍ରାମାଟିକ୍ କରି କହିଲା –

'ମାଇ ନେମ୍ ଇଜ୍ ଡେଲ୍‌ଫି... ବଟ୍ ଡୋଣ୍ଟ୍ କଲ୍ ମି ନେମ୍‌ସ୍... ଓକେ ?'

ମୁଁ ହସିଲି । ସେ ଓଠ କାମୁଡ଼ି ହସିଲା । ମୋତେ ଲାଗିଲା ମୋ' ଆଗରେ ଅଧା ସୁଚିତ୍ରା ସେନ୍, ଅଧା ଶୋଫିଆ ଲରେନ୍ ।

'ଆଚ୍ଛା ଯୋଉ ଭାଷଣବାଜି ମାରୁଥିଲ ? ବଡ଼ ବଡ଼ କଥା କହୁଥିଲ, ସତେ ଯେମିତି ଜୀବନର ସବୁ ଗଳିକନ୍ଦିରେ ବୁଲିଆସିଛ ? ବୟସ କେତେ କହିଲ – ହେଇ ହେଇ ବାଇଶି ବା ତେଇଶି ହେବ, ନା ନାଇଁ ? ଏତେ କଥା ଜାଣିଗଲ ? ଏତେ କଥା ବୁଝିଯାଇଛ ? ହଁ ମାନୁଛି, ବହିଗୁଡ଼ାଏ ପଢ଼ି ପକେଇଛ, ଆଉ ଭାବୁଛ – ସେହି ଧାଡ଼ିଗୁଡ଼ା ଜୀବନର, ବଞ୍ଚିବାର ଭିନ୍ନ ଭିନ୍ନ ନାମ ?'

ପ୍ରଚଣ୍ଡ ଅଭିନୟ-ଶୈଳୀ ପିଲାଟି ପାଖରେ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଉଥାଏ, ଖୁସି ବି ହୋଇଯାଉଥାଏ ।

'ତା ହେଲେ ସନ୍ଧ୍ୟାରେ ଦେଖାହେବ ?' ମୁଁ ପଚାରିଲି ।

'କେଉଁଠି ଓ ଠିକ୍ କେତେବେଳେ ?' ପ୍ରଶ୍ନ ଆସିଲା ।

'ସନ୍ଧ୍ୟା ଛ'ଟା, ଫିଲସଫି ଡିପାର୍ଟ୍‌ମେଣ୍ଟ ଲନ୍‌ରେ, ରାଇଟ୍ ?'

'ବାଏ, ବାଏ, ସୋ ଲଙ୍ଗ୍...' କହି ଝିଅଟି ଉଭେଇ ଗଲା କେଉଁଆଡ଼େ ।

କ'ଣ ଗୋଟେ ହଜେଇଲା ହଜେଇଲା ପରି ମନେ ହେଲା । 'କ'ଣ ହଜେଇଲି ?' ନିଜକୁ ପ୍ରଶ୍ନ କରି ଚାଲିଥାଏ । ଏ' ଭିତରେ ମୋ' ରୁମ୍‌କୁ ଚାଲି ଆସିଲିଣି । ଜାମାପଟା ସବୁ ଖୋଲି ଫିଙ୍ଗିଦେଲି ମଶାରିବାଡ଼ରେ । ତାପରେ ଖରାପ ଲାଗିଲା, ସେଗୁଡ଼ା ଠିକ୍ ଜାଗାରେ ହ୍ୟାଙ୍ଗର୍‌ରେ ରଖିଲି ।

ଏବେ ହଠାତ୍ ମନେ ପଡ଼ିଲା, ମୋ ଡାଇରିଟା କୁଆଡ଼େ ଗଲା ? ସକାଳେ ତ ହାତରେ ଧରିଥିଲି, ପୁଣି ଗଲା କୁଆଡ଼େ ? ଗେଷ୍ଟହାଉସ୍ କ୍ୟାଣ୍ଟିନ୍‌ରେ ଛାଡ଼ିଦେଇ ଆସିଲି ବୋଧେ ? ଡେଲ୍‌ଫି ହାତରେ ପଡ଼ିଯାଇନି ତ ? ତା'ହେଲେ ସେ ତ ସବୁ ଜାଣିଯିବ ମୋ' ବିଷୟରେ ? ବେକାର ହୋଇଗଲା ସବୁ । ମନଟା ଖଟାଳିଆ ହୋଇଗଲା । ସେ' ଯଦି ତା' ହଷ୍ଟେଲପିଲାଙ୍କ ଆଗରେ ଆବୃତ୍ତିଟି କରେ, ମୁଁ ଗଲି... ତାଙ୍କ ଆଗରେ ମୋ' ଜୀବନର ମୁଖ୍ୟ ଘଟଣା ଗୁଡ଼ିକ ଖୋଲିଗଲା... ମୁଁ ବିବସ୍ତ୍ର ହୋଇଗଲି... ଗଲା ସବୁ !

ମୁଁ ପ୍ରକୃତରେ ବିବସ୍ତ୍ର । ଦେହରେ ସୂତାଟିଏ ବି ନାହିଁ । ରକ୍ଷା ହୋଇଛି ରୁମ୍‌ରେ ବଡ଼ ଆଇନା ନାହିଁ । ମୁଣ୍ଡ କୁଣ୍ଡେଇବା ଆଇନାଟା ଅଛି । ସେଥିରେ ମୁଣ୍ଡବାଳ ତଳକୁ ନାକ, ପାଟି, ବେଶି ହେଲେ ଦୂରକୁ ଟିକେ ଆଡ୍‌ଜଷ୍ଟ କଲାପରେ ଓଠ ଦିଶେ, ବେକ ଦେଖାଯାଏନା । ଆଉ ଯଦି ବା ଦେଖାଯାଏ, ସେତେବେଳକୁ ଆଖି ଦିଟା ଗଲା, ଦେଖା ଯିବନି । କେମିତି ମାପଚୂପ କରି ଆଇନା ସବୁ ତିଆରି ହୋଇଥାଏ କେଜାଣି ?

ତେବେ ଭଲ ହେଲା ସିଆଡ଼େ ଡେଲଫି ମୋ ଡାଇରି ପଢ଼ି ମୋ ଜୀବନକୁ ତଳ ଉପର କରି ସାରିବଣି । ଇଆଡ଼େ ଉଲଗ୍ନ ଅବସ୍ଥାରେ ମୋ ନିଜ ଶରୀରର ସବୁ ଅଂଶ ମୁଁ ଦେଖିବାକୁ ଚେଷ୍ଟା କରୁଛି... କିନ୍ତୁ ପାରୁନି, ଏକାବେଳକେ ଦେଖିପାରୁନି ।

ଝରକା କବାଟ ସବୁ ଭିତରୁ ବନ୍ଦ କରିଦେଇ ବିଛଣା ଉପରକୁ ମୁଁ ଚାଲିଗଲି । ଏପରି ଅନୁଭୂତି ସମ୍ପୂର୍ଣ୍ଣ ନୂଆ । ଆଡାମ୍ ଓ ଇଭ୍ କଥା ମନେ ପଡ଼ିଗଲା । ଆରିୟାନା, ସମୀକ୍ଷା, ରୀତା... ନା ଆଉ ଭାବି ପାରୁନି । ବାହାରେ କିଏ ବୋଧେ ଡାକୁଛି, ମୁଁ ଠିକ୍ ଶୁଣିପାରୁନି । ତକିଆଟିକୁ ତଳକୁ ଫୋପାଡ଼ି ଦେଇ ମୁଁ ମୋ ଶରୀରର ବିଭିନ୍ନ ଅଂଶକୁ ଚବିଶ ବର୍ଗଫୁଟ ଖଟଟିର ସୀମିତ ପରିସର ଭିତରେ ଆଉ ରଖି ପାରୁନି । ତଳ ଉପର ହୋଇ ବିଭିନ୍ନ ଅବସ୍ଥାରେ ମୁଁ ଅନୁଭବ କରିପାରୁଛି ମୋ ଶରୀର ଭିତରେ ଗୋଟାଏ ଆଗ୍ନେୟଗିରିର ଉତ୍ତାପ, ଏକ ଅଦ୍ଭୁତ ଜୀବନ୍ତ କ୍ଷୁଧା । ନିଶ୍ୱାସ ଖୁବ୍ ଜୋର୍‌ରେ ଚାଲିଛି... ମୋ ହାତ ପାପୁଲି ଖୋଲି ପୁଣି ବନ୍ଦ ହୋଇଯାଉଛି । ପୁରୁଣା ମନ କେମିତି ଦୁର୍ବଳ ହୋଇଗଲାଣି, ଯାହାବା ଶକ୍ତି ତାର ଥିଲା, ସେ ସବୁତକ ଯେମିତି ଶରୀରକୁ ସମର୍ପଣ କରିଦେଇଛି । ଶରୀରରେ ଅଭୂତପୂର୍ବ ଶକ୍ତି ଓ ଉତ୍ତେଜନା ।

କବାଟରେ ଏଥର କାହାର ମୃଦୁ ଆଘାତ ଓ ତା'ପରେ କଣ୍ଠସ୍ୱର । କଣ୍ଠସ୍ୱର ଡେଲ୍‌ଫିର ପରି ଲାଗିଲା । ମୁଁ ଖୋଜିବାକୁ ବାହାରିଲି ପାଇଜାମା, ବା ଟାଉଏଲ୍ । କିଛି ପାଇଲିନି । କ'ଣ ମନେହେଲା, ସେମିତି ଯାଇ କବାଟ ଖୋଲିଦେଲି । ଭିତରକୁ

ପଶିଆସିଲା ସତରେ ଡେଲ୍‌ଫି–ଖୋଲା, ଅପର୍ଯ୍ୟସ୍ତ ମୁଣ୍ଡର ବାଳ, ବେକ ଓ କାନ ଲଙ୍ଗଳା, ସୀଥି ଶାଢ଼ିଭିତରୁ ମୁଁ ମୋ କଳ୍ପନାର ଇଭ୍‌କୁ ଦେଖିପାରୁଛି । ମୋତେ ଲାଗୁଛି ସତେ ଯେମିତି ଡେଲ୍‌ଫି ମୋ'ରି ପରି ଅନାବୃତ ଶରୀରରେ ଭୀଷଣ ଜ୍ୱାଳା ଓ କ୍ଷୁଧାନେଇ ଛଟପଟ ହେଉଛି । ହାତରେ ଥିବା ଡାଇରିକୁ ଟେବୁଲ ଉପରେ ରଖି ଡେଲ୍‌ଫି କବାଟ ଆଡ଼କୁ ଅନେଇଲା । ମୁଁ ଇଙ୍ଗିତଟି ବୁଝିଗଲି । କବାଟଟିକୁ ବନ୍ଦ କରି ତା'ଆଡ଼କୁ ଅନେଇଲା ବେଳକୁ ସିଏ ଖଟ ଉପରେ ଗୋଟିଏ କଣରେ । ଫ୍ରେଞ୍ଚ୍ ପର୍‌ଫ୍ୟୁମ୍‌ର ଗନ୍ଧ ରୁମ୍‌ସାରା... ମୁଁ ଟାଣି ହୋଇଗଲି ଡେଲ୍‌ଫିର ଓଠ ପର୍ଯ୍ୟନ୍ତ... ଲିପ୍‌ଷ୍ଟିକ୍ ଲାଗିଛି, କିନ୍ତୁ ଜଣାପଡୁନି, ଦେଖାଯାଉଛି ଦୂରକୁ । ମାତ୍ର କେଇ ଇଞ୍ଚ ସ୍ପର୍ଶରେ ଆମେ ଅଟକି ଗଲୁ ମିନିଟ୍ କେଇଟା... ତା'ପରେ ଦୁଇଟି ସମ୍ପୂର୍ଣ୍ଣ ଅନାବୃତ ଶରୀର ବିନା ସଂଘର୍ଷରେ ନୂତନ ସମ୍ପର୍କ ତିଆରି କରିବାରେ ବ୍ୟସ୍ତ । କିଛି କହିଚାଲିଛି ସେ, ମୁଁ ଠିକ୍ ଶୁଣିପାରୁନି, ଯଦିଓ ବୁଝିପାରୁଛି –

'ତୁମ ଡାଇରି ପଢ଼ିଦେଲି... ମାଇ ଗଡ୍, ତମେ ଏତେ ସବୁ କାଣ୍ଡ କରିଛ ? ଗଟ୍ ଦି ରିଅଲ୍ ୟୁ... ନାଓ, ହୁ ଇଜ୍ ଦିସ୍ ସମୀକ୍ଷା ? ଯାଣ୍ଡ୍ ରୀତା... ? ଜେଲ୍ ଭିତରେ ପୁଣି ରୋମାନ୍ସ ? ... ହାଏ ହାଏ, କି ଅବସ୍ଥା ଏ ଦେଶର ! ପଲିଟିକ୍ସ ଓ ରୋମାନ୍ସ— ଦିଟାଯାକ, ଏକାବେଳକେ ?'

ଏମିତି କ'ଣ ସବୁ କହି ଚାଲିଛି, ଆଉ ଇଆଡ଼େ ମୁଁ ଆଶ୍ଚର୍ଯ୍ୟ ଓ ଉତ୍ତେଜିତ ହୋଇ ଦେଖୁଛି ଦୁଇଟା ଜିଭ ଝିପି ଝିପି ବର୍ଷାରେ ଓଦାହୋଇ କେମିତି ପରସ୍ପର ସହ ଖେଳୁଛନ୍ତି, ସାପ ପରି... ଦୁଇଟାରୁ ଗୋଟାଏ ହୋଇଗଲେଣି... ହାତ ସେମିତି ଚାରିଟା ହୋଇ ଆଉ ନାହିଁ... ଆଖି ବନ୍ଦ ହୋଇଯାଉଛି... ମୁଁ ଆଉ କିଛି ଦେଖିପାରୁ ନାହିଁ ଦୃଶ୍ୟମାନ ପୃଥିବୀକୁ । ଆଖି ଖୋଲିଯାଉଛି, ମୁଁ ଦେଖିପାରୁଛି ଭିନ୍ନ ଏକ ପୃଥିବୀକୁ, ଆଉ ଅନୁଭବ କରିପାରୁଛି ମୁଁ ଆଜି ସମ୍ପୂର୍ଣ୍ଣ ଓ ମୋର ଶରୀରର କ୍ଷୁଧା ଓ ଜ୍ୱାଳା – ଅସହ୍ୟ । ନାରୀର ଶରୀର ଏକ ସ୍ୱୟଂସମ୍ପନ୍ନ ପୃଥିବୀ – ମୁଁ ଆଗରୁ ଜାଣି ନଥିଲି । ଏବେ ଜାଣୁଛି, ଅନୁଭବ କରୁଛି । ଏହା ଏପରି ଏକ ପୃଥିବୀ, ଏତେ ବଡ଼ – ଯେଉଁଠି ଘଣ୍ଟାଏ ନୁହେଁ, ଦିନେ ନୁହେଁ, ମାସ ମାସ ନୁହେଁ, ବର୍ଷ ବର୍ଷ ଲାଗୁଛି ଗୋଟିଏ ସ୍ଥାନରୁ, ଗୋଟିଏ ଅଂଶରୁ ଆଉ ଏକ ସ୍ଥାନ, ଆଉ ଏକ ଅଂଶକୁ ଆସିବା ପାଇଁ । ରହିଯିବାକୁ ଇଚ୍ଛା ହେଉଛି, ନିଶ୍ଚିହ୍ନ ହୋଇଯିବାକୁ ଇଚ୍ଛା ହେଉଛି ଗୋଟିଏ ଅଂଶରେ, ଗୋଟିଏ ସ୍ଥାନରେ – ସବୁକିଛି ପାଇଯିବା ପରେ, ସବୁ କିଛି ଅଙ୍ଗେ ନିଭେଇଲା ପରେ । ରୋମାଞ୍ଚ ଓ ଏଇ ଅସ୍ଥିରତା, କ୍ଷୁଧା ଓ ଏଇ ଜ୍ୱାଳା – ଯେଉଁଠି ବଞ୍ଚିବାର ଏକମାତ୍ର ନାମ, ଏକମାତ୍ର ଉଦ୍ଦେଶ୍ୟ । କିଏ ଗଢ଼ିଥିଲା ଏପରି ଏକ ପୃଥିବୀ, ନା ଆମେ ଦୁହେଁ ଆଜି ଗଢୁଛେ ?

ଡେଲ୍‌ଫି ଭିତରେ ମୁଁ ଦେଖିପାରୁଛି ଉଭୟ ସୂର୍ଯ୍ୟାସ୍ତ ଓ ଅପରାହ୍ନ – ଚିଲିକାକୂଳରେ, ସୂର୍ଯ୍ୟାସ୍ତବେଳେ ସେଦିନର ସ୍କୁଲଝିଅ ସମୀକ୍ଷାକୁ ଓ ଅପରାହ୍ନରେ ଜେଲ୍ ଭିତରେ ଖୁଣୀ ରୀତାକୁ ।

ପରିଚିତ ପୃଥିବୀକୁ ଫେରିଆସିଲାବେଳକୁ ମୁଁ ଦେଖିପାରୁଛି କବାଟ ଅଧାଖୋଲା... ଡେଲ୍‌ଫି ଚାଲିଯାଇଛି... ବାହାରେ କରିଡୋର୍-ଲାଇଟ୍ ଲାଗିନି.. ସବୁ ଅନ୍ଧାର... କାହାରି ପାଟି ଶୁଭୁନି... ସବୁ କୁଆଡ଼େ ଗଲେ କେଜାଣି ? ଗୋବିନ୍ଦଟା ଏପାଖ ସେପାଖ ହେବାକଥା, ସେଇଟା ବି ଦିଶୁନି । ଉପରକୁ ଅନେଇଲି, ସିହ୍ନା ରୁମ୍ ବି ଅନ୍ଧାର । ଚା'ଟାଇମ୍ ଗଲାଣି । ଗେଷ୍ଟ୍‌ହାଉସ୍ କ୍ୟାଣ୍ଟିନ୍ ଆଡ଼କୁ ମୁହେଁଇଲି । ସେଠି ଚା କପେ ପିଇଲେ ହ'ନ୍ତା । ଶରୀର ଦୁର୍ବଳ ଲାଗୁଛି, ଭାବନା, ଚିନ୍ତା ଅସ୍ଥିର... ଝରକା ପାଖରେ ବସି ମୁଁ ଦୂର ରାସ୍ତାକୁ ଦେଖିପାରୁଛି – ଗଛ ସବୁ ରାସ୍ତାର ଦୁଇ ଧାଡ଼ିରେ, କଳା ମଚ୍ ମଚ୍ ଆକାଶ, ଉପରେ । ଆଉ କିଛି ସମୟ ପରେ ଗଛ, ରାସ୍ତା କିଛି ଦିଶିବନି, ଖାଲି ଦେଖାଯିବ ଅନ୍ଧାର...

ଆଉ କପେ ଚା' ମଗାଇ ଭାବିଲି କ'ଣ ସବୁ ହୋଇଗଲା, କ'ଣ ସବୁ ଘଟିଗଲା ମୋ ଜୀବନରେ ଏଇ ମାସ କେଇଟାରେ । ଏତେ ନୂଆ ଚରିତ୍ର ଚାଲିଆସିଲେ ମୋ' ଜୀବନର ପରିସୀମାକୁ ! ସେମାନଙ୍କ ଭିତରୁ ଜଣେ ବ୍ୟାସାର୍ଦ୍ଧ ବାଟେ କେନ୍ଦ୍ର ଆଡ଼କୁ ଚାଲିଲାଣି । ମୁଁ କରିବି କ'ଣ ଏବେ ? ଆସ୍ତେ ଆସ୍ତେ ସେ ଯଦି ମୋ' ଜୀବନକୁ ଅକ୍ତିଆର କରିନିଏ ? ନା, ମୋତେ ମୁକୁଳିବାକୁ ପଡ଼ିବ । ବନ୍ଧନ ଏବେ ଶରୀରରେ ରହିଛି, ମନ ଭିତରେ, ହୃଦୟଭିତରେ ପ୍ରବେଶ କରିବା ଆଗରୁ ମୋତେ ମୁକୁଳିବାକୁ ପଡ଼ିବ ।

କିନ୍ତୁ ବନ୍ଧନରୁ ଖସିଆସିବା, ମୁକୁଳିଯିବା କ'ଣ ଏତେ ସହଜ ? କେବେ ସମ୍ଭବ ? ଯେମିତି ଘରୁ ବାହାରିଆସି ହଷ୍ଟେଲରେ ରହିବା ପରେ ଲାଗିଲା ଏକ ପ୍ରକାର ବନ୍ଧନରୁ, ଶୃଙ୍ଖଳାରୁ ମୁକ୍ତି ମିଳିଲା । ସ୍କୁଲଜୀବନରେ ଅବ୍‌ଦୁଲ୍ ଠାରୁ ଆରମ୍ଭ କରି ସମୀକ୍ଷା, ଶରତ ପର୍ଯ୍ୟନ୍ତ, କଲେଜଜୀବନର ପ୍ରାରମ୍ଭରେ ଅପୂର୍ବ, ଶମ୍ଭୁ, ରୀତାଠାରୁ ଆରମ୍ଭ କରି ସିହ୍ନା, ସୁମିତ୍ର, ଦୀପଙ୍କର, ଆରିୟାନା ପର୍ଯ୍ୟନ୍ତ ଡୋର ପରେ ଡୋରରେ ବାନ୍ଧି ହୋଇଯାଇଥିଲି । ଏ ବନ୍ଧନ ଥିଲା ଅନ୍ୟରକମର । ସ୍ୱାଧୀନତାକୁ କିଛିଟା ସ୍ୱେଚ୍ଛାଚାରିତା, କିଛିଟା ଆଦର୍ଶ ଓ ଭାବପ୍ରବଣତା ବୋଲି ଧରିନେଇଥିଲି । ହୃଦୟ ଭିତରେ, ମନ ଭିତରେ ବନ୍ଧନ ଆଲୋଡ଼ନ ସୃଷ୍ଟି କରୁଥିଲା, କିନ୍ତୁ ମୋତେ ବିବ୍ରତ କରୁ ନଥିଲା, କକ୍ଷଚ୍ୟୁତ କରୁ ନଥିଲା । କିନ୍ତୁ ଏବେ ହୃଦୟ, ମନ ଓ ଶରୀର – ତିନୋଟି ସ୍ତରରେ ବନ୍ଧନ ମୋତେ ଆସ୍ତେ ଆସ୍ତେ ଶିଥିଳ ଓ ଅନ୍ତର୍ମୁଖୀ କରିବାକୁ ବସିଲାଣି । ନା,

ମୋତେ ଏହାର କଡ଼ା ମୁକାବିଲା କରିବାକୁ ପଡ଼ିବ – ଡୋର ଛିଡ଼ାଇବାକୁ ପଡ଼ିବ, ବନ୍ଧନରୁ ମୁକୁଳିବାକୁ ପଡ଼ିବ ।

ସକାଳେ ଡିପାର୍ଟ୍‌ମେଣ୍ଟରେ ଡଃ ଚକ୍ରବର୍ତ୍ତୀଙ୍କ ସହ ଦେଖା । ମୋତେ କ୍ୟାଣ୍ଟିନ୍‌କୁ ଡାକିଲେ କ୍ଲାସ ପରେ । କହିଲେ ଆଗ ସପ୍ତାହରେ ସେମିନାର୍‌ରେ ବର୍ଣ୍ଣାଡ୍ ଶ'ଙ୍କର 'ଆର୍ମ୍‌ସ୍ ୟାଣ୍ଡ୍ ଦା ମ୍ୟାନ୍' ପ୍ଲେରିଡ଼ିଂ ହେବ । 'ଲଣ୍ଡନ, ଦିଲ୍ଲୀ ଓ ବମ୍ବେରେ ପଢ଼ିଥିବା ଇଂଲିଶ୍ ଅନର୍ସର ଝିଅ ଜଣେ ରାଇନା ରୋଲ୍ ନେବ, ତୁମେ ତା ସହିତ ସର୍ଜିୟସ୍ ରୋଲ୍ କରିବ । ପ୍ରଥମେ ତମ ସହିତ କରିବନି କହୁଥିଲା । ତମକୁ ବୋଧେ ଚିହ୍ନିନି, ନୂଆ ଆସିଛତ, ସେହି ସକାଶେ । ଏବେ ଚିହ୍ନିଲାଣି ବୋଧେ, ରୋଲ୍ କରିବ କହୁଛି । କ'ଣ ରାଜି ?'

ମୁଁ ହସିଲି ଓ ପ୍ଲେଟ୍‌ରେ ଥିବା ସିଙ୍ଗଡ଼ାରୁ ଗୋଟେ ଆଣି ପୂରାଟା ପାଟିରେ ପୁରୋଉ ପୁରୋଉ ଫାଳେ ଟେବୁଲ ଉପରେ ପଡ଼ିଗଲା । ମୋତେ ଲାଗିଲା ସିମ୍ବଲିକ୍ ଲେଭଲ୍‌ରେ ମୋ'ର ଆକ୍ଟିଂ ଆରମ୍ଭ ହୋଇଗଲାକି ? ସିଙ୍ଗଡ଼ାଟା ଏତେ ଥଣ୍ଡା – ସେ କ'ଣ ରାଇନା ହୋଇପାରେ ? ଆଉ ଯଦି ହୋଇଥାଏ, ତା'ହେଲେ ଏମିତି ଦୟନୀୟ ଅବସ୍ଥାରେ ତାକୁ ପୁରା ଗିଳିବାର କ'ଣ ଦରକାର ଥିଲା ? ଏହା ମୋର ଅବଚେତନ ମନର ପରିପ୍ରକାଶ ନୁହେଁତ ? - ନିଜକୁ ପଚାରିବାରେ ଲାଗିଥାଏ ।

'ଗୁଡ୍ ମର୍ଣ୍ଣିଂ ସାର୍' – ପଛ ଟେବୁଲରୁ ଶୁଭିଲା ।

'ଗୁଡ୍ ମର୍ଣ୍ଣିଂ'... ଅଭିବାଦନ ଗ୍ରହଣ କରି ଡଃ ଚକ୍ରବର୍ତ୍ତୀ କହିଲେ... 'ହ୍ୱାଇ ଡୋଣ୍ଟ୍ ୟୁ ଜଏନ୍ ଅସ୍, ଡେଲ୍‌ଫି ?'

ଡେଲ୍‌ଫି ? ମୁଁ ଚମକି ପଡ଼ି ଦେଖେତ, ଡେଲ୍‌ଫି । ପିନ୍ଧିଛି ବ୍ଲୁ ଜିନ୍ସ୍ ଉପରେ କଳା ଟି' ଶାର୍ଟ୍ !

ସାର୍ ଆମ ଦୁଇଜଣଙ୍କୁ ଇଣ୍ଟ୍ରୋଡ୍ୟୁସ୍ କରିଦେଲେ । ମୁଁ ଭାବିଥିଲି ଅଭିନୟ କରିବା ଏଇଠୁ ଆରମ୍ଭ କରିଦେବି । ତାହାହିଁ ହେଲା, କିନ୍ତୁ ପରେ ପରେ ଡେଲ୍‌ଫି ଯେପରି ଆକ୍ଟିଂ କଲା, ମୁଁ ମନେ ମନେ ହାର୍ ମାନିଲି । ମୋତେ ଲାଗିଲା ସେ ଜଣେ ବର୍ଣ୍ଣ୍ ଆକ୍ଟ୍ରେସ୍, ଯାହା କରେ ପ୍ରଫେସନାଲ୍ ଟଚ୍ ଥାଏ ସେଥିରେ ।

ବିନା ରିହିଅର୍ସାଲ୍‌ରେ, ଶେଷରେ ପ୍ଲେରିଡ଼ିଂ ହେଲା । ବାହାର ଡିପାର୍ଟମେଣ୍ଟରୁ ତିନିଚାରିଜଣ ଆସିଥିଲେ, ବାକି ସବୁ ଆମ ପିଲା, 'ଶିକ୍ଷାଭବନ' ଓ 'ବିଦ୍ୟାଭବନ'ର । ପ୍ଲେ ସରିଲା ପରେ ଆମେ ସବୁ କ୍ୟାଣ୍ଟିନ୍‌ରେ । ଡଃ ଚକ୍ରବର୍ତ୍ତୀ ଖୁଏଇଲେ ।

ସନ୍ଧ୍ୟାରେ ଫିଲସଫି ଡିପାର୍ଟ୍‌ମେଣ୍ଟ ଲନ୍‌ରେ ଡେଲ୍‌ଫି ସହ ପୁଣି ଦେଖା । ସାଙ୍ଗରେ ଶ୍ରୁତି, ଆମରି ଡିପାର୍ଟ୍‌ମେଣ୍ଟ ଝିଅ – ମଣିପୁର ରାଜପରିବାରର । ଦେଖିବାକୁ ଠିକ୍ ରାଜକୁମାରୀ ପରି । ଗୋଟିଏ ଆଙ୍ଗୁଠିରେ ଡାଏମଣ୍ଡ୍ ରିଂ... ଲେଖା ଅଛି 'ଆର୍' । ମୁଁ ପଚାରିଲି –

'ଆର୍ ଫର୍... ?'

'ରତନ୍' - ସାଙ୍ଗେ ସାଙ୍ଗେ ଉତ୍ତର ଦେଲା ଶ୍ରୁତି । ଏନ୍‌ଗେଜ୍‌ମେଣ୍ଟ୍ ପିଲାଦିନୁଁ ହୋଇଯାଇଛି... ପାତିଆଲାର ପ୍ରିନ୍ସ ସାଙ୍ଗରେ । ଖବରଟି ଦେବା ଆଗରୁ ଓ ପରେ – ହସ । ଦାନ୍ତଗୁଡ଼ିକ ମୁକ୍ତା ପରି, ହସ ଖୁବ୍ ସୁନ୍ଦର, ସରଳ, ସ୍ୱାଭାବିକ, ଖୋଲା, ମନକିଣା ହସ । ଶ୍ରୁତି ହାତଦେଖି ଜାଣେ । ବଢ଼ୋଉ ବଢ଼ୋଉ ମୋ' ହାତ ଦେଖି କେତେ କ'ଣ କହି ପକେଇଲା ।

ମୁଁ ସବୁ ଶୁଣୁଥାଏ । ହଠାତ୍ କୁଆଡ଼େ ସେ ଚାଲିଗଲା, ଆମେ ଦୁଇଜଣ ରହିଗଲୁ ସିମେଣ୍ଟ୍ ବେଞ୍ଚ୍ ଉପରେ । ବିଭିନ୍ନ ଫୁଲର ମହକ ଭିତରେ ଡେଲ୍‌ଫି ପଚାରିଲା – 'ଝିଅଟି କେମିତି ଲାଗିଲା ?'

ମୁଁ ନୀରବ । ତା'ପରେ ସେ ବି ନୀରବ ହୋଇଗଲା । ଡିନ୍ନର ଘଣ୍ଟା ଜେନେରାଲ୍ କିଚେନ୍‌ରୁ ଶୁଭିଲାଣି । ଡେଲ୍‌ଫି କାଗଜ ଖଣ୍ଡେ କୁଆଡୁ ବାହାର କଲା କେଜାଣି, ମୋତେ ବଢ଼େଇ ଦେଇ କହିଲା –

'ସେଦିନ ରାତିରେ ତମ ରୁମ୍‌ରୁ ଆସିବାପରେ ଲେଖିଥିଲି... ପଢ଼ିବ ଓ ଉତ୍ତର ଦେବ । କ'ଣ ମନେ ରହିଲା ?'

ମୁଁ ମୁଣ୍ଡ ହଲେଇଲାବେଳେ ମୋତେ ଜାବୁଡ଼ିଧରି କହିଲା–

'ଲେଟ୍ ମି କିସ୍ ୟୁ ଗୁଡ୍ ନାଇଟ୍'

ମୋ ପାଟିରୁ ବାହାରି ଆସିଲା – 'ଗୁଡ୍ ନାଇଟ୍' । 'ଯାଣ୍ଡ୍ ବେଷ୍ଟ୍ ଅଫ୍ ଡ୍ରିମ୍ସ'- କହିବାକୁ ଯାଇ କହିପାରିଲିନି, ମୋ' ପାଟି ବନ୍ଦ ହୋଇ ଯାଇଥିଲା ।

ଏକା ହଷ୍ଟେଲକୁ ଫେରିଲାବେଳେ ସ୍ୱଗତୋକ୍ତି ମୋର ପୁଣି ଆରମ୍ଭ ହୋଇଗଲା । ଏ ଯା'ହେଲାଣି ବା ଭବିଷ୍ୟତରେ ହେବାକୁ ଯାଉଛି – କିଛି ସୁବିଧା ନୁହଁ । ମୋ ପାଇଁ ନୁହଁ, ତା ପାଇଁ ବି ନୁହଁ । ଡୋର ଛିଡ଼ାଇବାକୁ ଗଲାବେଳେ ତ ଗଣ୍ଠି ଖାଲି ପଡ଼ିଯାଉଛି ! ମୁଁ କରିବି କ'ଣ ? ଆଜି ଭାବିଥିଲି, ଡେଲ୍‌ଫି ସହ କଥାବାର୍ତ୍ତା କରି ପରସ୍ପରର ଭୂମିକା

ଓ ଭବିଷ୍ୟତ ସ୍ପଷ୍ଟ କରିଦେବା । ଏ’ ପ୍ରକାର ରୋମାନ୍ସ, ଭାବପ୍ରବଣତାକୁ ଏବେଠୁଁ ନ ରୋକିଲେ ପରେ ଆଉ ପାରି ହେବନି । ଆଜି ତ ହେଲାନି । ଦେଖିବା, ଦିନେ ଦୁଇ ଦିନ ଭିତରେ, କଥାଟା ପରିଷ୍କାର କରି ଦେବାକୁ ହେବ ।

କିନ୍ତୁ ଡେଲ୍‌ଫିକୁ କିଛି କହିବା ଆଗରୁ ମୁଁ ନିଜ ଆତ୍ମ, ନିଜ ଭିତରେ ପରୀକ୍ଷା କରିନିଏ ? ସତରେ କ’ଣ ଏ’ ସମ୍ପର୍କ, ଏ’ ବନ୍ଧନ ମୁଁ ଚାହେଁନା ? ମୋତେ ଭଲ ଲାଗୁନି ? ଯଦି କହିବି ‘ନା’, ତା’ ହେଲେ ମୁଁ ମିଛ କହୁଛି, ନିଜକୁ ମିଛ କହୁଛି । ଆଉ ଯଦି ଭଲ ଲାଗୁଛି, ତା’ ହେଲେ ନିଜ ଉପରେ ଏମିତି କଟକଣା ଜାରି କରିବାର ଆବଶ୍ୟକତା କେଉଁଠି ରହିଲା ?

କ୍ଷଣିକ ଉନ୍ମାଦନା, ଶରୀରର ସାନ୍ନିଧ ତ ଆଗରୁ ଜୀବନରେ ଆସିଛି – ସମୀକ୍ଷାସହ, ଯେତେବେଳେ ଅପରିପକ୍ୱ ଶରୀରଟିଏ ଆଉ ଏକ ଶରୀର ସହିତ ବୁଝାମଣା ଆରମ୍ଭ କରିଦେଇଥିଲା, ଆସିଛି ରୀତା ସହ, ଯେତେବେଳେ ମନ ଶରୀରର କ୍ଷୁଧା ବୁଝି ପାରୁଥିଲା । ଆଉ ଆଜି ଏ’ଶରୀର ଖାଲି କ୍ଷୁଧା ବୁଝିନି, ବୁଝେଇପାରୁଛି ଅନ୍ୟକୁ, ମନଭିତରେ ଥିବା ପୁରୁଣା ଦାଗ ସବୁ ଲିଭି ନୂଆ ଦାଗ ଦେଖା ଦେଉଛି । ଡେଲ୍‌ଫି ମୋ ହୃଦୟ ଭିତରେ ଗଢ଼ିଉଠିଥିବା ଆଶକ୍ତି ଓ ଅନୁଭବର ଗତାନୁଗତିକତାକୁ ଭାଙ୍ଗି ନୂତନ ଶିହରଣ, ନୂତନ ଜ୍ୱାଳା ସୃଷ୍ଟି କରିଛି । ମୁଁ କରିବି କ’ଣ ଏବେ ? ଯଦି ଶେଷରେ ଆମେ ବାହାହେଉ... ଓଃ ମୋଟେ ଭାବି ହେଉନି ! ଡେଲ୍‌ଫିର ଗ୍ଲାମର୍ ଅଛି, ସୌନ୍ଦର୍ଯ୍ୟ ଅଛି.. ଭଲ ଇଂରାଜୀ କହିପାରେ, ଲେଖିପାରେ, ପ୍ରଥମ ଦେଖାରେ ଯେ କୌଣସି ଲୋକକୁ ଇମ୍‌ପ୍ରେସ୍ କରିପାରେ, କିନ୍ତୁ ଗୃହିଣୀ ହିସାବରେ ? ସ୍ତ୍ରୀ ଭୂମିକାରେ ? ଭଲ ଇଂରାଜୀ କହିବା, ଅଭିନୟ କରିବା, ସଫଳ ସ୍ତ୍ରୀ ବା ଗୃହିଣୀ ହେବା ଏକା କଥା ନୁହେଁ – ମୁଁ ବୁଝିପାରୁଛି । କିନ୍ତୁ ତା’ପୂର୍ବରୁ ମୋତେ କେତୋଟି ପ୍ରଶ୍ନର ଉତ୍ତର ଖୋଜି ବାହାର କରିବାକୁ ପଡ଼ିବ, ଯଥା : ଡେଲ୍‌ଫି ଭିତରେ ସ୍ତ୍ରୀର ଗୁଣ, ଗୃହିଣୀର ଗୁଣ ବା ‘ୱାଇଫ୍ – ମ୍ୟାଟିରିୟାଲ୍’ ଖୋଜା ଚାଲିଛି, ତା’ ସହିତ ଯିଏ ଘର ସଂସାର କରିବ, ତା’ଠିତ ପୁଣି ଜଣେ ଗୃହୀ ଓ ସ୍ୱାମୀର ଗୁଣ ବା ‘ହଜ୍‌ବ୍ୟାଣ୍ଡ୍-ମ୍ୟାଟିରିୟାଲ୍’ ଥିବାର କଥା ? ଉଭୟ ନ ଚାହିଁଲେ, ସହଯୋଗ ନ କଲେ, ପରସ୍ପରର ଦୋଷଗୁଣକୁ ଅତିକ୍ରମ କରି ‘ଅନ୍ତରଙ୍ଗ ବନ୍ଧୁ’ ବା ଅତି କମ୍‌ରେ, ‘ଭଲ ସାଙ୍ଗ’ ହିସାବରେ ନ ରହିଲେ ସମ୍ପର୍କ ଓ ବନ୍ଧୁତା ଦୁଇଜଣଙ୍କ ଭିତରେ କ’ଣ ସମ୍ଭବ ହେବ ? କେବଳ ପ୍ରମତ୍ତ ଶରୀରର ସ୍ଫୂର୍ତ୍ତିରେ ଯଦି ବା ଗଢ଼ିଉଠେ, ତାହା କ’ଣ ଭବିଷ୍ୟତରେ ଅତୁଟ ରହିବ ?

ଆତ୍ମସମୀକ୍ଷା କରି ବୁଝିପାରିଛି – ମୋ' ଭିତରେ ସେଭଳି ଗୁଣ ନାହିଁ । ପରିସ୍ଥିତି କ୍ରମେ ହୁଏତ ଆସିପାରେ, କାରଣ ମଣିଷ ନିଜକୁ ସମ୍ପୂର୍ଣ୍ଣ ଚିହ୍ନିପାରେନା ଏକ ନିର୍ଦ୍ଦିଷ୍ଟ ବା ସ୍ୱାଭାବିକ ସମୟ ଓ ପରିସ୍ଥିତିରେ । ସମସ୍ୟା ଆସିଲେ, ସଙ୍କଟ ଉପୁଜିଲେ, କେତେ କ'ଣ ଭିତରୁ ବାହାରି ଆସେ – ଅସମ୍ଭବ ଶକ୍ତି, ବିଚିତ୍ର କୌଶଳ । ତାପରେ ସମାଧାନର ବାଟ ଆପେ ଆପେ ଖୋଲିଯାଏ । ସବୁ ସରିଗଲାପରେ ସେ ନିଜକୁ ହୁଏତ ପଚାରିପାରେ – ତା ଭିତରେ ଏତେ ଗୁଣ, ଏତେ ଶକ୍ତି ଲୁଚି ରହିଥିଲା କେଉଁଠି ?

## ୪୨

ସମୟ ଦିଆ ହୋଇଥିଲା ମାସେ କିନ୍ତୁ ତା ଆଗରୁ କୁଳପତି ଇନ୍ଦିରା ଗାନ୍ଧିଙ୍କଠାରୁ ସମ୍ମତି ଆସିଗଲା – ଆସନ୍ତାବର୍ଷଠାରୁ ବିଶ୍ୱ ଭାରତୀରେ ଏମ୍.ଏସ୍.ସି. ଖୋଲିବ । ବେଶ୍ ଭଲ ହେଲା । ଆଉ ଦାବିଟା ପ୍ରତି କେହି ଗୁରୁତ୍ୱ ଦେଲେନି । ଭୁଲିଗଲେ ବୋଧେ ।

ଖୁସିରେ ପିଲେ ମାଗିଲେ ପାର୍ଟି । ମୋ ପାଖରେ ଟଙ୍କା କାହିଁ, ମୁଁ ପାର୍ଟି ଦେବି ? ସେ ପୁଣି ପାଞ୍ଚଦଶଜଣ ତ ନୁହେଁ, ପଚାଶ ଖଣ୍ଡେ ମାଡ଼ି ଆସିବେ । ସେଥିରେ ପୁଣି ବାଳିକାପିଲାଙ୍କ ସଂଖ୍ୟା ବେଶି, ସମ୍ଭାଳିବ କିଏ ସେମାନଙ୍କୁ ?

ୟାଡ଼େ ପୁଣି ୟୁନିୟନ୍ ବଜେଟ୍‌ରେ ଥିବା ଟଙ୍କାରୁ ବାର ହଜାର ଅଧିକ ଖର୍ଚ୍ଚ ସରିଲାଣି । ପ୍ରକ୍ଟର ଚେତାବନୀ ଦେଲେଣି – ବର୍ଷ ଶେଷ ହେବା ଆଗରୁ ଏକାଉଣ୍ଟ୍ ଠିକ୍ ନକଲେ ମୁଁ ପରୀକ୍ଷା ଦେଇପାରିବିନି । କି ଅବସ୍ଥା ! ତେବେ ଭାବିଲି, ଦେଖାଯିବ ପରେ କ'ଣ ହେବ । ଏବେ ଗୋଟେ ଛୋଟକାଟିଆ ପାର୍ଟିର ତ ବ୍ୟବସ୍ଥା କରିବାକୁ ପଡ଼ିବ । କାହାକୁ ଗୋଟେ ମୁର୍ଗା ବନେଇବାକୁ ପଡ଼ିବ ।

ଶେଷରେ ଖଳବୁଦ୍ଧିଟିଏ ମୁଣ୍ଡକୁ ଜୁଟିଲା – ଶିଶିର୍, ଶିଶିର୍ ଚୌଧୁରୀ, ତ୍ରିପୁରାର – ଆମ ଡିପାର୍ଟ୍‌ମେଣ୍ଟର ପ୍ରିନ୍‌ସେସ୍ ଶ୍ରୁତି ପ୍ରତି ତା'ର ପ୍ରଚଣ୍ଡ ଦୁର୍ବଳତା । କେତେଥର ସେ ବିଷୟରେ ମୋତେ କହି ସିଗାରେଟ୍ ଖୁଆଇଛି । ଶ୍ରୁତି ଯଦି ଆସେ ସେ ଖୋଇବ, ଯେତେ ଖର୍ଚ୍ଚ ହେଉପଛେ । ସେ ନିଶ୍ଚେ ଖୋଇବ । ଥିଲା ଘରର ପିଲା ପରି ଜଣାପଡୁଛି । ପ୍ଲେନ୍‌ରେ ଯିବା ଆସିବା କରେ । କର୍ଡ୍‌ରୟର ପ୍ୟାଣ୍ଟ୍ ଓ ଜ୍ୟାକେଟ୍ ସବୁବେଳେ ପିନ୍ଧିଥାଏ, ଖରା ଦିନେବି । ଘଡି 'ସିକୋ' ଅରିଜିନାଲ, ତା ମାମୁଁ କୁଆଡ଼େ ୱାଶିଂଟନ୍‌ରୁ ପୂଜାଛୁଟିରେ ତା' ପାଇଁ ଆଣିଥିଲେ । ସେଦିନ ଘଣ୍ଟାଟା ବନ୍ଦ ହୋଇଗଲା । ପଚାରିଲାରୁ କହିଲା, ଚାରିଘଣ୍ଟା କୁଆଡ଼େ ପ୍ରତିଦିନ ହାତରେ ବାନ୍ଧିବାକୁ ପଡ଼ିବ, ନହେଲେ

ଅଟୋମ୍ୟାଟିକ୍ 'ସିକୋ' ବନ୍ଦ ହୋଇଯିବ । ସତ୍‌କୁ ସତ ବନ୍ଦ ହୋଇଗଲା, କାରଣ ବାବୁ ସୁନା ବ୍ୟାଣ୍ଡ୍‌ବାଲା ପୁରୁଣା ଓମେଗା ଘଣ୍ଟାକୁ ହାତରୁ ଓହ୍ଲାଇଲେନି ସପ୍ତାହେ ଖଣ୍ଡେ ।

ଠିକ୍ ଅଛି ତା' ହେଲେ... ଏଥର ନାଟକଟି ଆରମ୍ଭ ହୋଇଯାଉ । ଶିଶିର ଚୌଧୁରୀ ସେଣ୍ଟର୍ ଷ୍ଟେଜ୍‌କୁ ଆସନ୍ତୁ ।

ନାଟକର ସ୍କ୍ରିପ୍ଟ୍ ସିନା ମୋଟାମୋଟି ଠିକ୍ ହୋଇଗଲା – ମାନେ ଟେକ୍ସଟ୍ ହୋଇଗଲା, କଣ୍ଟେକ୍ସଟ୍ ? ଅକ୍କେଜନ୍ ? କେଉଥିପାଇଁ ପାର୍ଟି ?

ସିହ୍ନା କଥା ମନେ ପଡ଼ିଗଲା । ଚୁପ୍ ଚାପ୍ ପିଲାଟେ... ଖାଲି ଚାର୍ମିନାର୍ ଶୋଷି ଚାଲିଥାଏ... 'ମହାଭାରତ'ର ସହଦେବ ଭଳି, ନ ପଚାରିଲେ କିଛି କହିବନି । ଆଉ ଯେତେବେଳେ କହେ, ନିଦା କଥାଟା କହେ ! ଲେଖା ବି ସେମିତି ତା'ର... କୋଡ଼ିଏ ଧାଡ଼ି, ପଚିଶ ଧାଡ଼ିରେ 'ଉଏଷ୍ଟ୍‌ଲ୍ୟାଣ୍ଡ୍' କବିତାର କ୍ରିଟିକାଲ୍ ଆପ୍ରିସିଏସନ୍ ସରିଗଲା । ନମ୍ବର ବି ଭଲ ପାଏ । ସବୁବେଳେ ତ ପାଟିରୁ ଧୂଆଁ... ଆଉ ରାତିରେ ସୋମରସ । ପରୀକ୍ଷାବେଳେ ପୁଣି ସ୍ପେଶାଲ୍ – ବିଅର୍, ଫିଅର୍ ଚଲିବନି... 'ବ୍ଲାକ୍‌ନାଇଟ୍' ହ୍ୱିସ୍କି ।

ତେଣୁ ଖରାବେଳଟାରେ ସିହ୍ନା ରୁମ୍‌ରେ ପହଞ୍ଚିଲି । କବାଟ ଖୋଲିଲାବେଳକୁ ସେମିତି ପାଇଜାମାଟେ ଆଉ ଖାଲି ଦିହରେ ବିଛଣାରେ ବାବୁ ପଡ଼ିଛନ୍ତି । ପହଞ୍ଚୁ ନ ପହଞ୍ଚୁ ମୋତେ ପଚାରିଲା – 'ଦେସିଲାଇଟ୍ ଆଛେ ?'

ମୁଁ ପକେଟ୍‌ରୁ ବାହାର କଲି । ମୋ' ଆଡ଼କୁ ଗୋଟେ ଚାର୍ମିନାର୍ ବଢ଼େଇ ଦେଇ ତା' ଢଙ୍ଗରେ କହିଲା –

'ଆସୁନ୍'...

ମାନେ ମୁଁ ବୁଝିଗଲି । ବଙ୍ଗଳାରେ 'ଆସୁନ୍' ର ଅର୍ଥ ଏକାଧିକ । କେବଳ 'ଆସନ୍ତୁ' ନୁହେଁ, 'ନିଅନ୍ତୁ' ମଧ୍ୟ । ମୁଁ ସିଗାରେଟ୍‌ଟି ନେଲି ।

'ୟାକ୍‌ଟା ହଟ୍ ବିଅର୍ ଚଲ୍‌ବେ ?' ସିହ୍ନା ପଚାରିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ଅନାଇଲାରୁ ଖଟ ତଳକୁ ହାତ ଦେଖେଇ କହିଲା, ସେ ଦୁଇଟା ବିଅର୍ ମଗେଇଥିଲା । ଦ୍ୱିତୀୟଟା ପିଇଲା ବେଳକୁ ଗରମ ହୋଇଗଲାଣି ! ଫ୍ରିଜ୍ ତ ହଷ୍ଟେଲରେ ନାହିଁ, ତେଣୁ... ।

ମୁଁ ମୋ' ପ୍ଲାନ୍‌ଟା ତାକୁ କହିଲାରୁ ସେ ମୁରୁକି ମୁରୁକି ହସି କହିଲା –

'ଚଲୋ, ଶିଶିର୍ କାଛେ... ଓର୍ ସାଥେ ପ୍ଲାନ୍‌ଟା ସେଟ୍‌ଲ୍ କର୍‌ତେ ହବେ ।'

ମାନେଟା ବୁଝିଗଲି । ସିହ୍ନାର ମାଷ୍ଟର୍‌ମାଇଣ୍ଡ୍ । ମାଛତେଲରେ ମାଛ ତରକାରି । ଦେଖୁ ଦେଖୁ ଅଧଘଣ୍ଟା ଭିତରେ ଶିଶିର୍ ରୁମ୍‌ରେ ଆମେ ତିନିଜଣ । ଶିଶିର୍ ହଷ୍ଟେଲ ଉଆଡ୍‌ବୟ୍‌କୁ ଡାକି ଦଶଟଙ୍କା ବଢ଼େଇ ଦେଲା । ଅଧଘଣ୍ଟା ଭିତରେ ଆସିଗଲା ତିନୋଟି ବ୍ଲାକ୍ ଲେବ୍ଲ୍, ଥଣ୍ଡା ବିଅର୍ ଓ ପାଞ୍ଚ ପ୍ୟାକେଟ୍ ଚାର୍ମିନାର୍ । ତା'ପରେ ମୁଖ୍ୟବକ୍ତା ହେଲେ ସିହ୍ନାଜୀ... ପଲକହୀନ ଚକ୍ଷୁରେ ଅନେଇଛନ୍ତି ଶିଶିର୍ ଚୌଧୁରୀ । ଠିକ୍ କରାଗଲା ପାର୍ଟି ଦିଆଯିବ, କିନ୍ତୁ ଅକ୍କେଜନ୍ ମୋ' ଇଲେକସନ୍ ଭିକ୍ଟ୍ରି କୁହାଯିବନି । କୁହାଯିବ–ଆର ସପ୍ତାହରେ, ମାନେ ଆସନ୍ତା ବୁଧବାର (ବୁଧବାର ଦିନ ଏଠି ୟୁନିଭର୍ସିଟିର ଛୁଟିଦିନ, ରବିବାର ନୁହେଁ) ମୋ' ଜନ୍ମଦିନ । ଶ୍ରୁତି ହେବ 'ଷ୍ଟାର୍ ଇନ୍‌ଭାଇଟି'... 'ଷ୍ଟାର୍ ଆଟ୍ରାକ୍‌ସନ୍' । ଯିଏ ଆସନ୍ତୁ, ଯେତେଜଣ ଆସନ୍ତୁ ମୋର ସେଥିରେ କହିବାର କିଛି ନାହିଁ । ଇଣ୍ଟର୍ନ୍ୟାସନାଲ୍ ଗେଷ୍ଟ୍ ହାଉସ୍‌ରେ ହେବ ପାର୍ଟି, ମାନେ 'ହାଇ ଟି', ମୁଁ ହେବି ଅଫିସିୟାଲ୍ ହୋଷ୍ଟ୍, କିନ୍ତୁ ବିଲ୍ କଥା ବୁଝିବ ଶିଶିର୍ ଚୌଧୁରୀ... (ବିଚରା ଶିଶିର୍ !) ଫଟୋ ସେସନ୍ ତାକୁ ଓ ଶ୍ରୁତିକୁ ନେଇ ତିନି ଚାରିଟା କରିଦେଲେ ଗଲା । ସେ ଖୁସି । ଶ୍ରୁତି ଉଚ୍ଚମନା ଝିଅଟେ । ଦରକାର ପଡ଼ିଲେ ଇଣ୍ଟ୍ରୋଡ୍ୟୁସ୍ ହେଲାବେଳେ ଶିଶିର୍ ସହିତ ହ୍ୟାଣ୍ଡ୍‌ସେକ୍ କରିଦେଇପାରେ, କରିବନି ? ସେଦିନ ବର୍ଷା ବାଡ଼ୋଉଥିଲା । ସେଣ୍ଟ୍ରାଲ୍ ଲାଇବ୍ରେରୀ ଆଗରେ ଝାଲିଡ଼ୋନ୍ଦ୍‌ରେ ପୁରା ତିନ୍ତି ନିର୍ବିକାର ଭାବେ ଚାଲୁଥାଏ ଶ୍ରୁତି । ସମସ୍ତେ ଅନାଉଥାନ୍ତି, ସିଏ କାହିଁକି ଶୁଣିବ କିଏ କ'ଣ କହୁଛି । ସେମିତି ରାସ୍ତାମଝିରେ ତିନ୍ତି ତିନ୍ତି ହଷ୍ଟେଲ୍‌କୁ ଯାଉଥାଏ । ମୁଁ ଜାଣେ ଭାରି ମୁଣ୍ଡି ଝିଅ ସେ, ରୟାଲ୍ ବ୍ଲଡ୍‌ର ହେଲେ ସେୟା ହୁଏ । ତେଣୁ ଭୟ କରିବାର କିଛି ନାହିଁ । ଆରିୟାନା, ଆନ୍ନା ସମେତ ଫରେନ୍ ଷ୍ଟୁଡେଣ୍ଟ୍ ଡେଲି-ଗେଟ୍‌ସ୍ ସବୁ ଚାଲିଗଲେଣି, ନହେଲେ ଆହୁରି ଜମନ୍ତା ।

ଶିଶିର୍ ନିଜେ ଗୋଟେ ଧଳା କାଗଜକୁ ଧରି ସିହ୍ନା ଆଗରେ ନାଁଗୁଡ଼ା ଲେଖି ତାକୁ କୋଉଠି ଗୋଟେ ଟାଇପ୍ କରି, ହଷ୍ଟେଲ ଯେତେସବୁ ଅଛି ସେଠିକି ଯାଇ, ଅନେକଙ୍କୁ ମୋ' ତରଫରୁ ନିମନ୍ତ୍ରଣ କରି ପକେଇଲା । ସନ୍ଧ୍ୟାବେଳକୁ ବାବୁ ଟପ୍ ଗିଅରରେ । କଥା କ'ଣ ବୁଝିଲା ବେଳକୁ – ଦସ୍ତଖତ କଲାବେଳେ ଡେଲ୍‌ଫି ଓ ଶ୍ରୁତି କୁଆଡ଼େ ସ୍ଲାକ୍ସ ପିନ୍ଧି ଟେବୁଲ୍ ଟେନିସ୍ ଖେଳୁଥିଲେ, ଭାରି ଖୁସି ହୋଇଗଲେ ପାର୍ଟି କଥା ଶୁଣି ।

ଶେଷରେ ସବୁବାର ପରି ବୁଧବାର ଆସିଲା । ଶିଶିର୍ ଚୌଧୁରୀ ଥ୍ରିପିସ୍ ସୁଟ୍ ପିନ୍ଧି ଦିନ ଦି'ଟା ବେଳୁ ଆମ ହଷ୍ଟେଲରେ ନସରପସର ହେଉଛନ୍ତି । ଭୁବନଡାଙ୍ଗାର 'ପରିବର୍ତ୍ତନ' ଷ୍ଟୁଡିଓରୁ ବିଶୁଦା'କୁ ଡାକିଆଣି ତାକୁ ଦିଟା ବିଅର୍ ବି ଧେଇସାରିଲେଣି । ଯାହା ସବୁ ସିହ୍ନା ଓ ମୁଁ ଭାବିଥିଲୁ, କେବଳ ତାହାହିଁ ହେଲାନି, ବେଶୀ ଟିକେ ହେଇଗଲା । ଶ୍ରୁତି ଶିଶିର ଆଡକୁ ଅନେଇ ଲମ୍ବା ସ୍ମାଇଲ୍‌ଟେ ଦେଇ ହ୍ୟାଣ୍ଡ୍ ସେକ୍‌କଲା ବେଳକୁ ବିଶୁଦା

'ହାଇ'... ଦୁଇ ତିନିଟା ଆଙ୍ଗଲ୍‌ରୁ ଫଟୋ ଉଠାହେଲା । ବହୁବାର ରିହିଅର୍ସାଲ୍ ହୋଇଥିବା ସିନ୍‌ଗୁଡିକ ପରି ସବୁ କିଛି ଘଟିଗଲା ।

## ୪୩

ସକାଳୁ ମନଟା କେମିତି କେମିତି କେନ୍ଦ୍ରରୁ ପରିଧି ପାଖକୁ ପଳେଇଚି । କିଛି ଭଲ ଲାଗୁନି । ଡଃ ସେନ୍‌ଙ୍କ କ୍ଲାସ ହେବନି, ଶାନ୍ତାଦିଙ୍କ କ୍ଲାସ ଅସହ୍ୟ – ତାଙ୍କ କ୍ଲାସକୁ ଯାଉଛି କିଏ ? 'ଅର୍ନ ବେରିୟାଲ୍' ପଢ଼ୋଉ ପଢ଼ୋଉ କ୍ଲାସଟା ବେରିୟାଲ୍ ଗ୍ରାଉଣ୍ଡ୍ ପରି କେବେଠୁଁ ଲାଗିଲାଣି । ଶାନ୍ତାଦି ଆମେରିକାରେ କୁଆଡ଼େ ପନ୍ଦର ବର୍ଷ କଟେଇଛନ୍ତି । ସବୁବେଳେ ଲାଇବ୍ରେରୀରେ । କେନେଡ଼ି ଏୟାରପୋର୍ଟରେ ଓହ୍ଲେଇଲା ବେଳେ କୁଆଡ଼େ ତାଙ୍କ ହାତରେ ଥିଲା ବୁକ୍‌ମାର୍କ ସହ ଆରିଷ୍ଟୋଟ୍‌ଲଙ୍କ 'ପୋଏଟିକ୍ସ ।' କି ବୋରିଂ ଭଦ୍ରମହିଳା, ଏତେ ଅନ୍‌ରୋମାଣ୍ଟିକ୍ ! କ୍ଲାସରେ ପୁଅପିଲାଙ୍କୁ ଅନେଇବାର ମୁଁ ଦେଖିନି । ହସନ୍ତିନି କେବେ ସେ, ଅନ୍ତତଃ କ୍ଲାସରେ କେବେ ସେ ହସିନାହାନ୍ତି । ସ୍ପିନ୍‌ଷ୍ଟର୍... ଆଜୀବନ କୁମାରୀ । ବହୁତ ପଢ଼ାପଢ଼ି କରି ସମୟ ପାଇନାହାନ୍ତି କୁଆଡ଼େ ସାଥିଟିଏ ଖୋଜିବା ପାଇଁ, ଘର ବସେଇବା ପାଇଁ । ସୁମିତ୍ର ଶାନ୍ତାଦି ବିଷୟରେ ଅନେକ ଗପ ଜାଣିଛି, କହେ, କିନ୍ତୁ ମୁଁ ମନ ଦେଇ କେବେ ଶୁଣେନି । ତେଣୁ ମୋତେ ବେଶୀ କହେ, ବେଶୀ ଥର କହେ । ମୁଁ ତଥାପି ଜାଣିପାରେନା, ନୂଆଲାଗେ, ସବୁବେଳେ ନୂଆ ଲାଗେ । ଭଲ ବି ଲାଗେ – ଚରିତ୍ର ନୁହେଁ, ଚରିତ୍ର-ଚିତ୍ରଣ । ସୁମିତ୍ରର ଚରିତ୍ର-ଚିତ୍ରଣ ଅପୂର୍ବ, ଦିନେ ନିଶ୍ଚେ ମମ୍ ବା ମାଲାମୁଡ୍ ପରି କଥାକାର ହେବ ।

ରିକ୍ସାଟେ ଧରି ଷ୍ଟେସନ୍ ଚାଲିଲି । ପ୍ଲାଟ୍‌ଫର୍ମ୍‌ରେ ଗାଡ଼ିଟେ । ଉଠିଗଲି । ପକେଟ୍‌ରେ କିଛି ଟଙ୍କା । ବର୍ଦ୍ଧମାନ୍ ଷ୍ଟେସନ୍‌ରେ ଓହ୍ଲେଇ ଦୀପଙ୍କରକୁ ଖୋଜିଲି । ପାଇଲିନି । 'ସୀତାଭୋଗ' ପାଇଁ ବର୍ଦ୍ଧମାନ ବିଖ୍ୟାତ । ଦିଶହ ଗ୍ରାମ୍ 'ସୀତାଭୋଗ' ଖାଇ ପକେଇଲି । ହ୍ୱିଲର ଦୋକାନରେ ବହି, ମ୍ୟାଗାଜିନ୍ ସବୁ ଦେଖୁଛି ମନକୁ ଆସିଲା ଗୋଟେ କଥା । ଶାନ୍ତିନିକେତନରେ ସାଇକ୍ସ ପି.ଜି./ ରିସର୍ଚ୍ଚ୍ କୋର୍ସ୍ ତ ଖୋଲିଗଲା, ମୋ' ଭୋଟରମାନେ ମନେ ରଖିବେ । ଆଉ ଗୋଟେ କାମ କଲେ ତ ଭଲ ହେବ, ଗୋଟିଏ ଶରରେ ଦୁଇଟି ପକ୍ଷୀ – ୟୁନିଭର୍ସିଟି ଖେଳ ପଡ଼ିଆରେ ଭାରତର ଦୁଇଟା ଟପ୍ ଟିମ୍ – ମୋହନ୍ ବାଗାନ୍ ଓ ଇଷ୍ଟବେଙ୍ଗଲ୍ ଭିତରେ ପ୍ରଦର୍ଶନୀ ଫୁଟବଲ୍ ମ୍ୟାଚ୍ କଲେ କେମିତି ହ'ନ୍ତା ? କିନ୍ତୁ ଏତେ ବଡ଼ ଟିମ୍, ସେମାନେ କଲିକତା ବାହାରକୁ କ'ଣ ଯିବେ ? କେବେ ଯାଆନ୍ତିନି ତ ! ଯଦି ଆସନ୍ତେ, ଗ୍ରେଟ୍ ।

 

କେମିତି ଆସିବେ ମୁଣ୍ଡ ଖର୍ଚ୍ଚ କରିବାକୁ ପଡ଼ିବ । ବାର ହଜାର ଟଙ୍କା ପ୍ରଦର୍ଶନୀ ମ୍ୟାଚ୍‌ରୁ ଲାଭ ହିସାବରେ ଉଠେଇଲେ ହିଁ ମୁଁ ପରୀକ୍ଷା ଦେଇପାରିବି । ନହେଲେ ଗଲା, ବର୍ଷଟି ନଷ୍ଟ । ମୋହନ୍‌ବାଗାନ୍ ଓ ଇଷ୍ଟ ବେଙ୍ଗଲ୍ ଟିମ୍‌ର କ୍ୟାପ୍‌ଟେନ୍ – ଚୁନି ଗୋସ୍ୱାମୀ ଓ ପି.କେ. ବାନାର୍ଜିଙ୍କ ନାଁ ଶୁଣିଛି । ଚୁନି ଗୋସ୍ୱାମୀ ଫୋର୍ଟ୍ ଉଇଲିୟମ୍ ଷ୍ଟେଟ୍ ବ୍ୟାଙ୍କ୍‌ରେ ଅଛନ୍ତି ବୋଲି ବି ଜାଣିଛି । ତା' ହେଲେ ? କଲିକତାଆଡ଼କୁ ଯାଉଥିବା ଗୋଟେ ଲୋକାଲ୍‌ରେ ଉଠିପଡ଼ିଲି । ଚୁନିଦା'କୁ ତାଙ୍କ ଅଫିସ୍‌ରେ ସିଧାଯାଇ ଦେଖା କରି ଯେମିତି ହେଲେ ରାଜି କରେଇବାକୁ ହେବ ।

ହାଓଡ଼ାରେ ଗାଡ଼ିରୁ ଓହ୍ଲେଇ ହ୍ୱିଲର୍ ମ୍ୟାଗାଜିନ୍ ଷ୍ଟଲ୍ ଆଡ଼କୁ ଚାଲିଛି ଧକ୍କାଟେ ଦେଇ କିଏ ଜଣେ ପ୍ରବଳ ବେଗରେ ଅନ୍ତର୍ଦ୍ଧାନ । ଆଗରେ, ପଛରେ, ବାଁ, ଡାହାଣ– ସବୁଆଡ଼େ ଜନସମୁଦ୍ର । ଏତେ ଲୋକ ! ତେରଟି ପ୍ଲାଟଫର୍ମରୁ ଯାତ୍ରୀ କ'ଣ ଏକା ସମୟରେ ବାହାରି ଆସିଛନ୍ତି ନା କ'ଣ ? ସମଗ୍ର ଭାରତଟି ଏଇଠି ଏକଜୁଟ ହେଲାପରି ମୋତେ ଲାଗିଲା । ହାଓଡ଼ା ଷ୍ଟେସନ୍‌ଟି ମିନି-ଇଣ୍ଡିଆ... ଯାହା ଖୋଜିବ ଏଠି ମିଳିବ, କେବଳ ବାପ ମା'ଙ୍କ ଛଡ଼ା । ଯଦି ସେମାନେ ବଞ୍ଚିଥାଆନ୍ତି, ତେବେ ମିଳି ଯାଇପାରନ୍ତି । ଚାଲିଆସିଥିବେ, କୋଉଠି ଗୋଟେ ବସିଥିବେ, ଚା' ପିଉଥିବେ, କିଏ ଜାଣେ ?

ପ୍ରବଳ ଇଚ୍ଛା ହେଲା ଗରମ ଚା' କପେ ପିଇବାକୁ । ଟିକେ ଫ୍ରେସ୍ ହେବାକୁ ବି ଇଚ୍ଛା ହେଲା । ଉଏଟିଂ ରୁମ୍ ତ ଉପରେ... ଷ୍ଟେୟାର୍ କେଶ୍ ଚଢ଼ି କିଏ ଉପରକୁ ଯାଉଛି ? ଚା' ପିଉଛି, ଭାବିଲି, ନା ଉଏଟିଂ ରୁମ୍‌କୁ ଯିବା କିଛି ଦରକାର ନାହିଁ, ବରଂ ପ୍ଲାଟ୍‌ଫର୍ମ୍‌ରେ ରହିଥିବା କୌଣସି ଗାଡ଼ିର ଫାଷ୍ଟକ୍ଲାସ୍ କମ୍ପାର୍ଟମେଣ୍ଟ୍‌ର ଟଏଲେଟ୍ ଭିତରେ ପଶି ଫ୍ରେସ୍ ହେଇଯିବା... ଶସ୍ତା, ସହଜ ଯୋଜନା । ତା'ପରେ ଫୋର୍ଟ୍ ଉଇଲିୟମ୍ ଷ୍ଟେଟ୍‌ବ୍ୟାଙ୍କ୍‌କୁ ଗୋଟେ ଫୋନ୍ ବୁଲେଇବା । ଯଦି ଚୁନିଦା ମିଳିଯାଆନ୍ତି, ମାଡ଼ିଯିବା ବ୍ୟାଙ୍କ୍‌କୁ । ନହେଲେ ଡିରେକ୍ଟରିରୁ ପି.କେ. ବାନାର୍ଜିଙ୍କ ନମ୍ବର ବାହାର କରି ତାଙ୍କୁ ମନେଇବାକୁ ହେବ ।

ସେୟା ହେଲା... ଚୁନିଦା ନିଜେ ଫୋନ୍ ଧରିଲେ । ସଂପୂର୍ଣ୍ଣ ଅଜଣା ପିଲାଟିର କଣ୍ଠସ୍ୱର ଶୁଣି ପାଖକୁ ଡାକିଲେ । ମୁଁ ଅତି ଖୁସିରେ ବସ୍ ପାଇଁ ସବ୍‌ୱେ ଯିବା ରାସ୍ତା ଛାଡ଼ି ସିଧା ଷ୍ଟେସନ୍ ଏକ୍‌ଜିଟ୍ ପଏଣ୍ଟରୁ ଟାକ୍ସିଟିଏ ଧରିଲି ।

ଚୁନିଦା ପ୍ରଥମେ ମୋତେ ରାଜି ହେଉ ନଥିଲେ । ପରେ ମୋ' ବ୍ୟକ୍ତିଗତ ପରିସ୍ଥିତି ବୁଝିଗଲା ପରେ ରାଜି ହୋଇଗଲେ । କେବଳ ସେତିକି ନୁହେଁ । କହିଲେ

ଇଷ୍ଟବେଙ୍ଗଲ୍ ଟିମ୍‌ର କ୍ୟାପ୍‌ଟେନ୍, ପୁରୁଣା ଅଲିମ୍ପିକ୍ ପ୍ଲେୟାର୍ ପି.କେ. ବାନାର୍ଜିଙ୍କୁ ବି ରାଜି କରେଇବେ । କହୁ କହୁ ସେଇଠୁ, ତାଙ୍କ ଅଫିସ୍‌ରୁ ଫୋନ୍ କଲେ ।

ମ୍ୟାଡାମ୍ ଲକ୍ ବୋଧେ ମୋ' ଉପରେ ଖୁସି ଥିଲେ । । ଲାଇନ୍ ମିଳିଗଲା । ସବୁକିଛି ମିନିଟ୍ କେଇଟା ଭିତରେ ଠିକ୍ ଠାକ୍ ହୋଇଗଲା । ତେବେ ତାରିଖ କନ୍‌ଫାର୍ମ ହୋଇପାରିଲାନି, କାରଣ ଦେଶର ଦୁଇଟା ଟପ୍ ଫୁଟ୍‌ବଲ୍ ଟିମ୍ ଭିତରେ ମ୍ୟାଚ୍ ମାନେ, ପଶ୍ଚିମବଙ୍ଗ ହୋମ୍ ଡିପାର୍ଟମେଣ୍ଟର ଅନୁମତି ନେବାକୁ ହେବ । ନାହିଁ ନଥିବା ଦର୍ଶକ ମାଡ଼ିଆସିବେ ଶାନ୍ତିନିକେତନକୁ । ଦୁଇଟାଯାକ ଟିମ୍‌ର ଅସଂଖ୍ୟ ଫ୍ୟାନ୍ ଅଛନ୍ତି, ତାଙ୍କୁ ସମ୍ଭାଳିବାକୁ ଉପମୁଖ୍ୟମନ୍ତ୍ରୀ ଜ୍ୟୋତିବସୁଙ୍କ ଠାରୁ ଅନୁମତି ଦରକାର । ପୁଣି ବିଶ୍ୱଭାରତୀ ଅଥୋରିଟିଙ୍କୁ ମନେଇବାକୁ ପଡ଼ିବ । ଏତେ କଥା ଭାବିଲାବେଳକୁ... ନା, ମୋତେ ଯେମିତି ହେଲେ ଆଗେଇ ଯିବାକୁ ପଡ଼ିବ । ଭାବିଲି ଯେ ବି ଗୋଟେ ରେକର୍ଡ଼ ହେବ – ଇଷ୍ଟ୍‌ବେଙ୍ଗଲ୍ ମୋହନ୍ ବାଗାନ୍ ଫୁଟବଲ୍ ମ୍ୟାଚ୍ ପ୍ରଥମଥର ଶାନ୍ତିନିକେତନ ଗ୍ରାଉଣ୍ଡ୍‌ରେ – କ'ଣ କମ୍ କଥା ? ପବ୍ଲିସିଟି ଜୋର୍ ହେବ... ଭଲ ! ଚୁନିଦା'ଙ୍କୁ ଆବଶ୍ୟକତାରୁ ଅଧିକ କୃତଜ୍ଞତା ଜଣେଇ ମୁଁ ଫେରିଲି ଏସ୍‌ପ୍ଲାନେଡ୍ ।

ଗ୍ଲୋବ୍‌ରେ 'ଗେସ୍... ହୁ ଇଜ୍ କମିଂ ଫର୍ ଡିନର୍' ସିନେମା ଚାଲିଛି– ମୋ' ଫେଭରିଟ୍ ସିଡ୍‌ନି ପୋଟିୟର୍ ମୁଭି । 'ହାଉସ୍‌ଫୁଲ୍' ବୋର୍ଡ଼ଟା ଦେଖି କିଛି ସୁବିଧା ଲାଗିଲାନି । ଡିପ୍ରେସନ୍‌କୁ ହଟେଇବା ଲାଗି ଚିକେନ୍ ରୋଲ୍, ମଟନ୍ ରୋଲ୍, ମସ୍ରୁମ୍ ରୋଲ୍ – ଯାହା ମିଳିଲା, ଖାଇଗଲି । ତା'ପରେ ବରଫ କମ୍ ଦେଇ ପାଇନ୍‌ଆପ୍ଲ ଜୁସ୍ ଗୋଟେ ମଗ୍... ଭଲ ଲାଗିଲା । ସୁମିତ୍ର କଥା ମନେ ପଡ଼ିଲା – ସିଏ ବି ମଗ୍ ମାଗିଥା'ନ୍ତା, ଜୁସ୍ ଖୁବ୍ ଭଲ ପାଏ । ସିହ୍ନା କିନ୍ତୁ ପାଖ ଦୋକାନକୁ ମାଡ଼ି ଯାଇ ବ୍ଲାକ୍ ଲେବ୍ଲ ବିୟର୍ ଦିଟା ମାରିସାରନ୍ତାଣି । ସମୀକ୍ଷା ହେଇଥିଲେ – 'ନା ଖାଇବିନି' କହି ସାମନାରେ ଦିଶୁଥିବା ଏୟାର୍-କଣ୍ଡିସଣ୍ଡ୍ ନିଉମାର୍କେଟ୍ କେକ୍ ଦୋକାନକୁ ନିଶ୍ଚୟ ଯାଇଥାନ୍ତା । ଡ୍ରାଇ ଫ୍ରୁଟ୍‌ସ, କେକ୍, ପେଷ୍ଟ୍ରିଜ୍–ତାର ପ୍ରିୟ... ଆଉ ଲିମ୍‌କା । ଲିମ୍‌କା ଚାରିଟା, ଗୋଟେ ପରେ ଗୋଟେ ପିଇ ଦେଲା ସେଥର ପ୍ରେସିଡେନ୍ସି କଲେଜ କ୍ୟାମ୍ପସ୍‌ରେ । ନାଇସ୍ ଗାର୍ଲ... ସମୀକ୍ଷା ।

'ନାଇସ୍' ଏହି ସକାଶେ ଯେ ସେ ସମସ୍ତଙ୍କ ପରି ନୁହଁ – କାମରେ ବା ଚିନ୍ତାଧାରାରେ । ଭଲ ଲାଗିଲା ଯାହା ସେ ନିଶ୍ଚୟ କରିବ । ଭଲ ଲାଗୁଛି ଯିଏ, ତା' ପାଖକୁ ଯିବ, କଥା ହେବ, ପୁଣି ଯିବ, ବନ୍ଧୁତା କରିବ । କିଏ କ'ଣ ସେଥିପାଇଁ କହୁ, ସମାଲୋଚନା କରୁ – ସେଥିପାଇଁ ଦୃଷ୍ଟି ଦିଏନି ସମୀକ୍ଷା ।

ସଦର୍ ରୋଡ୍ ସାଇଡ୍‌ରୁ କ'ଣ ଗୋଟେ ଗଣ୍ଡଗୋଳ ଆରମ୍ଭ ହୋଇଯାଇଛି । ଦଉଡ଼ା ଦଉଡ଼ି କରି ଗୁଡାଏ ଲୋକ ଆସି ଗ୍ଲୋବ୍ ସିନେମା ଡେଇଁ ନିଉ ମାର୍କେଟ୍ ଭିତରେ ପଶିଗଲେଣି । କଲିକତାରେ କେତେବେଳେ କ'ଣ ହୋଇଯାଏ, କେହି ଜାଣିପାରନ୍ତିନି, ବୁଝି ପାରନ୍ତିନି । ପିଲାଠୁଁ ବୁଢ଼ାଯାଏ, ଗ୍ରାହକ, ସେଲ୍‌ସ୍ କାଉଣ୍ଟର୍‌ରେ ବସିବାପିଲା ପର୍ଯ୍ୟନ୍ତ ସମସ୍ତେ କ'ଣ ହୋଇଛି ଜାଣିବାକୁ ପାଗଳ । କଲିକତାରେ ଏହା ସମ୍ଭବ, ଦିଲ୍ଲୀରେ ନୁହେଁ, ବମ୍ବେରେ ନୁହେଁ । ସେଠି ବସ୍ ଭିତରେ ଛୁରାମାଡ଼ ହେଲେବି ପାଖରେ ବସିଥିବା ଲୋକ ଅନେଇବନି । ବସ୍ କଣ୍ଡକ୍ଟର ନଜାଣିଲା ଭଳି ଅନ୍ୟଆଡ଼କୁ ମୁହଁ କରିଥିବ, କିନ୍ତୁ କଲିକତାରେ ମଣିଷ ସହ ମଣିଷର ଭିନ୍ନ ସମ୍ପର୍କ ମୁଁ ଲକ୍ଷ୍ୟ କରିଛି, ଅନୁଭବ କରିଛି । ବସ୍‌ରେ ଉଠୁ ଉଠୁ ବସିଥିବା ଲୋକ ଉଠୁଥିବା ଲୋକର ବ୍ୟାଗ୍‌ଟିକୁ, ଛତାଟିକୁ ନିଜ କୋଳ ଉପରକୁ ନେଇଯାଏ... ଲେଡିଜ୍ ଥିଲେ ତ, ସିଧା ଉଠିପଡ଼େ, କାଇଁକିନା ଅଧାରୁ ବେଶୀ ଜାଗା ବସ୍‌ରେ ଲେଡିଜ୍‌ଙ୍କ ପାଇଁ ।

ମୋତେ ଲାଗେ ପ୍ରତ୍ୟେକ ସହର ମଣିଷ ପରି, ଅନ୍ୟ ସହରଠାରୁ, ଅନ୍ୟ ମଣିଷଠାରୁ ଭିନ୍ନ । ଆମେରିକାରେ ଠିକ୍ ସେୟା – ଯେମିତି, ନିଉୟର୍କ ସହର ଅନେକଟା ବୁଦ୍ଧିଜୀବୀଙ୍କ ସହର, କିନ୍ତୁ ସିକାଗୋ – ରହସ୍ୟ ଓ ଜଡ଼ବାଦର ସହର, ଯେଉଁଠି ବଡ଼ ବଡ଼ ବ୍ୟାଙ୍କ୍ ଓ କର୍ପୋରେସନ୍ କଳା ଓ ସଂସ୍କୃତିକୁ ଗୋଟାଏ ବଡ଼ ପୁଞ୍ଜି ବୋଲି ହିଁ ଭାବନ୍ତି, ଯଦିଓ ସିକାଗୋ ପ୍ରଖ୍ୟାତ କବି କାର୍ଲ୍ ସ୍ୟାଣ୍ଡ୍‌ବର୍ଗ୍ ତଥା କଥାକାର ଡ୍ରାଇଜର୍ ଓ ବେଲୋଙ୍କ ସହର ।

ହଠାତ୍ 'ହାଓଡ଼ା, ହାଓଡ଼ା' ପାଟି ଶୁଭିଲା ଗୋଟେ ଖାଲି ଟାକ୍ସିରୁ । ମୁଁ କିଛି ନକହି ଭିତରେ ପଶିଗଲି । ତା'ପରେ ଡ୍ରାଇଭର କହୁଛି ସିଆଲ୍‌ଦା ଯିବ... ମୁଁ କହିଲି ଭଲ ହେଲା ସେଇଠୁ ଦାର୍ଜିଲିଂ ମେଲ୍‌ରେ ଉଠି ଯିବି, ସିଧା ବୋଲ୍‌ପୁର । ସମୟ ତ ଅଛି ।

ସିଆଲ୍‌ଦା ଷ୍ଟେସନରେ ସବୁବେଳେ ମେଳା ଲାଗିଥିଲା ପରି ମନେହୁଏ । ଜନସମୁଦ୍ର... ମୋତେ ଲାଗେ ସବୁ ଜାଗାରୁ ମଣିଷ ଆସି ଏଇଠି ବିଞ୍ଚି ହୋଇ ପଡିଛନ୍ତି, ସମସ୍ତଙ୍କ ପାଖରେ କାହାଣୀ ପରେ କାହାଣୀ ଲୁଚି ରହିଛି, ସମସ୍ତଙ୍କ ଜୀବନରେ ଅକୁହା ଆଘାତ, ଅସୁମାରି କଥା ଭରି ରହିଛି । ମୋ' ପାଖରେ ମୋ' ଜୀବନ, ମୋ ପରିସ୍ଥିତି ଜଟିଳ । ଅନ୍ୟମାନଙ୍କର ବି ସେମିତି ହେଇଥାଇପାରେ ?

ମୋତେ ଲାଗୁଛି ପୃଥିବୀରେ କେହି କେଉଁଠି ଭଲରେ ନାହାନ୍ତି । ସମସ୍ତେ ଘଡ଼ିଏ ଘଡ଼ିଏ ଜୀବନର ଖରା ଓ ଛାଇରେ । କେତେବେଳେ ଉଚ୍ଚା ପାହାଡ଼ ଉପରେ ତ ପୁଣି କେତେବେଳେ ସମୁଦ୍ର କୂଳରେ । ସମସ୍ତେ ଝୁଲୁଛନ୍ତି ଆକାଶରୁ ପୃଥିବୀକୁ ଲମ୍ବି

ଆସିଥିବା ସୂତାଟିରେ । କେହି ଦେଖି ନାହାନ୍ତି ସେଇ ସୂତାକୁ । କାହାର ନିୟନ୍ତ୍ରଣରେ ଚାଲିଛି ଏ' ଖେଳ ? କେତେ ମାସ, କେତେ ବର୍ଷ, କେତେ ଯୁଗ ଚାଲିବ ଏ'ଖେଳ ? କେତେଜଣ ଶେଷରେ ରହିବେ ? ରହିବେ କି ? କିଏ କିଏ ହଜିଯିବେ ଖେଳ ମଝିରେ, ଖେଳ ସରିଲାବେଳକୁ ?

ପ୍ରଚଣ୍ଡ ବେଗରେ ଦାର୍ଜିଲିଂ ମେଲ୍ ଆଗକୁ ମାଡ଼ିଚାଲିଛି... ଗୋଟିଏ ଦିଗରେ । ମୋ ଭାବନା ସେତିକି ବେଗରେ ଗତି କରୁଛି ସତ, କିନ୍ତୁ ଗୋଟିଏ ଦିଗରେ ନୁହେଁ– ବିଭିନ୍ନ ଦିଗରେ । ଝରକାପାଖ ସିଟ୍‌ରେ ଦୁଇଜଣ ବସିବା କଥା, ଆମେ ବସିଛୁ ଚାରି । ଭାରତବର୍ଷରେ କେବଳ ଜନସଂଖ୍ୟା ଯୋଗୁଁ ନୁହେଁ, ଅନ୍ୟ କିଛି କାରଣରୁ ମଧ୍ୟ, ଆଡ୍‌ଜଷ୍ଟ କରିନେବା ଏକ ଧରାବନ୍ଧା ଜାତୀୟ ଅଭ୍ୟାସ । ଯେଉଁଠି ଦେଖ, ଅସୁବିଧା ଯେତେ ହେଉ ପଛେ, ଟିକେ ଆଡ୍‌ଜଷ୍ଟ୍ କରିଦେବା – ଦୁଇଜଣଙ୍କ ଜାଗାରେ ପାଞ୍ଚ ଛ' ଜଣ ବସି ଯିବା—ଟ୍ରେନ୍‌ରେ, ସ୍କୁଟର୍‌ରେ, ଟାକ୍ସିରେ, ବସ୍‌ରେ, ସବୁଠି । ଶେଷ ତାରିଖ ଗଡ଼ିଗଲାଣି ଦରଖାସ୍ତ ଦେବାର – 'ଆଜ୍ଞା, ଟିକେ ଆଡ୍‌ଜଷ୍ଟ୍ କରିଦେବେ' । ଟ୍ରେନ୍‌ରେ ରିଜର୍ଭେସନ୍ ବଗିରେ ଜାଗା ନାହିଁ, କଣ୍ଡକ୍ଟର୍‌କୁ ଆଡ୍‌ଜଷ୍ଟ୍ କରିବାପାଇଁ ଆବେଦନ, ପ୍ରଲୋଭନ । ବିଷୁବସଂଖ୍ୟା ପତ୍ରିକା ଛପା ସରିବାପରେ, ଲେଖା ଆସିଛି, କୁହାଯାଇଛି, ଅନୁରୋଧ କରାଯାଇଛି... ଟିକେ ଆଡ୍‌ଜଷ୍ଟ୍ କରି ଛପେଇ ଦେବେ ।

ହାତଟା ଅସୁବିଧା କରୁଛି । କେଉଁଠି ରଖିବି ? ଯେଉଁଠି ରଖିଲେ ବି ପାଖ ଲୋକଟି ଦେହରେ ବାଜୁଛି । ସିଏ ବି ସେମିତି ଭାବୁଥିବ, ହଇରାଣ ହେଉଥିବ ? ଆଠଟିରୁ ଦିଟା ଠିକ୍ ଜାଗାରେ, ବାକି ଛଟି ହାତ ଇତସ୍ତତଃ ଜାଗା ଖୋଜୁଛନ୍ତି ଭଲରେ ଟିକେ ରହିବେ କେଉଁଠି । ନିଜକୁ ପଚାରିଲି, ଏଇ ତ ଜୀବନ ! ଜାଗାଟିଏ ଦରକାର ରହିବାକୁ--ସ୍ଥିର ଜାଗାଟିଏ, ଛୋଟ ହେଉ ପଛକେ, ନିଜର, ଏକାନ୍ତ ଭାବେ ନିଜର, କ୍ଷଣସ୍ଥାୟୀ ହେଉ ପଛେ, କିଛି ସମୟ ପାଇଁ ନିଜର, ଆଉ କାହାର ନୁହେଁ, ଯେଉଁଠି ନିଜର ଶରୀର ଓ ମନକୁ ଖୋଲି ଭାଗ ଭାଗ କରି ହୁଗୁଳା କରିହୁଏ, ବଞ୍ଚିହୁଏ ଏକ ନିରୋଳା ବ୍ୟାପ୍ତି ଭିତରେ,ଯେଉଁଠି ଉପରେ ଶବ୍ଦ ଓ ଆଶଙ୍କାର ଆକାଶକୁ ଦେଖିବାର ଆବଶ୍ୟକତା ନଥାଏ, ତଳେ ଯାନ୍ତ୍ରିକ ଶବ୍ଦ ମନର ନକ୍ସାକୁ ବିଚଳିତ କରେ ନାହିଁ, ଯେଉଁଠି ଏକ ବିଚିତ୍ର ଆକସ୍ମିକତା ଓ ଅସହାୟତା ଭିତରେ ମା' ତାର ସବୁ ସନ୍ତାନମାନଙ୍କୁ କାଖେଇ, କାନ୍ଧେଇ ଆଗେଇଗଲା ପରି, ମନ ତା'ର ସବୁ ଭାବନାଗୁଡ଼ିକୁ ଏକତ୍ରିତ କରି ବିଭିନ୍ନ ଦିଗରେ ମାଡ଼ିଯାଏ, ଯେଉଁଠି ଚିତ୍ର ଚିତ୍ରକାର ସହିତ ମିଶିଯାଏ, ଜୀବନ କଥାକାର ସହିତ ।

ମନ ଓ ଶରୀର ଭିତରେ ଥିବା ଫାଙ୍କଟି ଦେଖିବାକୁ ଅନେକ ବର୍ଷ ଲାଗିଲା । ଫାଙ୍କଟି ଚିହ୍ନିବାକୁ ଅନେକ ଅନୁଭୂତିକୁ ଚିହ୍ନିବାକୁ ପଡ଼ିଲା । କେତେବେଳେ ଭୟ ଲାଗୁଥିଲା, କେତେବେଳେ ସନ୍ଦେହ ଆସୁଥିଲା, ଯେତେବେଳେ ମନ ଓ ଶରୀର ଏକାକାର ହୋଇଯାଉଥିଲେ । ସହାବସ୍ଥାନ କେତେ ଦିନ ପାଇଁ, କେତେ ମୁହୂର୍ତ୍ତର ? ମନରେ ପ୍ରଶ୍ନ ଆସିଲେ ଶରୀର ମାଧ୍ୟମରେ ମୁଁ ଉତ୍ତର ପାଇଛି – ବିଚିତ୍ର ପରିସ୍ଥିତିରେ, ଆକସ୍ମିକତା ଓ ଅସହାୟତା ଭିତରେ । ଶରୀର ପ୍ରଶ୍ନ କରିପାରେନା, କେବଳ ପ୍ରଶ୍ନ ପାଇଁ ସମସ୍ୟା ସୃଷ୍ଟି କରେ, ପରିସ୍ଥିତିକୁ ଗୋଳମାଳିଆ କରିପକାଏ । ମନ ବିଭକ୍ତ ହୁଏ, ଭାରସାମ୍ୟ ହରାଏ, ଆଉ 'ମନ' ହୋଇ ରହେନା । ମୋତେ ଲାଗୁଛି, ଏ ଦୁହିଁଙ୍କ ଭିତରେ ସମ୍ପର୍କ ଓ ଫାଙ୍କ ମୋ ଜୀବନକୁ ବିଭିନ୍ନ ପରିସ୍ଥିତିରେ ଗଢ଼ି ଚାଲିଛି ଓ ଭାଙ୍ଗି ଚାଲିଛି । ଏତେ ଯେଉଁ ଚରିତ୍ରମାନେ ଆସୁଛନ୍ତି – କିଏ ହଠାତ୍, କିଏ ଆସ୍ତେ ଆସ୍ତେ – ଆସି ମୋ ଜୀବନର ବିଭିନ୍ନ ଅଂଶକୁ ଦଖଲ କରି ନେଉଛନ୍ତି, ନିଜର ପରିଚିତ, ବୋଲକରା ଅଂଶକୁ ମୋ' ପାଖରେ ଅପରିଚିତ, ଅମାନିଆ କରି ପକାଉଛନ୍ତି । ସେମାନଙ୍କୁ ନିୟନ୍ତ୍ରଣ କରିବାକୁ ହେଲେ ମୋତେ ମୋ ମନ ଓ ଶରୀରର ପୃଥକ୍ ପୃଥକ୍ ସ୍ତରକୁ ଲକ୍ଷ୍ୟ କରିବାକୁ ପଡ଼ିବ, ଗୋଟିଏରୁ ଆଉ ଗୋଟିଏର ପ୍ରଭାବକୁ ମୁକ୍ତ କରିବାକୁ ପଡ଼ିବ । ନହେଲେ ଏଇ ଚରିତ୍ରମାନଙ୍କୁ ବୁଝିହେବନି, ନିୟନ୍ତ୍ରଣ କରି ହେବନି ।

ଯେପରିକି ଡେଲ୍‌ଫି – ମୋ ଶରୀର ଉପରେ କର୍ତ୍ତୃତ୍ୱ ଜାହିର କରି ମନକୁ ଅକ୍ତିଆର କରି ବସିଲାଣି, ଅଥଚ ରୀତା ପ୍ରଥମ ସ୍ତରରେ ହିଁ ରହିଯାଇଛି ! ଆଉ ସମୀକ୍ଷା ? ସିଏ ତ ପୁରୁଣା ସମ୍ପର୍କ, ଏକା ସମୟରେ ବଢ଼ି ଆସିବାରେ, ଜୀବନକୁ ବଞ୍ଚୁ ବଞ୍ଚୁ, ବୁଝୁବୁଝୁ, ଚମକି ପଡ଼ିବାର ସମ୍ପର୍କ – କେଉଁ ସ୍ତରରେ ରହିଛି ? କହିବା କଷ୍ଟ, କହିବାର ସମୟ ବୋଧହୁଏ ଆସିନି । ତେବେ ନିଶ୍ଚିତ ଭାବେ ତିନିଜଣଯାକ ଭିନ୍ନ ପ୍ରକାରର । ସେମାନଙ୍କର ସମ୍ପର୍କ ଓ ପ୍ରଭାବ, ମୁଁ ଭାବେ, ମୋ ଭିତରେ ଭିନ୍ନ ମଣିଷଟିଏ, ନୂଆ ମଣିଷଟିଏ ତିଆରି କରୁଛି କି ?

ଏହା ନିଜ ପାଖରେ ଏକ ପ୍ରଶ୍ନ, ଯାହାର ଉତ୍ତର ବାହାର କରିବା ସହଜ ନୁହେଁ । ଖୋଜିବାକୁ ହେବ, ଅପେକ୍ଷା କରିବାକୁ ହେବ, ଭାବିବାକୁ ହେବ – ତରବରରେ ନୁହେଁ, ଭାବପ୍ରବଣତାରେ ନୁହେଁ, ଅଯଥା ଭୟ ବା ଅହେତୁକ ଆନନ୍ଦରେ ନୁହେଁ – ସ୍ଥିର ମସ୍ତିଷ୍କରେ, ଚଲାପଥରୁ ଓହରି ଆସି, ଘାସ ଉପରେ ନିରୋଳା ବସିଥିଲାବେଳେ, ପୋଖରୀ ଭିତରେ ପବନରେ ଟହଲି ଟହଲି ବିଭିନ୍ନ ଦିଗକୁ ଲମ୍ବିଯାଇଥିବା ନିଜର ପ୍ରତିବିମ୍ବମାନଙ୍କ ଭିତରେ ।

## ୪୪

କେତେବେଳେ ଗାଡ଼ି ଆସି ବୋଲପୁର ପ୍ଲାଟ୍‌ଫର୍ମ୍‌ରେ ପହଞ୍ଚି ପୁଣି ଛାଡ଼ିବା ଉପରେ । ଝରକା ଭିତରୁ ପରିଚିତ ହ୍ୱିଲର୍ ମ୍ୟାଗାଜିନ୍ ଷ୍ଟଲ୍ ଦେଖି, ଚାଲୁଥିବା ଗାଡ଼ିରୁ ଆସ୍ତେ ଡେଇଁ, ମୁଁ ପ୍ଲାଟ୍‌ଫର୍ମ୍‌ରେ ।

ବାଁ ଗୋଡ଼ଟା ମକଚିଗଲା ବୋଧେ ! କେମିତି ରିକ୍ସାରେ ହଷ୍ଟେଲ ଗଲି, କେତେ ଡେରିରେ ପହଞ୍ଚିଲି, କିଏ ସବୁ ରାସ୍ତାରେ ଦେଖାହେଲେ, ଜଣେ ଦି ଜଣ ହାତ ହଲେଇଲେ – କିଛି ଜାଣି ପାରିଲିନି । ଠିକ୍ କଣ ଗୋଟେ ଭାବୁଥିଲି, ମନେ ନାହିଁ । ଡାଇନିଂ ରୁମ୍‌ରେ ଅଣ୍ଡା ରୁଟି, ଆଉ ଯା ମନେ ପଡୁଛି, ଅଣ୍ଡାଝୋଳ । ଗୋବିନ୍ଦ ମୋ ଥାଳିରେ ଯାହା ଦେଇଗଲା, ଖାଇଗଲି । ଭୋକ ଲାଗୁଥିଲା ପ୍ରଚଣ୍ଡ, ଡେରିରେ ଜାଣିଲି ।

ତା ପରେ – ବିଛଣାରେ । ମନରେ କିଛିଟା ଆନନ୍ଦ, କିଛିଟା ଅସ୍ଥିରତା । କାରଣ ଠିକ୍ ମୁଁ ଜାଣିପାରୁନି । ଫ୍ୟାନ୍ ସ୍ୱିଚ୍‌ଟା ଅନ୍ କଲି, କିନ୍ତୁ ଫ୍ୟାନ୍‌ର ବ୍ଲେଡ୍ ତିନିଟା କର୍‌ମର୍ ଶବ୍ଦ କରିବାରେ ଲାଗିଛନ୍ତି, ହେଲେ ପବନ ନାହିଁ । ରେଗୁଲେଟର୍‌କୁ ପାଞ୍ଚକୁ ମୋଡିଦେଲି, ଦେଖିବା କ'ଣ ହେଉଛି ! ଯାଃ,ଯେ ଆହୁରି ମାରାତ୍ମକ ଅବସ୍ଥା ! ଫ୍ୟାନ୍‌ଟା ପୁରା ବନ୍ଦ ହେଇଗଲା । ତେବେ କମେଇ ରେଗୁଲେଟର୍‌କୁ ଚାରିରେ ରଖିଲି, ପୁଣି ଫ୍ୟାନ୍ ଚାଲିଲା । ମନେ ମନେ ହସିଲି । ଝରକା କାଚ ସେ ପାଖରୁ ଫାଳେ ଆକାଶ ପରିଷ୍କାର ଦିଶୁଥାଏ । ଆଉ ତାରି ଭିତରେ ମୁଁ ଖୋଜୁଥାଏ ଭିତରେ ଭିତରେ ଅନୁଭବ କରୁଥିବା ଆନନ୍ଦର ଅର୍ଥ ଓ ଅସ୍ଥିରତାର କାରଣ ।

ପ୍ରକୃତରେ 'ଆନନ୍ଦ' କଣ ? ସୁଖ ଯାହା, ଆନନ୍ଦ କଣ ସେୟା ? ନା, ଖୁସି ଯାହା, ଆନନ୍ଦ ସେୟା ? ସୁଖ ବା ଆନନ୍ଦ – ମୋର ଯାହା ମନେ ହୁଏ – ଏକ ମାନସିକ ଅବସ୍ଥା । ଏହା ପରିସ୍ଥିତିକୁ ଅନେକଟା ନିୟନ୍ତ୍ରଣ କରେ । କିନ୍ତୁ, ଏହା ବି ସତ ଯେ ପରିସ୍ଥିତି ମାନସିକ ଅବସ୍ଥାକୁ ମଧ୍ୟ ନିୟନ୍ତ୍ରଣ କରେ । ଆହୁରି ତଳେଇ ଭାବିଲେ, ଏହା ଏକ ସର୍ତ୍ତହୀନ ମାନସିକ ଅବସ୍ଥା, ଯେପରିକି ଭୁବନେଶ୍ୱରରେ ଦୁଇଟା ଫ୍ଲାଟ୍ କିଣିପାରିଲେ ବା 'ଭାରତୀୟ ଜ୍ଞାନପୀଠ' ପୁରସ୍କାର ପାଇପାରିଲେ ମୁଁ ସୁଖୀ ହେବି । ଏଭଳି ସର୍ତ୍ତକୁ ନେଇ ମଣିଷ ସୁଖୀ ହୋଇପାରେ ନା ।

ଅନ୍ୟପକ୍ଷରେ, କୌଣସି ଏଲିଟ୍ କ୍ଲବ୍‌ର ଶୀତତାପ ନିୟନ୍ତ୍ରିତ ବାର୍‌ରେ 'ଶିଭାଜ୍ ରିଗାଲ୍' ସ୍କଚ୍ ହ୍ୱିସ୍କି ତିନି-ଚାରି ପେଗ୍ ହେଇଗଲେ, ବା ରାଜସ୍ଥାନ ଲଟେରୀରୁ ପ୍ରଥମ

ପୁରସ୍କାର ବାଇଶି ଲକ୍ଷ ଟଙ୍କା ପାଇଗଲେ, ଆନନ୍ଦ ମିଳିଗଲା... ମୁଁ ଆନନ୍ଦିତ ହୋଇଗଲି । 'ମନ୍‌ମେଁ ଆନନ୍ଦ୍, ତନ୍‌ମେଁ ଆନନ୍ଦ୍...' ତନ୍‌ମେଁ ଆନନ୍ଦ୍, (ତେଣୁ) ମନ୍‌ମେଁ ଆନନ୍ଦ୍ ? କେଉଁଟା ଆଗ, କେଉଁଟା ପଛ ? ଆଗ ଅଣ୍ଡା, ନା କୁକୁଡ଼ା ? ନିଜର ଇନ୍ଦ୍ରିୟଜନିତ ଉତ୍ତେଜନାକୁ ନେଇ ଯେଉଁ ଆନନ୍ଦ ଉପଲବ୍ଧ, ତାହା ନିଶ୍ଚୟ ସୁଖଠାରୁ ଭିନ୍ନ, ତାହା କ୍ଷଣସ୍ଥାୟୀ, ସର୍ତ୍ତମୂଳକ, ସୁଖ ନୁହେଁ, ଯେପରିକି ପ୍ରିନ୍‌ସେସ୍‌ଠାରୁ ଶିଶିର୍ ପାଇଲା, ରୀତାଠୁଁ ମୁଁ ପାଇଲି । ମନର ଅନେକ କୋଠାରି ଭିତରୁ କୌଣସି ଗୋଟିଏ କୋଠରିରେ ବତି ଜଳିଲେ ସମସ୍ତ ମନଟା କ'ଣ ଆଲୋକିତ ହୋଇଯାଏ ? ଆକାଶ ଉଦୁଉଦିଆ ଖରାବେଳେ ମିନିଟ୍ କେଇଟା ପାଇଁ ମେଘ ଓ ପବନ ଆଣି ଏକ ଶୀତଳ ପରିବେଶ ସୃଷ୍ଟି କରି କେତେ ସମୟ ଶୀତଳ ରହେ ?

ସେମିତି ଆନନ୍ଦ ଯଦି ମଣିଷର ଇନ୍ଦ୍ରିୟ ଓ ଉତ୍ତେଜନାରୁ ଜନ୍ମ ନେଇଥାଏ, ତାହେଲେ ଏହା ଅଂଶବିଶେଷର, ମୁହୂର୍ତ୍ତମାନଙ୍କର ହୋଇରହେ । ଏହା କ୍ଷଣସ୍ଥାୟୀ, ସୁଖ ପାଇଁ ରାସ୍ତା ଦେଖେଇପାରେ, କିନ୍ତୁ ସୁଖ ଦେଇପାରେନା । ଇନ୍ଦ୍ରିୟ, ଉତ୍ତେଜନା ଓ ସର୍ତ୍ତରୁ ମୁକ୍ତ ଆନନ୍ଦ କେବଳ, ସୁଖ ଦେଇପାରେ, ମଣିଷକୁ ପାର୍ଥିବ ଆଲୋଡ଼ନ ଓ ପରିସୀମାର ଉର୍ଦ୍ଧ୍ୱକୁ ନେଇ, ସ୍ୱର୍ଗରେ ନୁହେଁ, ଏକ ଭିନ୍ନ ପୃଥିବୀରେ, ଏକ ଭିନ୍ନ ଚେତନା ଦେଇପାରେ । ସିଦ୍ଧାର୍ଥ ଠିକ୍ ସେହି ଆନନ୍ଦକୁ ଖୋଜି ଖୋଜି ରାଜପ୍ରାସାଦରୁ କମଳା ପର୍ଯ୍ୟନ୍ତ, ସଂସାର ଠାରୁ ନିର୍ବାଣ ପର୍ଯ୍ୟନ୍ତ ଆଗେଇ ଯାଇଥିଲେ ।

ଝରକାବାଟେ ହାଲୁକାଏ ପବନ ଭିତରକୁ ଆସିଲାରୁ ମୁଁ ଫ୍ୟାନ୍‌ଟା ବନ୍ଦ କରିଦେଲି । ବର୍ଷାଟିକେ ଆରମ୍ଭ ହୋଇଗଲାଣି ବାହାରେ । ନିଦ ମାଡ଼ିଲାଣି... ଆଖି ପତା ପଡ଼ି ପଡ଼ି ଯାଉଛି... ଝରକା ସେ ପାଖରେ ଅନ୍ଧାର ଭିତରେ ମୁଁ । ଅନ୍ଧାର ଯେମିତି ମୋର ମା', ଯାହାକୁ ଛୋଟବେଳେ ମୁଁ ହଜେଇ ବସିଥିଲି । କଳା ଲମ୍ୱା ବାଳ... ମୋ ବୟସ କେତେ କମି ଯାଇଛି ! ମୁଁ ପୁଣି ମା' କୋଳରେ ଝୁଲୁଥିବା, କାଖହେବା ଛୋଟ ପିଲାଟିଏ ହୋଇଯାଇଛି । ପୁଟୁକା ପୁଟୁକା ଗାଲ, ନାଲିଆ ଓଠ, ମୁଣ୍ଡରେ କୁଞ୍ଚୁକୁଞ୍ଚୁ ବାଳ – ବେଶୀ ନୁହଁ, ତେବେ ଅତି କମ୍ ବି ନୁହଁ... ଆଖିରେ କେମିତି ଗୋଟିଏ ସବୁ-ବୁଝିଲା-ଭଳିଆ ହସ... ମା'ର ଗାଲକୁ ମୋ କୁନି କୁନି ହାତରେ ମୁଁ ହଲୋଉଛି ଏ ପାଖ ସେ ପାଖ... ମା'ର ହାରଟାକୁ କାମୁଡ଼ିବାରେ ଲାଗିଛି ।

ଅଦ୍ଭୁତ ଏକ ପୃଥିବୀରେ ମୁଁ । ଅନ୍ଧକାର ଚାରିଆଡ଼େ । କିନ୍ତୁ ସବୁ ଯେମିତି ଠିକ୍ ଠାକ୍ ଚାଲିଛି । ମଣିଷ ତ କେଉଁଠି ମୁଁ ଦେଖୁନି ? ଆଲୁଅ ଦେଖୁନି, ଅଥଚ, କିଛି

ଅସୁବିଧା ହେଉନି । ମା' କୋଳରୁ କ'ଣ ମୁଁ ତଳକୁ ଓହ୍ଲେଇବିନି ? ଆଲୁଅ ଖୋଜିବିନି ? ଖୋଜିବିନି ଅନ୍ୟ ମଣିଷଙ୍କୁ ?

ଆଶ୍ଚର୍ଯ୍ୟ ! ମୁଁ ବଡ଼ ହୋଇ ଯାଉଛି, ମା' ଛୋଟ ହୋଇ ଯାଉଛି । ମା' ଜାଗାରେ ମୁଁ ଦେଖୁଛି ଝିଅଟିଏ । ମୁଁ ବଡ଼ ହୋଇ ଗଲିଣି, କିନ୍ତୁ ସେ ଝିଅଟି ମୋତେ ସେମିତି ଜାବୁଡ଼ି ଧରିଛି, ମୁଁ ଛାଟିପିଟି ହୋଇ ମୋ ମା'କୁ ଖୋଜୁଛି । ପାଟି କଲିଣି... ଚିତ୍କାର ଯେମିତି ରଙ୍ଗମଞ୍ଚରେ କରନ୍ତି, ମୁଁ ସେମିତି କିଛି ଆରମ୍ଭ କରିଦେଲିଣି । ତା ପରେ ? ଏକ ବିରାଟ ପଡ଼ିଆ । ସେଠି ସାଧାରଣ ସଭା । ପ୍ରାୟ ତିନି-ଚାରି ହଜାର ଛାତ୍ର ଓ ଜନତା । ମୁଁ ଭାଷଣ ଦେଉଛି ଦୁର୍ନୀତି ବିରୁଦ୍ଧରେ, ସମାଜ ଓ ରାଜନୀତିରେ ଚାଲିଥିବା ଶୋଷଣ ଓ ଅନ୍ୟାୟ ବିରୁଦ୍ଧରେ । ଗୁଡ଼ାଏ ସମୟ କହିଲି । ଅନ୍ୟମାନେ ବି କହିଲେ – ଛାତ୍ରନେତା, ରାଜନେତା, ସାମ୍ବାଦିକ । ଘନ ଘନ କରତାଳି ହେଲା । ତା ପରେ... ?

ଲମ୍ବା ନଈଟିଏ କେଉଁଠୁ ଆସିଗଲା । କୂଳେ କୂଳେ ମୁଁ ଚାଲିଛି ଏକା । ପିନ୍ଧିଛି ପ୍ୟାଣ୍ଟ୍‌ଟିଏ, ଖାଲିଦେହ, ବେକରେ ସୁନାଚେନ୍ । ଆଶ୍ଚର୍ଯ୍ୟ, ମୁଁ ତ କେବେ ଚେନ୍ ପିନ୍ଧିନି, ଏଇଟା କୁଆଡୁ ଆସିଲା, କିଏ ପକେଇଲା ମୋ ବେକରେ ?

ସ୍ୱଚ୍ଛ ବାଲି ଓ ନଈର ପାଣି ଦେଖି ମୁଁ ଆସ୍ତେ ନଈ ଭିତରେ ପଶିଲି । କିଛି ବାଟ ଗଲାପରେ ଜଣେ ଲଙ୍ଗଳା ବାବାଜି, ପାଖରେ ଦିଟା କୁକୁର, ତା' ପଛରେ ସମୀକ୍ଷା ଓ ଦୀପଙ୍କର । ଏମାନେ କୁଆଡୁ ଆସିଲେ ? ପଛକୁ ଅନେଇଲି ଅନ୍ଧାର ହିଁ ଅନ୍ଧାର... ଆଉ ବାବାଜିଙ୍କ ପଛରେ ଆଲୁଅ, ପରିଚିତ ପୃଥିବୀ ଯେମିତି ଆସ୍ତେ ଆସ୍ତେ ଖୋଲିଯାଉଛି । ଆଶ୍ଚର୍ଯ୍ୟର କଥା, ଏତେ ବାଟ ଆସିଥିବା ଅନ୍ଧାର ଭିତରେ ମୋତେ ସବୁ ଦିଶିଲା ପରି ଲାଗିଲା, କୌଣସି ଜାଗାରେ ତ ମୁଁ ଝୁଣ୍ଟିପଡ଼ିନି ବା ପଛକୁ ଫେରି ଚାହିଁନି... କିନ୍ତୁ ଏବେ ପରିଚିତ, ଆଲୋକିତ ପୃଥିବୀ ଆଖି ଆଗରେ, ଅଥଚ ମୁଁ କିଛି ଦେଖିପାରୁନି... ଖାଲି ବାବାଜି, କୁକୁର, ସମୀକ୍ଷା ଆଉ ଦୀପଙ୍କର । ତା ପରେ ସବୁ ଅନ୍ଧାର – ନଈ କେଉଁ ଆଡ଼େ, ରାସ୍ତା... ଖାଲ, ଢିପ – କିଛି ଦେଖି ପାରୁନି ।

ହଠାତ୍ ମୁଁ ଆଗରେ ଆଲୁଅକୁ ଛାଡ଼ି ପଛମୁହାଁ ହୋଇ ଅନ୍ଧାର ଭିତରେ ଦଉଡ଼ିବାକୁ ଆରମ୍ଭ କରିଦେଇଛି । ସମୀକ୍ଷା, ଦୀପଙ୍କର କେହି ମୋତେ ଚିହ୍ନିଲେନି, ଡାକିଲେନି । କୁକୁର ଦିଟା ଭୁକିଲେନି, ଏପରିକି ଦ୍ୱିତୀୟ ଥର ମୋ ଆଡ଼କୁ ଅନେଇଲେନି । ବାବାଜିଙ୍କ ମୁହଁରେ ମୋତେ ଜାଣିବାର ବା ବୁଝିବାର ଆଗ୍ରହ ଟିକେ

ହେଲେ ବି ଲକ୍ଷ୍ୟ କଲି ନାହିଁ । ମୁଁ ଧାଇଁବାରେ ଲାଗିଛି, ଯେମିତି ଅତି ପରିଚିତ ଟ୍ରାକ୍‌ରେ ପି.ଟି.ଉଷା ଧାଉଁଛି, କୌଣସି ମେଡାଲ୍ ପାଇଁ ନୁହଁ, ଧାଇଁବା ବ୍ୟତୀତ ଆଉ ଯେପରି ମୁଁ କିଛି ଜାଣିନି, ଆଉ କିଛି ମୁଁ ଶିଖିନି ।

ଭାବିଥିଲି ବାଟ ସରିଯିବ, ମୁଁ କ୍ଲାନ୍ତ ହୋଇଯିବି । ନା, ସେମିତି କିଛି ହେଲାନି । ରାସ୍ତାର ଶେଷ ନାହିଁ, ମୋର ଧାଇଁବାରେ ବିରାମ ନାହିଁ । ହଠାତ୍ ମୁଁ ଗୋଟିଏ ଘର ଭିତରେ ପଶିଯାଇଛି । ଛୋଟ ଘରଟିଏ । କେହି ଥିଲାପରି ଲାଗୁନି । ବଡ଼ ହଲ୍‌ଟିଏ । ଡାଇନିଂ ସ୍ପେଶ୍‌ରେ କ୍ୟାଣ୍ଡଲ୍ ଦୁଇଟା ଜଳୁଛି । ଟେବ୍‌ଲ୍‌ଟିଏ ମଝିରେ, ଦି ପାଖରେ ଦିଟା ଚଉକି । କାନ୍ଥରେ ପିକାଶୋଙ୍କ 'ଉଇପିଙ୍ଗ୍ ଉମ୍ୟାନ୍' – ଡୋରା, ପରିଷ୍କାର ମୁଁ ଦେଖିପାରୁଛି... କେଉଁଠାରୁ ଫ୍ରାଞ୍ଜ୍ ସୁବର୍ଟ୍‌ଙ୍କ 'ଅନଫିନିସ୍‌ଡ୍' ସିଂଫୋନିର ସ୍ୱର ଶୁଭୁଛି । ସୁନ୍ଦର, ରମଣୀୟ ପରିବେଶରେ ମୁଁ ଅଟକି ଯାଇଛି । ପାଖରୁ ଦେଖିଲି ଘରଟି ଅଦ୍ଭୁତ । ଏଠି ଦୁଆର, ଝରକା କିଛି ନାହିଁ, ଅଥଚ ଲାଗୁଛି, ସବୁ ଯେମିତି ଅଛି । ବେଡ୍‌ରୁମ୍, ଷ୍ଟଡିରୁମ୍, ଲନ୍ – ସବୁ ଅଛି, କିନ୍ତୁ ମଣିଷ ନାହାନ୍ତି ।

କ'ଣ ମୁଁ ଦେଖୁଛି ?

କେଉଁଠି ମୁଁ ଅଛି ? କିଛି ଶବ୍ଦ ଶୁଭିଲା, ମୁଁ ଲନ୍ ପାଖକୁ ମାଡିଗଲି । ସିମେଣ୍ଟ ବେଞ୍ଚରେ ଦିଜଣ ବସିଛନ୍ତି – ପାଖାପାଖି । ପୁରୁଷ ସ୍ତ୍ରୀ ଦୁଇଜଣ ନା ପୁଅ ଝିଅ ଦିଜଣ, ଜାଣି ହେଉନି । ପାଖରେ ଛିଡ଼ା ହେଲି । ସେମାନେ କିଛି କହିଲେ ନାହିଁ । ମୋତେ ବୋଧେ ଦେଖି ପାରୁନାହାନ୍ତି । ମୁଁ ଆହୁରି ପାଖକୁ ଗଲି । କିଛି ଫଳ ହେଲାନି । ଆଗଭଳି ସେମାନେ କ'ଣ ସବୁ କହିଚାଲିଛନ୍ତି... ମୁଁ ସେମାନଙ୍କର ସ୍ୱର ଶୁଣିପାରୁଛି । କିନ୍ତୁ ବୁଝିପାରୁନି କିଛି । ବିଜୁଳି ମାରିଲା ହଠାତ୍, ଝିଅ ପିଲାଟିର ମୁହଁ ଦିଶିଗଲା... ଆରେ ଯେତ, ଝିଅ ନୁହେଁ, ବେଶ୍ ବୟସ୍କା ଭଦ୍ରମହିଳା ଜଣେ... ବୟସ ପଚାଶ ଉପରେ ହେବ ନିଶ୍ଚେ, କିନ୍ତୁ ଦିଶୁନାହାନ୍ତି ସେମିତି । ମୋର ମନେ ହେଲା ସମୀକ୍ଷା ବୁଢ଼ୀ ହୋଇଗଲେ ଏମିତି ଦିଶିବ । ପୁଣି ଥରେ ବିଜୁଳି ମାରିଲା, ପୁଅପିଲାଟିକୁ ଦେଖି ପାରିଲି ଏଥର – ଏକଦମ୍ ଦୀପଙ୍କର ପରି ଦେଖିବାକୁ, ଠିକ୍ ପଚାଶ ବେଳକୁ ଦୀପଙ୍କର ଯେମିତି ଦେଖାଯିବ । ତା' ହେଲେ ଦି ଜଣ ବାହା ହୋଇଯାଇଛନ୍ତି !

କେମିତି ବାହା ହୋଇଗଲେ ମୋତେ ନ ଜଣେଇ ? ଏତେ ଅନ୍ତରଂଗ ଆମେ ଥିଲୁ– ତିନିଜଣଯାକ ? ନକ୍ସାଲପନ୍ଥୀ କାର୍ଯ୍ୟକ୍ରମ ସେମାନଙ୍କୁ ପରସ୍ପର ନିକଟକୁ ଟାଣିଆଣିଛି ମୁଁ ବୁଝି ପାରୁଛି, କିନ୍ତୁ ମୋତେ ନ ଜଣେଇ... ?

ବର୍ଷା ଜବରଦସ୍ତ ଆରମ୍ଭ ହୋଇଗଲା । ଆଶ୍ଚର୍ଯ୍ୟର କଥା – ସେ ଦୁହେଁ ଖୋଲା ଲନ୍‌ର ସିମେଣ୍ଟ ବେଞ୍ଚ ଛାଡ଼ି ଘର ଭିତରକୁ ଯାଉ ନାହାନ୍ତି । ମୁଁ ଏ ଭିତରେ ଷ୍ଟଡିରୁମ୍ ଭିତରକୁ ପଶିଗଲିଣି । କିଛି ବହି ଉପରେ ଆଖି ପଡ଼ିଗଲା । କୁଆଡୁ ଆଲୁଅ ଆସୁଛି ଜାଣି ପାରୁନି । ବାହାରେ ଭୀଷଣ ବର୍ଷାର ଆବାଜ୍.... ଗୋଟେ ବହି ପଛରେ ପରିଚିତ ମୁହଁଟି... ପାଖକୁ ଆଣିଲାରୁ ଦେଖିଲି ଜଣେ ସୁନ୍ଦରୀ ଗ୍ରୀକ୍ ମହିଳାଙ୍କ ମୁହଁ... ଠିକ୍ ମନେ ପଡୁନି କେଉଁଠି ଦେଖିଛି । ହଁ ମନେ ପଡ଼ିଗଲା... ଆରିୟାନା, ଆରିୟାନା କ୍ଷାସିନୋପୁଲସ୍ । ଶାନ୍ତିନିକେତନ ଷ୍ଟଡିଟୁର୍‌ରେ ଆସିଥିଲା, ଆମ ୟୁନିୟନ୍‌ର ଗେଷ୍ଟ ହୋଇଥିଲା । ଆଜି ସେ ଲେଖିକା, ('ପିକାଶୋ – କ୍ରିଏଟର୍ ଯାଣ୍ଡ୍ ଡେଷ୍ଟ୍ରୟର୍') ବିଂଶ ଶତାବ୍ଦୀର କିମ୍ବଦନ୍ତୀ କଳାକାର ପିକାଶୋଙ୍କ ବିଶ୍ୱବିଖ୍ୟାତ ବାୟୋଗ୍ରାଫର୍ । ସ୍ମୃତିରେ ଯୋଡ଼ି ହୋଇଗଲା ସେଦିନ ଶାନ୍ତିନିକେତନର ସନ୍ଧ୍ୟା, ଶିଳ୍ପୀ ରାମକିଙ୍କର୍‌ଙ୍କଠାରୁ ଫେରିଲାବେଳେ ଆରିୟାନା ସହିତ ବିତିଯାଇଥିବା କେତୋଟି ନିବିଡ଼, ଅନ୍ତରଂଗ ମୁହୂର୍ତ୍ତ ।

ଏମିତି କେତେକ ମୁହୂର୍ତ୍ତ ଯୋଡ଼ି ହୋଇ ସ୍ମୃତି ହୁଅନ୍ତି, ଆଉ କେତେକ ମୁହୂର୍ତ୍ତ ଟଣା ଓଟରା ହୋଇ ସ୍ମୃତିକୁ ଭାଙ୍ଗିପକାନ୍ତି । ମୁହୂର୍ତ୍ତ କେତୋଟିକୁ ନେଇ ପୁଣି ଜୀବନର ପରିଚୟ ଓ ସଂଜ୍ଞା ତିଆରି ହୁଏ, ତିଆରି ହୁଏ ମଣିଷ ମଣିଷ ଭିତରେ, ପୁରୁଷ ନାରୀ ଭିତରେ, ଅତୀତ ଓ ଭବିଷ୍ୟତ ଭିତରେ ସମ୍ପର୍କ । ସ୍ମୃତି ସେ ସମ୍ପର୍କକୁ ବୈଧତା ଦିଏ, ମଜବୁତ୍ କରେ । ସ୍ମୃତିର ସହରରେ ମଣିଷ ବାଟବଣା ହୁଏନା, ସମ୍ପର୍କର ଦ୍ୱାହି ଦେଇ ଚଲାବାଟରୁ କେବେ ପଛକୁ ସେ ଫେରିଆସେନା । ବେଳେବେଳେ ମୁହୂର୍ତ୍ତଟିର ଅନୁଭବ ସାରା ଜୀବନର ସମ୍ପତ୍ତି ହୋଇଯାଏ, ସବୁ ଦୁଃଖ, ସବୁ ସମସ୍ୟାଘେରରୁ ମଣିଷକୁ ଉଦ୍ଧାର କରି ଜୀବନରେ ଆଗକୁ ମାଡ଼ିଯିବାପାଇଁ ପ୍ରେରଣା ଦିଏ । ସ୍ମୃତିବିନା ଜୀବନ ବଞ୍ଚି ହୁଏନା । ସମ୍ପର୍କ ବିନା ଜୀବନକୁ ବୁଝି ହୁଏନା ।

ମୁଁ ଏ ଭିତରେ ଫେରି ଆସିଛି ଅନ୍ଧାର ଭିତରକୁ... ମା' ପାଖକୁ । କିନ୍ତୁ ମା' କାହିଁ ? ଅନ୍ଧାର ଭିତରେ କ'ଣ ସେ ହଜି ଯାଇଛି ? ବର୍ଷା ପ୍ରାୟ ବନ୍ଦ ହୋଇ ଗଲାଣି । ବିଛଣାରେ ମା'କୁ ଖୋଜୁ ଖୋଜୁ ମୋ ହାତ ସୁଇଚ୍ ଉପରେ... ଝରକା ସେ ପାଖରେ ରାତି ପାହି ସକାଳ ହେଲାଣି । ତା'ହେଲେ ? ରୋମାଣ୍ଟିକ୍ କବି ଜନ୍ କୀଟ୍ସଙ୍କ ନାଇଟିଙ୍ଗେଲ୍ ଓଡ୍‌ର ଧାଡ଼ିଟି ମନେ ପଡ଼ିଗଲା: 'ୱାଜ୍ ଇଟ୍ ଏ ଭିଜନ୍, ଅର୍ ଏ ୱେକିଂ ଡ୍ରିମ୍ ?'

କେଉଁଟା ମୁଁ ? – ରୁମ୍ ଭିତରେ ଆନନ୍ଦରେ ଶୋଇଥିବା କଲେଜଛାତ୍ରଟି, ନା ଝରକା ବାହାରେ ଘୁରି ବୁଲୁଥିବା ଅସ୍ଥିର ମଣିଷଟି ? ଦୁହେଁ ଦୁଇଜଣ, ନା ଜଣେ ?

## ୪୫

ଏ ଭିତରେ ପ୍ରଦର୍ଶନୀ ଫୁଟବଲ୍ ମ୍ୟାଚ୍‌ଟି ହୋଇଯାଇଛି । ରେକର୍ଡ଼ ସୃଷ୍ଟି ହେଲା – ଦେଶର ପ୍ରଖ୍ୟାତ ପ୍ରତିଦ୍ୱନ୍ଦୀ ଭାବେ ପରିଚିତ ମୋହନ୍‌ବାଗାନ୍ ଓ ଇଷ୍ଟ ବେଙ୍ଗଲ୍ ଫୁଟବଲ୍ ଟିମ୍ ଭିତରେ ଖେଳ ହେଲା ପ୍ରଥମ ଥର ପାଇଁ କଲିକତା ବାହାରେ, ଶାନ୍ତିନିକେତନ ପଡ଼ିଆରେ । ସେଦିନ କଲିକତା ଆଡୁ, ମାଲ୍‌ଦା/ଦାର୍ଜିଲିଂ ଆଡୁ ପ୍ରାୟ ସବୁ ଗାଡ଼ିରେ ହଜାର ହଜାର ସଂଖ୍ୟାରେ ଲୋକ ମାଡ଼ିଆସିଲେ ଶାନ୍ତିନିକେତନ । ଷ୍ଟେଟ୍ ହୋମ୍ ଡିପାର୍ଟ୍‌ମେଣ୍ଟ, ବିଶେଷତଃ ସିଉଡ଼ି ଏସ୍.ପି.ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବେଶ୍ ଶୃଙ୍ଖଳାର ସହିତ ଘଟଣାଟି ଘଟିଗଲା । ଟିକେଟ୍‌ରୁ ଆଦାୟ ଟଙ୍କା – ସବୁ ଖର୍ଚ୍ଚ ବାବଦ ଗଲାପରେ – ରହିଲା ତିରିଶ ହଜାର ଉପରେ । ନାହିଁ ନଥିବା ବନ୍ୟା ଏଥର ଉତ୍ତର ବଂଗ ଓ ବାଲେଶ୍ୱରରେ ହୋଇଥିଲା । ସେଥିପାଇଁ ଓଡ଼ିଶା ଓ ପଶ୍ଚିମବଙ୍ଗ ରିଲିଫ୍ ପାଣ୍ଠିକୁ କୋଡ଼ିଏ ହଜାର ଆମ ୟୁନିୟନ୍ ତରଫରୁ ଦେଲାପରେ ବାକି ବାରହଜାର ଖଣ୍ଡେ ବଜେଟ୍‌ରେ ଥିବା ନିଅଣ୍ଟ ଆଡଜଷ୍ଟ କରି ମୁଁ ଏକ ଦୀର୍ଘ ନିଶ୍ୱାସ ନେଲି ।

ଇଏ ବି ଏକ ଅନୁଭୂତି ! ଶିଖିବାର କଥା । ଅଙ୍ଗେ ନିଭେଇବାର କଥା । ବୋଧହୁଏ ସବୁ ସମସ୍ୟା ଏମିତି – ବାହାରେ ସିନା ଅଖାଡୁଆ ପରିସ୍ଥିତି ସୃଷ୍ଟି କରେ, ବ୍ୟସ୍ତକରେ, କିନ୍ତୁ ଗୋପନରେ ମଣିଷ ମନଭିତରେ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଶକ୍ତି ସୃଷ୍ଟି କରେ, ଯାହାକି ପରେ ପରେ ସେହି ମଣିଷର ବଞ୍ଚିବାର ଶୈଳୀ ହୋଇଯାଏ । ସମସ୍ୟା ନ ଆସିଲେ, ସେ' ଶକ୍ତିକୁ ଚିହ୍ନିବା ବା ବ୍ୟବହାର କରିବା ସମ୍ଭବ ନୁହେଁ । ନ ହେଲେ କଣ 'ୟୁଜେସ୍ ଅଫ୍ ଆଡ୍‌ଭର୍ସିଟି'କୁ 'ସୁଇଟ୍' କହିଥାଆନ୍ତେ ସେକ୍ସପିୟର୍ ?

ସେଦିନ ଟେଲିଗ୍ରାମ୍‌ଟେ ଆସିଲା । ପ୍ରଥମେ ବିଶ୍ୱାସ ହେଲାନି । ମୋ' ପାଖକୁ ଚିଠି ଖଣ୍ଡେ ବି ଆସେନା । ପିଲାଦିନେ ବହୁତ ଆସୁଥିଲା – ଡେନ୍‌ମାର୍କରୁ,ଟୋକ୍ୟୋରୁ, ବର୍ଲିନ୍‌ରୁ, ବାଙ୍ଗାଲୋରରୁ । ମୋ'ର ଚାରିଜଣ ପତ୍ରବନ୍ଧୁ ଥିଲେ । ମନେପଡୁଛି, ପୋଷ୍ଟ ଅଫିସ୍‌ରେ ପୋଷ୍ଟମାଷ୍ଟର୍‌ଙ୍କଠାରୁ ଆରମ୍ଭ କରି ପୋଷ୍ଟମ୍ୟାନ୍ ପର୍ଯ୍ୟନ୍ତ ସମସ୍ତଙ୍କର ଫରେନ୍ ଚିଠି ଦେଖିବାକୁ, ଚିଠି ପଢ଼ିବାକୁ କେତେ ଆଗ୍ରହ ! ଓଡ଼ିଶାର ପାହାଡ଼ୀ ଛୋଟ ସହରଟିକୁ ଦରିଆ ସେପାରିରୁ ଚିଠି ଖଣ୍ଡେ ଆସିବା କେଡ଼େ ବଡ଼ ଘଟଣା ! ଜାପାନ୍‌ର କିତାଟାମାଗୁନ୍ ସହରରୁ ମାୟୁମୀ ହାସେଗାଓ୍ୱା ଫୁଲପକା କସ୍ମେଟିକ୍ କାଗଜରେ ପୃଷ୍ଠାପରେ ପୃଷ୍ଠା ଚିଠି ଦେଉଥିଲା – ତାର ସାଙ୍ଗଙ୍କ ବିଷୟରେ, ପରିବାର ବିଷୟରେ; କେତେ ଜଣ ସାଙ୍ଗଙ୍କ ସହିତ ଉଠେଇଥିବା ଫଟୋ ପଠେଇ ଲେଖିଥିଲା ତାକୁ

ଚିହ୍ନିବାପାଇଁ । ମୁଁ ଚିହ୍ନିପାରିଲିନି । ବାପା ଚିହ୍ନିପାରିଲେନି, କୋଡ଼ିଏ ବର୍ଷର ପୋଲିସ୍‌ଚାକିରି ଅଭିଜ୍ଞତା ସତ୍ତ୍ୱେ ! ସୁପ୍ରିୟ, ଅବ୍‌ଦୁଲ୍ – କେହି ଚିହ୍ନିପାରିଲେନି । ଜାପାନୀ ଝିଅମାନେ ସମସ୍ତେ ଗୋଟେଭଳିଆ କାହିଁକି ଦେଖିବାକୁ ? ଡେନମାର୍କରୁ ସାଙ୍ଗଟି ଟେଲିଭିଜନ୍‌ରେ କ'ଣ ଦେଖିଲା ସେ ସବୁ ଲେଖି ଥିଲା । ଆମ ଦେଶକୁ ଟେଲିଭିଜନ୍ ଏ ପର୍ଯ୍ୟନ୍ତ ଆସିନି । ମୁଁ ଖାଲି ୱାଡ୍‌ସ୍‌ୱାର୍ଥଙ୍କ କହିଲାପରି 'ମାଇଣ୍ଡସ୍ ଆଇ' ବା କଳ୍ପନାଚକ୍ଷୁରେ ହିଁ ଯାହା ଦେଖୁଥାଏ !

ତେବେ ଟେଲିଗ୍ରାମ୍ କଲା କିଏ ଦେଖିଲା ବେଳକୁ ଭାରି ହସ ଲାଗିଲା । କରିଛି ସୂର୍ଯ୍ୟ, ବରହମ୍‌ପୁର୍‌ରୁ । କଲିକତା ଆସୁଛି, ଲେଖିଛି ଯିବାକୁ । ହସ ଲାଗିଲା ଏଇଥିପାଇଁ – କେଉଁଠି ରହିବ, କେଉଁ ଗାଡ଼ିରେ ଆସିବ, ସେ ଲେଖିନି । କଲିକତା ଏଡ଼େ ବଡ଼ ସହର, ମୁଁ ତାକୁ ପାଇବି ବା କୋଉଠି ? ହୁଏତ 'ଉତ୍କଳଭବନ'ରେ ରହିପାରେ । ଓଡ଼ିଶାରୁ ଯିଏ ସବୁ ଆସନ୍ତି, ଭୁବନେଶ୍ୱର ସେକ୍ରେଟେରିଏଟ୍‌ରୁ ମନ୍ତ୍ରୀ ବା କୌଣସି ଆଇ.ଏ.ଏସ୍. ଅଫିସରଙ୍କ ତରଫରୁ ବୁକିଂ କରି ସେଇଠି ରହନ୍ତି । ତେବେ ମୁଁ ଶାନ୍ତିନିକେତନରେ, କଲିକତାରୁ ଦେଢ଼ଶ' କିଲୋମିଟର ଦୂରରେ, ଏମିତି କ'ଣ ଯାଇ ହୁଏ ? ସୂର୍ଯ୍ୟ ବୋଧେ ଭାବିନେଇଛି ଶାନ୍ତିନିକେତନ କଲିକତାରେ । ଅନେକଙ୍କ ଧାରଣା ସେୟା । 'ରବୀନ୍ଦ୍ରଭାରତୀ' ୟୁନିଭର୍ସିଟି ହୋଇ ଆହୁରି ଗୋଳମାଳିଆ ପରିସ୍ଥିତି ହୋଇଯାଇଛି । ଦୁଇଟାଯାକ ୟୁନିଭର୍ସିଟି – 'ବିଶ୍ୱଭାରତୀ' ଓ 'ରବୀନ୍ଦ୍ରଭାରତୀ' ଏକା ଲୋକ ନାଁକୁ ନେଇ ! ବଡ଼ ଅସୁବିଧା ହେଲା, ଯେ କ'ଣ '[illegible]ବିହାର' ବା 'ଭଞ୍ଜବିହାର' ହେଇଛି ଯେ ମୁଁ ଧଡ଼୍‌କରି ମାଡ଼ିଯିବି ଓ ତା' ସହିତ ଦେଖା ହୋଇଯିବ ଘଣ୍ଟା କେତେଟାରେ ?

ପୁଣି ହସ ମାଡ଼ିଲା । ଗୋବିନ୍ଦଟା ପାଖରେ ଛିଡ଼ା ହୋଇ ହସୁଛି । ଖୋଲା ପେଟତଳେ ସବୁଜ ଲୁଙ୍ଗିଟା ଡବଲ୍ ଫୋଲ୍‌ଡ୍ ହୋଇ ସୁନ୍ଦର ଲ୍ୟାଣ୍ଡସ୍କେପ୍ ସୃଷ୍ଟି କରୁଥାଏ । ଟେଲିଗ୍ରାମ୍‌ଟା ବଢ଼େଇଦେଇ ସିଏ ସେମିତି ଛିଡ଼ା ହୋଇଛି । ମୁଁ ହସିବା ଦେଖି ସିଏ ବି ଡ୍ୟୁଟି କଲା ଭଳି ହସି ପକାଉଛି । ଗୋବିନ୍ଦକୁ ହସିବା ଦେଖିଲେ ମୁଁ ଆହୁରି ହସେ । କିଛି ନ ବୁଝି ଗୋବିନ୍ଦ ହସେ । ସାରା ଶରୀର ତା'ର ଦୋହଲିଯାଏ । ଖୋଲା ହସ । ଏମିତି ହସ ସହଜରେ ଆସେନା, ଦେଖାଯାଏନା । ଏକ ଆବଦ୍ଧ, ନିୟନ୍ତ୍ରିତ ଜୀବନରେ ଜଣେ ଏମିତି ଯଦି ଖୋଲା ହସ ହସିପାରେ, କିଛି ନବୁଝି, ନଜାଣି ଆନନ୍ଦ ପାଇପାରେ ଓ ଅନ୍ୟକୁ ଦେଇପାରେ, ତାହା ହେଲେ ମୁଁ ଭାବେ ମୋର ସୀମିତ, ଆବଦ୍ଧ ଜୀବନ ହିଁ ଦରକାର , ଗୁଡ଼ାଏ ବୁଝିବାର, ଜାଣିବାର ଆବଶ୍ୟକତା ନାହିଁ ।

ବିହାରର କେଉଁ ଗାଆଁରୁ ଆସି କେତେ ବର୍ଷ ଏଠି କିଚେନ୍‌ରେ ସେ କାମ କରୁଛି, ମୁଁ ମନେ ରଖିବାକୁ ଚାହେଁନା । ସ୍କୁଲରେ ପଢ଼ିଲାବେଳେ ମୋର ଆଦର୍ଶ ଥିଲେ ସିଦ୍ଧାର୍ଥ (ବୁଦ୍ଧ), ଆଜି ମୁଁ ଗୋବିନ୍ଦ ହେବାକୁ ଚାହୁଁଛି ।

ସୂର୍ଯ୍ୟ ତା' ହେଲେ କଲିକତା ଆସୁଛି ! କାହିଁକି ? ପଲିଟିକ୍‌ସ୍‌ରେ ପଶିଛି, ଜାଣିଛି । କଲେଜରେ ସାଙ୍ଗ ହୋଇ ସଭାସମିତି କରୁଥିଲୁ । ଦୁର୍ନୀତି ବିରୁଦ୍ଧରେ କ୍ରିୟାନୁଷ୍ଠାନ କମିଟି କରିଥିଲୁ । କୋଉ ପାର୍ଟିରେ ଅଛି କେଜାଣି ? ମିଟିଂ ଥିବ, ଆସିଥିବ କଲିକତା ।

ହସ ଲାଗିବାର ଆଉ ଗୋଟେ କାରଣ ଥିଲା । ବର୍ଷେ ତଳର ଘଟଣା । ଦିଲ୍ଲୀରୁ ଫେରି ଜଣେ ସାଙ୍ଗ ସେଦିନ ରାମଲିଙ୍ଗମ୍ ବନ୍ଧ ପାଖରେ ଗପୁଥିଲା – 'ଦିଲ୍ଲୀରେ ଜନ୍ତର୍ ମନ୍ତର୍ ଦେଖିଲି, ତିନ୍‌ମୂର୍ତ୍ତି ଦେଖିଲି, ମୋଗଲ୍ ଗାର୍ଡ଼ନ୍ ଦେଖିଲି, କୁତବ୍‌ମିନାର, ଇଣ୍ଡିଆଗେଟ୍... ଆଇ.ଆଇ.ଟି...' ଏମିତି କହିଚାଲିଛି । ଆଉ ଜଣେ ସାଙ୍ଗ ପାଖରେ ଥିଲା, ଚୁପ୍‌ଚାପ୍ ସବୁ ଶୁଣି ଚାଲିଛି... ରହିଲା ରହିଲା, ଆଉ ରହିପାରିଲାନି । କହିଲା –

'ଅ ହେ... ଦିଲ୍ଲୀ ଯାଇଥିଲ ପରା ?'

କିଏ ରାଗିବନି ଏଭଳି ପ୍ରଶ୍ନ ଶୁଣିଲେ ? ପିଲାଟା କେତେବେଳୁ କହିଚାଲିଛି – 'ଦିଲ୍ଲୀ ଗଲି... ଏୟା ଦେଖିଲି, ସେୟା ଦେଖିଲି... ।' ବାବୁ ଶେଷକୁ ପଚାରୁଛନ୍ତି 'ଦିଲ୍ଲୀ ଯାଇଥିଲ ପରା ?'

ପ୍ରଶ୍ନଟା ସରିନି ଭାବି ମୁଁ ଧୈର୍ଯ୍ୟର ସହ ଅପେକ୍ଷା କରିଛି । କିନ୍ତୁ ଆମ ବକ୍ତାବନ୍ଧୁ ଅସମ୍ପୂର୍ଣ୍ଣ ପ୍ରଶ୍ନର ସ୍ୱର ଶୁଣି ଚିଡ଼ିଲେଣି । କହିଲେ -

'ହଇରେ ଶଶି, ତତେ କିସ ଜଣାରେ ? ବିଜିପୁରୁ ଛକ ଡେଇଁଚୁ କିରେ ? ଦିଲ୍ଲୀ ଏକା ଯାଇପାରିବୁ କି ? ଦିଲ୍ଲୀରୁ ଉତୁରିବୁ କି ନିଜାମୁଦ୍ଦିନ୍‌ରେ – ବୁଝା ପଡ଼ିବନି... ବାଉଳା ଖାଇବୁ... ତା ଉତୁରୁ ଗଲା ଉତୁରୁ... ବାୟା ହୋଇ ଯିବୁରେ ପୁଅ... ! ପଚାରୁଛି ଦିଲ୍ଲୀ ଯାଇଥିଲି ପରା ?'

ବନ୍ଧୁ କିଛିଟା ରାଗି, କିଛିଟା ଲଜ୍ଜିତ ହୋଇ କହିଲେ – 'ରାଗ କରୁଛ କ୍ୟାଣ ପାଇଁ ହେ ? ତମେ ଦିଲ୍ଲୀ ଯାଇଥିଲ କହୁଛ ଯେ, ଆମ ସୀମାଞ୍ଚଳକୁ ଦେଖିଲ କି ?'

ମୁଁ ହସି ହସି ବ୍ରେକ୍‌ଡ଼ମ୍ । ଠିକ୍ ପଚାରିଛି ଶଶି । ତା' ସାଙ୍ଗ ସୀମାଞ୍ଚଳ ଦିଲ୍ଲୀ ଯାଇଛି ବର୍ଷେ ତଳେ । ତେଣୁ ତା' ଅନୁସାରେ ଆମ ବନ୍ଧୁ ଯଦି ସୀମାଞ୍ଚଳକୁ ଦିଲ୍ଲୀରେ ଦେଖି ନାହାନ୍ତି, ତା'ହେଲେ ସିଏ ଆଉ କ'ଣ ଦିଲ୍ଲୀ ଗଲେ ?

## ୪୬

ପ୍ରକ୍ଟର୍ ଡକେଇ ପଠେଇଲେ ଦିନେ ଖରାବେଳେ । ମୁଁ ଲାଇବ୍ରେରୀରେ ଥାଏ । କଣ ବୁଝୁ ବୁଝୁ, ଘଟଣା ହେଉଛି – ପୁନାରୁ ଚିଠି ଆସିଛି । ଆନ୍ତର୍ଭାରତୀ ଯୁବମେଳା । ଆଗରୁ ଦିଲ୍ଲୀରେ ପ୍ରତି ବର୍ଷ ହେଉଥିଲା । ସବୁ ୟୁନିଭର୍ସିଟିରୁ ପିଲା ଯାଉଥିଲେ, ପ୍ରତିନିଧିତ୍ୱ କରୁଥିଲେ । ନାଟକ, ବକ୍ତୃତା, ସଙ୍ଗୀତ କାର୍ଯ୍ୟକ୍ରମ ହେଉଥିଲା । ମଝିରେ ସେଇଟା ବନ୍ଦ ହୋଇଗଲା । ଶିକ୍ଷାବିଭାଗରେ ଅର୍ଥବ୍ୟବସ୍ଥା ହୋଇ ପାରିଲାନି । ବନାରସ, ଦିଲ୍ଲୀ ୟୁନିଭର୍ସିଟି ସମେତ ଆମ ୟୁନିଭର୍ସିଟି ତରଫରୁ ଶିକ୍ଷାମନ୍ତ୍ରୀ ଡଃ ତ୍ରିଗୁଣା ସେନ୍‌ଙ୍କୁ ଆମେ ଲେଖିଥିଲୁ – ଯୁବମେଳା ପୁଣି କରାଯାଉ । ସେ ଯା'ହେଉ ପରିବର୍ତ୍ତିତ ପରିସ୍ଥିତିରେ ପୁନାରେ କାର୍ଯ୍ୟକ୍ରମ ହେବ ବୋଲି ସ୍ଥିର ହେଲା । ପ୍ରତି ୟୁନିଭର୍ସିଟିରୁ ଇଚ୍ଛୁକ ଛାତ୍ରଛାତ୍ରୀ ନିଜ ନିଜ ବାୟୋଡାଟା ଦେଇ ଆବେଦନ କରିବା କଥା ପ୍ରକ୍ଟର୍ ଡାକି ମୋତେ କହିଲେ । ଶେଷରେ ମୋତେ ହିଁ ବାଛିବାକୁ ପଡ଼ିବ ଦେଖିଲି । କାରଣ ଅଧିକାଂଶ ପିଲା ଏମ୍.ଏ. (ପ୍ରିଭିୟସ୍) ପରୀକ୍ଷା ଦେବେ । ନଦେବା ଗୋଷ୍ଠୀରେ ଥିଲୁ – ମୁଁ, ସୁମିତ୍ର, ସୁକୁମାର । ତେଣୁ, ଆମ ଦରଖାସ୍ତହିଁ ଶେଷରେ ଫରୱାର୍ଡ଼୍ ହୋଇ ପୁନା ଗଲା । ଗଲାପୁଣି କୋଉଠିକି ? ପୁନାର ପଞ୍ଚସ୍ତରିଟି ପରିବାର ବାଛିଲେ ସାରା ଭାରତର ବିଭିନ୍ନ ପ୍ରଦେଶରୁ ପଞ୍ଚସ୍ତରି ପିଲାଙ୍କୁ ।

ତିନି ସପ୍ତାହ ରହଣି ଏକ ସଂପୂର୍ଣ୍ଣ ଅପରିଚିତ ସାହାଣି ପରିବାରରେ – ମୋ ଜୀବନରେ ଆଉ ଏକ ଅନୁଭୂତି । ପ୍ଲାଟଫର୍ମରୁ ହିଁ ମୁଁ ଜାଣି ପାରିଲି ମିଃ ସାହାଣି ଭିନ୍ନ କିସମ୍‌ର ଲୋକ । ତାଙ୍କର ପବ୍ଲିକେଶନ୍ ଡିଭିଜନ୍ ଭାରତ ଓ ଭାରତ ବାହାରେ । ମୋ ବେଡ୍ ହୋଲ୍‌ଡଅଲ୍‌କୁ ନିଜ ହାତରେ ଟେକି ନେଲାବେଳକୁ ମୁଁ ବାରଣ କଲି । କହିଲେ –

'ନା, ଠିକ୍ ଅଛି । ଓଜନ ବହୁତ କମ୍ । ଯେତେହେଲେ ବି ତୁମେ ମୋର ଅତିଥି । ଏତିକି କରିବାକୁ ଦିଅ ।'

ମୁଁ କେବଳ ଆଶ୍ଚର୍ଯ୍ୟ ହେଲିନି, ସଙ୍କୁଚିତ ଲାଗିଲା ନିଜକୁ । ଶିବାଜୀନଗର ବଙ୍ଗ୍‌ଲୋରେ ତାଙ୍କର ପହଞ୍ଚିବାକୁ ପନ୍ଦର-କୋଡ଼ିଏ ମିନିଟ୍ ଲାଗିଥିବ । ସଂଧ୍ୟାରେ ସେଠି ଦେଖିଲି ଦୁଇଟା ଜିପ୍ ଓ ଦୁଇଟା କାର୍ : ଗୋଟେ ଫିଏଟ୍, ଆରଟି ଡାଟ୍‌ସନ୍ । ସବୁ ସାହାଣି ପରିବାରର । ପୁଅ ଝିଅ ତିନିଜଣ, ଆଉ ମିଃ ସାହାଣି । ତେଣୁ ଗାଡ଼ି ସବୁ ମିଶି ଚାରି । ମୋତେ ପଚାରିଲେ କେଉଁ ଗାଡ଼ି ଚଲେଇବାକୁ ଇଛା । ମୁଁ ସେତେବେଳକୁ ପୁରା ନର୍ଭସ୍ ହୋଇଗଲିଣି । ଜିପ୍ ଡ୍ରାଇଭିଂଟା ବି.ଏ. ପଢ଼ିଲାବେଳେ ଶିଖି ନେଇଥିଲି । ସିଏ ପୁଣି ଧଉରା ହୋମ୍ ଡିପାର୍ଟମେଣ୍ଟ ଜିପ୍, ଚାରିଜଣ ନ ପେଲିଲେ ସେଲ୍‌ଫ୍‌ରେ ଷ୍ଟାର୍ଟ

ହୁଏନା । ଏଠିତ ଜାପାନୀଜ୍ 'ଡାଟ୍‌ସନ୍'– କେଡେ ସ୍ଲିକ୍, କେଡ଼େ ସୁନ୍ଦର କାର୍‌ଟି । ଆଉ ଅନ୍ୟ ତିନିଟା ଗାଡ଼ି ବି ନୂଆ ଭଳି । ଖୁବ୍ ସୁନ୍ଦର ମେଣ୍ଟେନାନ୍ସ୍ ।

ଡିନ୍ନରବେଳେ ମିଃ ସାହାଣିଙ୍କୁ ନ ଦେଖି ଝିଅ, ରୀନାକୁ ପଚାରିବାରୁ ସେ କହିଲା, ବାବା ବାହାରକୁ ଟିକେ ଯାଇଛନ୍ତି । ପରେ 'ବାହାରକୁ' ମାନେ ବୁଝିଲି 'ସିଙ୍ଗାପୁର ।' ଡାଇନିଂ ରୁମ୍ ଏମିତି କେବେ ଆଗରୁ ଦେଖି ନଥିଲି । କଲିକତା 'ଗ୍ରାଣ୍ଡ୍ ହୋଟେଲ୍'ରେ ଷୋଳଟଙ୍କିଆ ସବ୍‌ସିଡାଇଜ୍‌ଡ୍ ଲଞ୍ଚ୍ ଖାଇଲାବେଳେ ବି ଏମିତି ଡାଇନିଂ ରୁମ୍ ଦେଖି ନଥିଲି । ଡାଇନିଂ ଟେବୁଲ୍ ସୁଇଚ୍ ଟିପିଲେ ପ୍ଲେଟ୍‌ଗୁଡା ଯାଇ ଗୋଟିଏ ପାଖରେ ଥିବା ଗରମ ପାଣି ଓ ୱାସିଂପାଉଡର୍-ମିଶିଥିବା ଡ୍ରମ୍‌ରେ ପଡ଼ିବ । ଟେଲିଫଙ୍କେନ୍ ମ୍ୟୁଜିକ ସିଷ୍ଟେମ୍‌ରୁ ଆସୁଥାଏ ବବ୍ ଡିଲାନ୍‌ର କେତୋଟି ନମ୍ବର । ଗଛଗୋଟେ ମଝିରୁ ଯାଇ ଛାତ କାଟି ଉପରକୁ ଲମ୍ବି ଯାଇଛି । ପିକ୍‌ନିକ୍‌ସ୍ପଟ୍ ପରି ଲାଗୁ ଥାଏ । ତାପରେ ଗୋଟେ ପରେ ଗୋଟେ କୋର୍ସ୍ – ସୁପ୍, ସିଏ ପୁଣି ଦୁଇ ରକମର – ଭେଜ୍, ନନ୍-ଭେଜ୍, ତାପରେ ପ୍ରନ୍ ଫ୍ରାଇ, ତନ୍ଦୁର୍ ଚିକେନ୍, ନାନ୍, ପ୍ଲେନ୍ ରାଇସ୍, ଦୁଇ ରକମର ସାଲାଡ୍, ମିକ୍ସଡ୍ ଭେଜିଟେବୁଲ୍, ଆଇସ୍ କ୍ରିମ୍, କୋଲ୍‌ଡ୍ କଫି... । ପରୀକ୍ଷାରେ ଗୁଡ଼ାଏ ସହଜ ପ୍ରଶ୍ନ ଦେଖିଲେ ବାଛିବା ଯେମିତି କଷ୍ଟ ହୋଇଯାଏ, ମୋର ସେହି ଅବସ୍ଥା ହେଲା । ବାଛିବା ପାଇଁ ବିଦେଶୀ ସାହାଯ୍ୟ ନେବାକୁ ପଡ଼ିଲା । ରୀନା ସାହାଯ୍ୟ କଲା ।

ମୋ ବାୟୋଡ଼ାଟାରେ 'ଫେଭରିଟ୍ ଫୁଡ୍' ତଳେ ମଜା ଦେଖିବାପାଇଁ ଯାତୁ ସ୍ୟାତୁ ଲେଖିପକେଇଥିଲି, ନତିଜା ଶେଷରେ ଏୟା ହେଲା ? ଯା' ହେଉ, ଏଭଳି ଅଭିଜ୍ଞତା ପରେ ଜୀବନରେ କାମ ଦେବ ଭାବି ମନରେ ସାଇତି ରଖିଲି ।

ଦ୍ୱିତୀୟ ଦିନ 'ଆନ୍ତର୍ଭାରତୀ' ଯୁବମେଳା ପେଣ୍ଡାଲ୍‌ରେ ମୋ'ର ଭାଷଣପାଳି । ପଶ୍ଚିମବଙ୍ଗ ରାଜନୀତି ଓ ଓଡିଶାର ମନ୍ଦିର-ସଭ୍ୟତା ଉପରେ କହିଲି । ଦ୍ୱିତୀୟ ସେସନ୍‌ରେ ଜଣେ ଗେରୁଆପିନ୍ଧା ଭଦ୍ରଲୋକ କହିଲେ, ହିନ୍ଦୀରେ । ଆଖି ଦୁଇଟି ତାଙ୍କର ଖୁବ୍ ସୁନ୍ଦର, ଆଉ କହିବା କାଏଦା ଓ ବିଷୟବସ୍ତୁର ବିଶ୍ଳେଷଣ ଯେ କୌଣସି ଶ୍ରୋତାକୁ ମୁଗ୍ଧ କରିବ । ତାଙ୍କ ସ୍ୱରରେ ହିପ୍ନୋଟିକ୍ ପାୱାର୍ ଥିଲା ପରି ମନେ ହେଲା, ଯେପରିକି ସେ ଯେତେବେଳେ 'ପଥ୍ଥର୍' ଉଚ୍ଚାରଣ କରୁଥାଆନ୍ତି, ମୋତେ ଲାଗୁଥାଏ ମୋ ଆଖି ଆଗରେ ମୁଁ ପଥରଟିକୁ ହିଁ ଦେଖୁଛି, ମୋତେ ଆଉ କିଛି ଦିଶୁନାହିଁ । ମନ୍ତ୍ରମୁଗ୍ଧ ହୋଇ ଆମେ ସବୁ ଶୁଣୁଥାଉ । ସୁମିତ୍ର ଖବର ଯୋଗାଡ଼ କରି କହିଲା – ଭଦ୍ରଲୋକ ଦର୍ଶନ ଅଧ୍ୟାପକ ଥିଲେ ରବିଶଙ୍କର ବା ସାଗର ୟୁନିଭର୍ସିଟିର କୌଣସି ଏକ କଲେଜରେ – ମଧ୍ୟପ୍ରଦେଶରେ । ଏବେ ଚାକିରି ଛାଡ଼ି ପୁନାରେ ଆଶ୍ରମ ପ୍ରତିଷ୍ଠା କରିଛନ୍ତି, ନାଁ ତାଙ୍କର ଆଚାର୍ଯ୍ୟ ରାଜନୀଶ୍ ।

## ୪୭

ବଡ଼ ବଡ଼ ରାସ୍ତା । ଲମ୍ବା ଲମ୍ବା ଘର । କଙ୍କ୍ରିଟ୍ ଜଙ୍ଗଲ । ମନେ ହୁଏ – ମଣିଷ କମ୍, ଗାଡ଼ି ବେଶୀ, ଜୀବନ କମ୍, ଗତି ବେଶୀ । ପୁନା କଳ୍ପନାର ସହର ନୁହେଁ, ନୁହେଁ ସ୍ୱପ୍ନର । ଅନ୍ତତଃ, ମୋ ପାଇଁ ନୁହେଁ । ଆସୁ ଆସୁ ମୁଁ ଏଠି ଆସିଯାଇଛି, କହିଲେ ଭୁଲ୍ ହେବ । ଆସିବାର ନିର୍ଦ୍ଦିଷ୍ଟ କାରଣ ଥିଲା । ସ୍ମୃତିର ବୋଝ ଆଉ ସହି ହେଲାନି । କେତେ ଘଟଣା, କେତେ ଚରିତ୍ର, ବୋଝକୁ ଅସହ୍ୟ କରି ସାରିଲେଣି । ସ୍ମୃତିର ଜଙ୍ଗଲରେ ଅନାବନା ଗଛ ମରେନା, ସେଗୁଡ଼ାକ କାଟିଦେବାକୁ ପଡ଼େ, ନଷ୍ଟ କରିଦେବାକୁ ପଡେ । ସେଗୁଡ଼ା ପୁଣି ବଡ଼ ହୁଏ, ପାଖ ଆଖ ମାଡ଼ିଯାଏ । ଏଇତ ସ୍ମୃତିର ପରମ୍ପରା, ଲକ୍ଷଣ !

ସ୍ମୃତି ମଣିଷକୁ ପଛକୁ ଟାଣିନିଏ କି ଆଗକୁ ପେଲି ନିଏ – ଠିକ୍ ଜାଣେନା । ଗତି ଜୀବନର । ଆଗକୁ ମାଡ଼ିଯିବାର ଉତ୍ତେଜନା ଜୀବନର ପ୍ରଥମ ଓ ପ୍ରଧାନ ଆକର୍ଷଣ ହୋଇଛି । ନହେଲେ ସମସ୍ତଙ୍କଭଳି, ସମସ୍ତଙ୍କ ସାଙ୍ଗରେ ଏମ୍.ଏ. ଫାଷ୍ଟ୍ ପାର୍ଟ୍ ପରୀକ୍ଷାରେ ନ ବସି, ମୁଁ ଏ ୟୁଥ୍ ଫେଷ୍ଟିଭାଲ୍‌ରେ ମାତିଥାନ୍ତି କାହିଁକି ? ରବର୍ଟ୍ ଫ୍ରଷ୍ଟ୍‌ଙ୍କ 'ରୋଡ୍ ନଟ୍ ଟେକେନ୍' ବା ଅବ୍ୟବହୃତ ରାସ୍ତାଟିକୁ ସବୁବେଳେ ନିଜର କାହିଁକି କରି ନିଏ ? ରବୀନ୍ଦ୍ର ନାଥଙ୍କ 'ୟାକ୍ଲା ଚଲୋ' କବିତା ପଢ଼ିବାର ବହୁ ପୂର୍ବରୁ ଜୀବନପଥରେ ମୁଁ ଏକଲା ହିଁ ଚାଲି ଆସିଛି । ଏହି ଯାତ୍ରାରେ ଟେନିସନ୍‌ଙ୍କ ରାଜା ୟୁଲିସେଜ୍ ପରି ଯାହାଙ୍କୁ ରାସ୍ତାରେ ପାଇଛି, ସେମାନଙ୍କଠୁଁ କିଛି କିଛି ଅଂଶ ମୁଁ ନେଇ ଆସିଛି । କେତେଟା ଓ କଅଣ ମୁଁ କାହାକୁ ଦେଇଛି ଜାଣିନି । କିନ୍ତୁ ସମସ୍ତେ ଥାଇ, ବିଭିନ୍ନ ସମୟରେ, ବିଭିନ୍ନ ପରିସ୍ଥିତିରେ, ମୁଁ ଏକଲା । ଭାଷାରେ ଭାବକୁ ସଜାଡୁ ସଜାଡୁ ଭାବ କ୍ରମେ କ୍ରମେ ଦୁର୍ବଳ ହୋଇ ଯାଇଛି । ପାଖରୁ ଦୂରକୁ ଚାଲିଯାଇଛି, ଧରା ଦଉନି । ଜୀବନ ହୋଇ ଯାଇଛି ଭାଷାର, ଶବ୍ଦର ଜୀବନ । ଘଟି ନଥିବା ଘଟଣା, ଘଟିଥିବା ଘଟଣାଠୁଁ ବଡ଼ ଦେଖାଦେଇଛି । ଧୂଆଁ ଓ ଧୂଳିର ସହର ଛାଡ଼ି କଳ୍ପନାର ସହରରେ ମୁଁ ଘର ବସେଇଛି ।

ଏମିତି କ'ଣ ବଞ୍ଚିହୁଏ ? ଏମିତି କଣ ବଞ୍ଚାଯାଏ ?

ରୀନା – ଆଉ ଏକ ଚରିତ୍ର, ମୋ ଜୀବନର ରଙ୍ଗମଞ୍ଚରେ । ହୁଏତ ସେଣ୍ଟର୍ ଷ୍ଟେଜ୍‌କୁ ଆସି ପାରିନି । ମଞ୍ଚ ପୁରୁଣା ଚରିତ୍ରଙ୍କୁ ନେଇ ଭରପୁର । ନୂଆ ପାଇଁ ଜାଗା କାଇଁ ?

ରୀନା ସାହାଣୀ... ଅନେକଟା ଡେଲ୍‌ଫି ପରି । ଯାହା ପିନ୍ଧିଲେ ବି ଭଲ ଦିଶେ । କଣ, କେମିତି ପିନ୍ଧିବାକୁ ହୁଏ, ଜାଣେ – ଡେଲ୍‌ଫି ପରି – ନାଇଟି, ନେଗ୍ଲିଜି ଠାରୁ

ଆରମ୍ଭ କରି ଜିନ୍ସ, ସଲଓ୍ୱାର ପର୍ଯ୍ୟନ୍ତ । ଛୋଟିଆ ଇମ୍ପୋର୍ଟେଡ୍ ଡାଟ୍‌ସନ୍ କାର୍‌ଟିକୁ ଚଲେଇଲା ବେଳେ ସୁନ୍ଦର ଦିଶେ । ଆହୁରି ସୁନ୍ଦର ଦିଶେ, ରାତିରେ ଚେସ୍ ଖେଳରେ ମୋତେ ହରେଇ ସାରିଲାପରେ ଯେତେବେଳେ କହେ – 'ବେଟର୍ ଲକ୍ ନେକ୍ସଟ୍ ଟାଇମ୍... ଗୁଡ୍ ନାଇଟ୍' । ରୀନା ମେଡିକାଲ୍ ଛାତ୍ରୀ । ଦିନବେଳା ମୋଟେ ଦେଖା ହୁଏନା, ସେ କଲେଜକୁ ଚାଲିଯାଇଥାଏ ସକାଳୁ । ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ମିସେସ୍ ସାହାଣୀ ହିଁ ମୋତେ କମ୍ପାନି ଦିଅନ୍ତି । ଭାଇଟା କୁଆଡେ ଗାଏବ୍ ହୋଇ ଯାଇଥାଏ କେଜାଣି, ମୁଁ ଘରେ ତାକୁ ମୋଟେ ଦେଖିବାକୁ ପାଏନା ।

ସେଦିନ ପ୍ରେସିଡେଣ୍ଟ ଡଃ ଜାକୀର୍ ହୁସେନ୍, ଚିଫ୍ ଅଫ୍ ଏୟାର୍‌ଫୋର୍ସ୍, ଏୟାର୍‌ମାର୍‌ସାଲ୍ ଅର୍ଜୁନ୍ ସିଂ ଆମ ଫଙ୍କସନ୍‌କୁ ଅତିଥି ହୋଇ ଆସିଥିଲେ । ରେଡିଓ, ସମ୍ବାଦପତ୍ରସଂସ୍ଥା ପୁରା ମିଟିଂରେ ଭିଡ଼ ଜମେଇଦେଲେଣି । ହଠାତ୍ ରୀନାକୁ ଦେଖିଲି । ସାଙ୍ଗରେ ଲମ୍ବା ଚଉଡା ପିଲାଟେ । ପରିଚୟ କରେଇ ଦେଲା – ପିଲାଟି ଖଡ଼ଗ୍‌ଭସ୍ଲା ନ୍ୟାସନାଲ୍ ଡ଼ିଫେନ୍ସ ଏକାଡ଼େମୀ (ଏନ୍.ଡି.ଏ.) ରେ ଫାଇନାଲ୍ ଇଅର୍ ପଢୁଛି । ରୀନାର ବଏଫ୍ରେଣ୍ଡ୍ ବୋଧେ !

ଦିଜଣଙ୍କୁ ଦେଖି ଭାରି ଖୁସି ଲାଗିଲା । 'ମେଡ୍-ଫର୍-ଇଚ୍ ଅଦର୍' ପେୟାର୍ ପରି ଲାଗିଲା । ମୋତେ ଲଞ୍ଚ୍‌ପାଇଁ ଡାକିଲେ । ମୁଁ ଖାଲି ଅପେକ୍ଷା କରିଥିଲି କେତେବେଳେ ସେଭଳି ପ୍ରପୋଜାଲ୍‌ଟିଏ ଆସିବ । ତଣ୍ଟି ଶୁଖିଗଲାଣି, ବିୟର୍ ପିଇବାକୁ ମନେ ମନେ ଇଚ୍ଛା, କହିଥାନ୍ତି କାହାକୁ ? ବେଶ୍ ଭଲ ହେଲା । ଆମେ ଚାଲିଲୁ ଗୋଟେ ଫାଇଭ୍ ଷ୍ଟାର୍ ହୋଟେଲ୍‌କୁ । ହୋଟେଲ୍‌ର ନାଁଟା ପଢ଼ିବା ଆଗରୁ ରୀନା କାର୍‌କୁ ଭିତରେ ପୁରେଇସାରିଲାଣି । ଲଞ୍ଚ୍ ଅର୍ଡ଼ର ବେଳେ ମୁରୁକି ମୁରୁକି ହସି ରୀନା ମେନୁ କାର୍ଡ଼ଟିକୁ ମୋ' ଆଡ଼କୁ ବଢ଼େଇ ଦେଲା । ମୁଁ ସିଧା ଶେଷଆଡ଼କୁ ଆଖି ପକାଇଛି, ପାଖରୁ ଶୁଭିଲା -

'କ'ଣ ଡ୍ରିଙ୍କ୍‌ଟା ଆଗେ ?'

'ହଁ, ମୁଁ ସେମିତି ଗୋଟେ କିଛି ଆପିଟାଇଜ୍‌ର ଖୋଜୁଛି ।'

'ତା' ହେଲେ, ଭୋଡ୍‌କା ଉଇଥ୍ ସୋଡ଼ା, ହେଉ ?'

'ନା, ପ୍ଲେନ୍ ବିଅର୍, ବ୍ଲାକ୍ ଲେବ୍ଲ ହେଲେ...' ମୁଁ କହିଲି । ରୀନାର ସାଙ୍ଗ ସମ୍ମତି ଜଣେଇଲା । ଶେଷରେ ଆସିଲା ଦିଟା ବିଅର୍ ଓ ଗୋଟେ ଲାର୍ଜ ପେଗ୍ ଭୋଡ୍‌କା, ସୋଡ଼ା ଓ ଆଇସ୍ ବକ୍ସ ।

ରୀନାକୁ ମୁଁ 'ମଡର୍ଣ୍ଣ୍' ଝିଅଟେ ଭାବିଥିଲି, କିନ୍ତୁ ଯେ ତ 'ପୋଷ୍ଟ୍‌ମଡର୍ଣ୍ଣ୍' ଲାଗୁଛି ।

ରୀନାର ବଏଫ୍ରେଣ୍ଡ୍ ଆଲୋକ୍ ସାକ୍ସେନା ମୋତେ ଅନେକ କିଛି ପଚାରିଲା । ଶାନ୍ତିନିକେତନରେ କୁଆଡ଼େ କେହି ଜୋତା, ଚପଲ ପିନ୍ଧନ୍ତିନି, ସବୁବେଳେ ଖାଲି ଗୋଡ଼ରେ ଥାଆନ୍ତି, ଗଛମୂଳେ କୁଆଡ଼େ କ୍ଲାସ ହୁଏ, ଝିଅମାନେ ପୁଅମାନଙ୍କୁ କୁଆଡ଼େ ନଚାନ୍ତି, ବର୍ଷାହେଲେ କୁଆଡ଼େ ଝିଅପୁଅ ସବୁ ହଷ୍ଟେଲରୁ ବାହାରିଆସି ରବୀନ୍ଦ୍ରନାଥଙ୍କ ବର୍ଷାଗୀତ ଗାଇ ନାଚନ୍ତି, ଇତ୍ୟାଦି ଇତ୍ୟାଦି ।

ମୁଁ ନ ହସି ରହି ପାରିଲି ନାହିଁ । ପରିସ୍ଥିତିକୁ ଆହୁରି କୌତୁକିଆ କରିବାପାଇଁ କହିଲି –

'କେବଳ ସେତିକି ନୁହେଁ... ଶାନ୍ତିନିକେତନରେ ଝିଅମାନେ ଖାଲି ଗଛର ପତ୍ର ପିନ୍ଧନ୍ତି, କାନ, ବେକକୁ ସଜାନ୍ତି ଫୁଲରେ... ପୁଅମାନେ ଗଛର ବକଳ ପିନ୍ଧନ୍ତି, ଜାମାପଟା ନୁହେଁ ।'

ସମସ୍ତେ ଜୋରରେ ହସିଲେ ।

ରାତିରେ ରୀନା ମୋ ରୁମ୍‌ରେ ପଶି ପୁଣି ସେଇ କଥା ଦୋହରେଇଲା । ଆଉ ଚେସ୍ ଖେଳିବାକୁ ଇଚ୍ଛା ନଥିଲା ତା'ର । ଏ ଭିତରେ ତା'ର ଫୋନ୍‌ଟେ ଆସିଲା । ତେବେ ଚାଲିଯିବା ପୂର୍ବରୁ ମୁଁ ତାକୁ ପଚାରିଲି କ'ଣ ଆଲୋକ ସାକ୍ସେନାକୁ ସେ ବାହା ହେଉଛି ?

ହସି ହସି କହିଲା –

'ଡୋଣ୍ଟ୍ ବି ଷ୍ଟୁପିଡ୍... ଏଇଟା ଖାଲି ଗୋଟେ ଆଫ୍ୟାର୍... ଟ୍ରାଏଲ୍ ପିରିୟଡ୍ ଚାଲିଛି... ବା' ଘର କଥା ଭାବିନି... ଇଜ୍ ଇଣ୍ଟ୍ ଇଟ୍ ଟୁ ଅର୍ଲି... ?'

ମୁଁ ଅବାକ୍ ହୋଇଗଲି । କେତେ ସହଜରେ କେଡ଼େ ସିରିୟସ୍ ଜିନିଷଟାକୁ କହି ପକେଇଲା ।

ଜଷ୍ଟ୍ 'ଆନ୍ ଆଫ୍ୟାର୍' ? ସମ୍ପର୍କ ଯଦି ତା' ହୁଏ ତେବେ ସମ୍ପର୍କ 'ସମ୍ପର୍କ' ହିଁ ରହିଯିବ, ସେତୁ ହେଇପାରିବନି । ଭିନ୍ନ ପରିସ୍ଥିତି, ଭିନ୍ନ ଚିନ୍ତାଧାରା, ଭିନ୍ନ ମନୋବୃତ୍ତିକୁ ନେଇ ବଢ଼ି ଆସିଥିବା ଜଣେ ପୁରୁଷ ଓ ନାରୀ ଭିତରେ ସମ୍ପର୍କ ଯଦି ସେତୁଟିଏ ତିଆରି ନ କରେ, ପରସ୍ପରର ଜୀବନରେ ବିଭିନ୍ନ ସମୟରେ ଦେଖାଦେଉଥିବା, ଅନୁଭବ କରି ହେଉଥିବା ଶୂନ୍ୟତାକୁ କିଛିଟା ପୂର୍ଣ୍ଣ କରି ନପାରେ, ତା' ହେଲେ ସେ ସମ୍ପର୍କ, ସେ

ପ୍ରେମର ଅର୍ଥ କ'ଣ ? ଆବଶ୍ୟକତା କେଉଁଠି ? ଗୋଟିଏ ଶରୀରକୁ ଅନ୍ୟଏକ ଶରୀର ସହିତ, ଗୋଟିଏ ହୃଦୟକୁ ଅନ୍ୟ ଏକ ହୃଦୟ ସହିତ ଯୋଡ଼ି ଦେବାହିଁ ସମ୍ପର୍କ, ପ୍ରେମ ।

ରାତିରେ ପୁଣି ରୀନା ଆସିଲା । ଏୟାର୍‌କଣ୍ଡିସନର୍ ଚାଲୁକଲାବେଳେ ମୁଁ ମନାକଲି । 'ବାହାର ଲନ୍‌କୁ ଯିବା' କହିଲି । ତାପରେ ଘଣ୍ଟାଏ, ଦି ଘଣ୍ଟା, ତିନି ଘଣ୍ଟା... ରାତି ତିନିଟା ବାଜିଗଲା । ଗପି ଚାଲିଛି ରୀନା, କେମିତି, କେଉଁଠି ପ୍ରଥମେ ଆଲୋକ୍‌କୁ ଦେଖିଲା, କେବେଠୁଁ ଭଲ ପାଇ ବସିଲା, ଏପରିକି ଦିଲ୍ଲୀ ଏୟାର୍‌ପୋର୍ଟ୍‌ରେ ହୋଟେଲ୍‌ରେ ପୁରା ରାତିଟିଏ ଦୁହେଁ କେମିତି କଟେଇଲେ... ଇତ୍ୟାଦି ଇତ୍ୟାଦି ।

ମୁଁ ନୀରବ ଶ୍ରୋତା । ସବୁ ଶୁଣୁଥାଏ... କାଇଁକିନା ଶେଷରେ ଗୁଡ଼ାଏ ପ୍ରଶ୍ନ ସେ ପଚାରିବ, ମୁଁ ଜାଣିଛି । ମୋତେ ଉତ୍ତର ଦେବାକୁ ପଡ଼ିବ । ନହେଲେ ଛାଡ଼ିବନି ।

ଶେଷରେ ପୁନା ଓ ରୀନା ଭିତରେ ମୁଁ ପୁନା କମ୍ ଦେଖିଲି, ରୀନାକୁ ବେଶି । ଅନ୍ୟ ମେଟ୍ରୋପଲିଟାନ ସହର ପରି ପୁନା ସହରଟି । ଧନୀ ସମ୍ପ୍ରଦାୟଙ୍କ ସଂଖ୍ୟା ଏଠି ବେଶି । ସମସ୍ତଙ୍କ ଘରେ କାର୍, ଫୋନ୍ । ସମସ୍ତେ ବ୍ୟସ୍ତ । ମେସିନ୍ ଚାଲିଲା ପରି ଜୀବନଯାତ୍ରା ତାଙ୍କର । କିଏ ପ୍ରକୃତରେ ସୁଖୀ, କିଏ ଦୁଃଖୀ – ଜାଣିବା ମୁସ୍କିଲ୍ । ସୁଖ ଦୁଃଖର ତୁଳନା ଏଠି ହୁଏନା । ସମୟ କାଇଁ ? ବ୍ୟସ୍ତତା ଯେମିତି ଜୀବନର ବ୍ୟାପ୍ତି, ଜୀବନର ସଂଜ୍ଞା !

ଏଠି ସରକାରୀ ଚାକିରି ପାଇଁ କେହି ଯାଆନ୍ତି ନାହିଁ । ଆର୍ଟ୍ସ, ସାଇନ୍ସ ଅପେକ୍ଷା କମର୍ସ୍‌ର ଚାହିଦା ବେଶି । ବିଜିନେସ୍ ମ୍ୟାନେଜ୍‌ମେଣ୍ଟ, କଷ୍ଟ୍ ଏକାଉଣ୍ଟାଣ୍ଟ, ଚାର୍ଟର୍ଡ୍ ଏକାଉଣ୍ଟାଣ୍ଟ କୋର୍ସ୍ ପାଇଁ ଭିଡ଼, ପ୍ରତିଯୋଗିତା । ମିସେସ୍ ସାହାଣୀ ସେଦିନ ଯେତେବେଳେ ମୋଠୁଁ ଶୁଣିଲେ ଓଡ଼ିଶାରେ ସବୁଠୁ ମେଧାବୀ ଛାତ୍ର ଆଇ.ଏ.ଏସ୍. ଚାକିରି ପାଇଁ ଦିନକୁ ଚଉଦ ଘଣ୍ଟା ପଢ଼ିବାକୁ ଚେଷ୍ଟା କରେ, ସମାଜ, ବନ୍ଧୁ-ସବୁ ଭୁଲି ଖାଲି ଜି.କେ., ଏସେ, ଜେନେରାଲ୍ ଇଙ୍ଗ୍‌ଲିସ୍, ଅପ୍ସନାଲ ପେପର୍ ପାଇଁ ଭଲ ନୋଟ୍ ଶୁଆପରି ମୁଖସ୍ଥ କରିଚାଲେ, ଧୀରେ ମୋତେ ପଚାରିଲେ – 'ସେମାନଙ୍କ ଦରମା କେତେ ?' ମୁ କହିଲି- 'ବେସିକ୍ ଚାରିଶହ ଟଙ୍କା ।' ଆଶ୍ଚର୍ଯ୍ୟ ହୋଇ ମିସେସ୍ ସାହାଣୀ କହିଲେ – 'ଦିନକୁ ନା ମାସକୁ ?'

ଆଶ୍ଚର୍ଯ୍ୟ ହେବାର, ହସିବାର ପାଳି ଏବେ ମୋର । ପୁନାରେ ଜଣେ ଲୋକର ହାରାହାରି ଆୟ – ମିସେସ୍ ସାହାଣୀଙ୍କ ପରିବାର ସ୍ତରରେ – ଢ଼େର୍ ବେଶି ।

ସେଦିନ ରେଞ୍ଜହିଲ୍ସରୁ ଫେରିଲା ବେଳେ ଅଟୋବାଲାକୁ କହିଲି, 'ବାଟରେ ଭଲ କ୍ୟାସେଟ୍ ଦୋକାନ ଦେଖିଲେ ରହିବ।' ଶେଷରେ ଦୋକାନ ଭିତରକୁ ପଶୁ ପଶୁ ଦେଖିଲି ପଞ୍ଚାଏ ଝିଅ ଏପାଖ ସେପାଖ ହେଉଛନ୍ତି । ଭିତରକୁ ପଶିବା ଅସମ୍ଭବ । 'କଣ କରିବି' ଏମିତି ଭାବୁଛି ସ୍ମାର୍ଟ ଟୋକାଟେ କୁଆଡୁ ପଶିଆସି କ'ଣ ନେବି ମୋତେ ପଚାରିଲା । ମୁଁ କହିଲି, 'କ୍ଲିଫ୍ ରିଚାର୍ଡ଼ ରଖିଛ ?'

ସେ କହିଲା, 'ହଁ ।'

' ପଚାରିଲି ତାଙ୍କ 'କ୍ୟାରି ମି ଲାଇକ୍ ଏ ଫାୟାର୍ ଇନ୍ ୟୋର୍ ହାର୍ଟ୍'... ନମ୍ବରଟା ଅଛି ?'

ସେ ହସିଲା... ତା ପାଖ ଝିଅଟେ ଆଗକୁ ଆସି ମୋତେ କହିଲା –

'କଣ ତୁମେ କ୍ଲିଫ୍ ରିଚାର୍ଡ଼ଙ୍କ ଫ୍ୟାନ୍'... ପଚାରିଲାବେଳେ ତା' ହାତଟା ଟେବୁଲ୍ ଫ୍ୟାନ୍ ଘୁରିଲାପରି ବୁଲୁଥିଲା ।

କୋର୍ଟରୁମ୍‌ରେ ଓକିଲଙ୍କ ଅଖାଡୁଆ ପ୍ରଶ୍ନଟିଏ ଆସିଲେ ଡକ୍‌ରେ ଛିଡ଼ା ହୋଇଥିବା ଆସାମୀ ଯେମିତି ଅପ୍ରସ୍ତୁତ ହୋଇଯାଏ, ମୁଁ ଠିକ୍ ସେଭଳି ହେଲାପରି ଅନୁଭବ କରି ବୋକାଙ୍କ ପରି ଟିକେ ହସି ପକେଇଲି । ସେ କହିଲା –

'ଆଇ ସିଂପ୍ଲି ଲଭ୍ ହିମ୍...'

ମୁଁ ମନେ ମନେ ଭାବିଲି ଚାରିଅକ୍ଷରରେ ଗଢ଼ା ଏହି ଇଙ୍ଗ୍ରେଜି 'ଲଭ୍' ଶବ୍ଦଟି କେତେ ସହଜରେ ଜଣେ କହିଦେଇ ପାରେ, ଅଥଚ, ଜୀବନରେ ଶବ୍ଦଟିର ଅର୍ଥ ଓ ପ୍ରୟୋଗ ବୁଝିବାଲାଗି ବର୍ଷ ବର୍ଷ ଲାଗିଯାଏ । ହାତ ଗୋଡ଼ ଖଣ୍ଡିଆ ହୁଏନା, କିନ୍ତୁ ହୃଦୟର କେତେ ଅଂଶ ପୋଡ଼ି ଯାଇଥାଏ, ମନରେ ବହୁ କଷ୍ଟରେ ଉପାର୍ଜିତ ଓ ସଂଚିତ ଶାନ୍ତି ନଷ୍ଟ ହେଇ ଯାଇଥାଏ, ବିଭିନ୍ନ ସମସ୍ୟା, ଦୁର୍ଘଟଣା ଆଢୁଆଳରେ ଗଢ଼ି ଉଠିଥିବା ସାହସ ଓ ଆତ୍ମବିଶ୍ୱାସ ହଜିଯାଇଥାଏ, ପ୍ରେମ କ'ଣ, କାହାକୁ କରାଯାଇପାରେ, କେଉଁ ପରିସ୍ଥିତିରେ ଓ କେତେ ଦିନ – ଜାଣିଲାବେଳକୁ ବେଳ ଗଡ଼ିଯାଇଥାଏ ।

ମନର ଟିକେ ଦୁର୍ବଳତାକୁ, ଶରୀରର ଅସ୍ଥିରତାକୁ, କଳ୍ପନାର ଭିନ୍ନ ଭିନ୍ନ ରଙ୍ଗକୁ – ଆମେ ପ୍ରେମ କହିଥାଉଁ । ନିଜକୁ ନ ଚିହ୍ନି, ଅନ୍ୟକୁ ଚିହ୍ନିବାର ଭୁଲ କରିବସୁ । ନଈକୁ ନ ଦେଖି ଝରଣା ପାଖରେ ଜୀବନର ପରିଚୟ ଖୋଜୁ । ସମୁଦ୍ରକୁ ଯିବା ପୂର୍ବରୁ, ଦେଖିବା ପୂର୍ବରୁ, ନଈପାଖରେ ରହିଯାଉ ଓ ଭାବୁ – ପ୍ରକୃତରେ ବୈଚିତ୍ର୍ୟ, ପ୍ରାଚୁର୍ଯ୍ୟ, ସବୁର ଏଇଠି ଆରମ୍ଭ ଓ ଏଇଠି ଶେଷ ।

ଶେଷରେ କ୍ଲିଫ୍ ରିଚାର୍ଡ୍ ନ ପାଇ ଆମ୍‌ଜାଦ ଅଲ୍ଲୀ ଓ ବେଗମ୍ ଅଖ୍‌ତାର୍‌ଙ୍କ ଦୁଇଟି କ୍ୟାସେଟ୍ ଧରି ମୁଁ ଶିବାଜୀନଗର ମିଃ ସାହାଣିଙ୍କ ଘରକୁ ଫେରିଲି । ମିଃ ସାହାଣିଙ୍କୁ ସପ୍ତାହେ ଖଣ୍ଡେ ଦେଖି ନଥିଲି । ସନ୍ଧ୍ୟାରେ ଚା' ପିଇଲାବେଳେ ମୋତେ ଦୁଇଟା ବହି ଦେଲେ । କହିଲେ କାନାଡ଼ାରେ ଗୋଟେ ବହି ଦୋକାନରୁ ମୋ' ପାଇଁ କିଣିଥିଲେ । ଗୋଟେ ହେଲା ଦୁରାଣ୍ଟଙ୍କ 'ଷ୍ଟୋରି ଅଫ୍ ଫିଲସଫି', ଆରଟା ହେଲା ସଲ୍ ବେଲୋଙ୍କ 'ହର୍ଜୋଗ୍' ।

## ୪୮

ଟ୍ରେନ୍‌ରେ ରିଜର୍ଭେସନ୍ ମିଳିଲାନି । ଅଧାରାସ୍ତା ଛିଡ଼ା ହୋଇ ଆସିବାକୁ ପଡ଼ିଲା । ବମ୍ବେରୁ କଲିକତା – କିଛି କମ୍ ବାଟ ନୁହେଁ । ତେବେ ସାଙ୍ଗରେ ସୁମିତ୍ର ଓ ସୁକୁମାର ଥିଲେ, ତେଣୁ ବକର ବକର ହୋଇ ଅଧିକାଂଶ ସମୟ କଟିଗଲା । ସୁମିତ୍ର, ପୁନାରେ ଯେଉଁ ପରିବାରରେ ରହିଲା ସେଠି କୁଆଡ଼େ ଖାଲି ବୁଢ଼ାଟେ, ବୁଢ଼ୀଟେ । କଥାବାର୍ତ୍ତା ବେଶି ନ କରିବା ପାଇଁ ଡାଇନିଂ ରୁମ୍‌ରେ, ବେଡ୍ ରୁମ୍‌ରେ, ଏପରିକି ଟଏଲେଟ୍‌ରେ ନୋଟିସ୍ ମରାଯାଇଛି । ସୁକୁମାର ଯେଉଁଠି ଥିଲା ସେଠି ମା' ପୁଅ, ବୋହୂ ତିନିଜଣ । ସମସ୍ତେ ସଂଗୀତପ୍ରେମୀ, ତେଣୁ ସୁକୁମାର ମନର ଆନନ୍ଦରେ ଖାଲି ରବୀନ୍ଦ୍ରସଂଗୀତ ଗାଇ ଚାଲିଲା । ପଡ଼ୋଶୀ ଝିଅଟିଏ ଅବଶ୍ୟ ଶେଷ ଆଡ଼କୁ ଆସିଲା, ଶୁଣିଲା, ସୁକୁମାରର ଗଳାକୁ ଭାରି ତାରିଫ୍ କଲା, କିନ୍ତୁ ସୁକୁମାରର ମନ ଖରାପ, ତାକୁ 'ଭାୟା' ବୋଲି ସେ ଡାକିବାରେ ଲାଗିଗଲା । ଝିଅଟି ମୁସଲ୍‌ମାନ । ଫଟୋଟି ଆସ୍ତେ ମନିପର୍ସ୍‌ରୁ ବାହାର କରି ସୁକୁମାର ଆମକୁ ଦେଖେଇଲା । ଭଲ ସୁନ୍ଦର ଝିଅଟିଏ – ସ୍କୁଲରେ ପଢୁଛି ବୋଧେ ! ସେମିତି ମୋତେ ଲାଗିଲା ।

ଫଟୋଟି ପର୍ସ୍ ଭିତରେ ରଖିଲାବେଳକୁ ଆଉ ଗୋଟେ ଫଟୋ ବାହାରି ଆସି ତଳେ ପଡ଼ିଗଲା । ଅନେଇଲାରୁ ଜଣାପଡ଼ିଲା ସେଇଟା ଅଞ୍ଜନାର ଫଟୋ । ସୁକୁମାରର ଦୀର୍ଘ ଦଶବର୍ଷର ନାୟିକା ଅଞ୍ଜନା । କି ଅବସ୍ଥା ! ଫଟୋଟା ଗୋଟାଇ ନେଲାବେଳକୁ ଉଡ଼ିଗଲା ପବନରେ, କମ୍ପାର୍ଟ୍‌ମେଣ୍ଟ୍ ବାହାଚକୁ । ସୁକୁମାର ହତବାକ୍, ଆଖି ଛଳ ଛଳ...

ସୁମିତ୍ରଟା ଏଡ଼େ ବଦମାସ୍ ! କହୁଛି –

'କେଣ ଚେନ୍ ଟାଣିବା ?'

ସୁକୁମାର ସତକୁ ସତ ଚେନ୍ ଟାଣିବା ଉପରେ । ଡେଙ୍ଗାଟା... ହାତ ସିଧା ବାଜୁଛି ଚେନ୍‌ରେ । ମୁଁ ଆଉ ଧୈର୍ଯ୍ୟ ଧରି ରହିପାରିଲିନି –

'ଚେନ୍ ଟାଣିବା ଆଗରୁ ପକେଟରେ ଦେଖ ଦୁଇଶ (ନା ଦୁଇଶ ପଚାଶ) ଅଛି ତ ? ଫାଇନ୍‌ଟି ପଡ଼ିବ, ବୁଝିଲ । ନ ଦେଇ ପାରିଲେ, ଆମେ ଶାନ୍ତିନିକେତନ ଫେରିବା ବଦଳରେ କାନ୍‌ପୁର ବା ରାଏପୁର ରେଲୱେ ହାଜତରେ... ବୁଝିଲ ତ ଏଥର ?'

ସମସ୍ତେ ସିରିୟସ୍ ହେଇଗଲେ । ମୁଁ ଆସ୍ତେକରି ପକେଟ୍‌ରେ ଦେଖିଲି ସବୁମିଶି ବାଇଶି ଟଙ୍କା ଅଛି । ପର ଷ୍ଟେସନ୍‌ରେ ଓହ୍ଲେଇ ପ୍ଲାଟଫର୍ମରେ କାକୁଡି ଖାଇଲାବେଳେ ସୁକୁମାର କହିଲା ଯେ ଅଞ୍ଜନାର ସେଇ ଫଟୋ ପ୍ରକୃତରେ ଅଞ୍ଜନା ତାକୁ ଦେଇନି । ସିଏ ତା ଆଲବମ୍‌ରୁ ମାରି ଦେଇଛି । ଆଉ ଯେଉଁଦିନ ଘଟଣାଟି ଘଟିଲା ସେଦିନ କୁଆଡ଼େ ଦିହେଁ ଖୁବ୍ ଝଗଡ଼ା କରିଥିଲେ । ଏପରିକି ପରେ ପରେ ସପ୍ତାହେ ଖଣ୍ଡେ ଅଞ୍ଜନା ତା' ସହ କଥାବାର୍ତ୍ତା ତ ଦୂରର କଥା, ତାକୁ ଅନେଇଲାନି ଥରେ ହେଲେ । ସେଇ ଦୁଃଖରେ ପ୍ରେମିକପ୍ରବର ତଜନେ ଖଣ୍ଡେ ସ୍ୱରଚିତ ରବୀନ୍ଦ୍ରସଂଗୀତ ଲେଖିପକେଇଥିଲେ ।

ଚାନ୍ସ ମିଳିଗଲା ସୁମିତ୍ରକୁ, ପୁଣି ଦୁଷ୍ଟାମି କରିବାକୁ । ମୋଠୁଁ ନେଇ ଟାଣୁଥିବା ଚାର୍ମିନାର୍‌କୁ ସୁକୁମାର୍ ଆଡ଼କୁ ବଢେଇ ଦେଇ କହିଲା – 'ଆଛା ସେଥିରୁ ସବୁଠୁଁ ଦୁଃଖ ଗୀତଟି ଗାଇଲ ଦେଖିବା ?'

ମୋତେ ହସ ଲାଗିଲାଣି, କିନ୍ତୁ ହସିଦେଲେ, ପରିସ୍ଥିତିର ଗାମ୍ଭୀର୍ଯ୍ୟ ନଷ୍ଟ ହୋଇଯିବା ଆଶଙ୍କାରେ ମୁଁ ଆବଶ୍ୟକତାରୁ ଅଧିକ ଗମ୍ଭୀର ହୋଇଗଲି ।

ସୁକୁମାର ଗଳା ସଫା କରିବାକୁ ଆରମ୍ଭ କରିଛି ଗାଡ଼ି ପ୍ଲାଟ୍‌ଫର୍ମ୍ ଛାଡ଼ିଲା । ଗୀତଟି ସେଇଠି ରହିଲା । ଦଉଡ଼ି ଉଠିଲାବେଳକୁ ସେ ଦୁହେଁ ଗୋଟେ ବଗିରେ, ମୁଁ ଆଉ ଗୋଟେରେ । ଭିତରକୁ ପଶିଦେଖେ ସେଇଟା ଲେଡିଜ୍ କମ୍ପାର୍ଟ୍‌ମେଣ୍ଟ୍ । ମୋ ଅବସ୍ଥା ସାଂଘାତିକ ! ଦୁଇଜଣ ଭଦ୍ରମହିଳା ଉଠିଆସି ଆରମ୍ଭ କରିଦେଲେ ଚଢ଼ାଉ ମୋ ଉପରେ । ମୁଁ ଚଣ୍ଡାଳ, ସିଗାରେଟ୍‌ଟା ଫୋପାଡି ଦେଇଥିଲେ କଣଟା ଓଲଟି ପଡ଼ିଥାନ୍ତା ? ଶସ୍ତା ହିନ୍ଦୀ ଫିଲ୍ମ ଷ୍ଟାଇଲ୍‌ରେ ହୀରୋଙ୍କ ପାଟିରେ ସିଗାରେଟ୍... ଧୂଆଁଗୁଡ଼ା ଚାରିଆଡ଼େ ମାଡ଼ିଚାଲିଛି....

ଜଣେ ନାରୀଙ୍କ ପାଟିରୁ ବାହାରିଲା ବିକୃତ ହିନ୍ଦୀ ଓ ଇଂରାଜୀର ବାକ୍ୟଟିଏ –

'ଦେଖିନ... ଛତରା ଟୋକାଟେ କେମିତି ପ୍ରାଣ୍ ନା ଦେବାନନ୍ଦ ଷ୍ଟାଇଲ୍‌ରେ ପାଟିରେ ସିଗାରେଟ୍ ପୁରେଇ ଲେଡିଜ୍ କମ୍ପାର୍ଟମେଣ୍ଟ ଭିତରକୁ ପଶିଆସି... ମାର ଆକୁ...'

ଫାଳେ ଗୋଡ଼ ମୋର କମ୍ପାର୍ଟ୍‌ମେଣ୍ଟ୍‌ରେ, ଆର ଫାଳଟା ପବନରେ, କମ୍ପାର୍ଟ୍‌ମେଣ୍ଟ୍ ବାହାରେ । ସିଗାରେଟ୍‌ଟାକୁ ଫୋପାଡ଼ିବି କ'ଣ, ସେଇଟା ପବନରେ ସାର୍ଟ ଭିତରକୁ ଚାଲିଗଲାଣି । ଗୋଟେ ହାତରେ ଦର୍ଜାପାଖ ସିଟ୍‌ଟାକୁ ଧରିଛି, ଆର ହାତରେ ଛାତି ଭିତରୁ ପୋଡ଼ା ସିଗାରେଟ୍‌ଟାକୁ କାଢ଼ିବା ଚେଷ୍ଟାରେ...

କି ଦୁରବସ୍ଥା ! ସୁକୁମାର ଫଟୋ ହଜେଇ ଏତେ ଦୁଃଖ ପାଇ ନ ଥିବ, ମୁଁ ଭୁଲ କମ୍ପାର୍ଟ୍‌ମେଣ୍ଟ୍‌ରେ ଚଢ଼ି ଯାହା ପାଇଲିଣି । ମନେ ମନେ ଭାବିଲି, କେହି ଜଣେ ନିରୂପା ରାୟ ବା ମଦର ଟେରିଜା କଣ ଏହି କମ୍ପାର୍ଟ୍‌ମେଣ୍ଟ୍‌ରେ ନାହାନ୍ତି, ଯିଏ କି ମୋ ଦୁଃଖ ବୁଝି ପାରିବ ? ସେଇଠୁ ମନକୁ କ'ଣ ବୁଦ୍ଧି ଆସିଲା, ଭାବିଲି ଟିକେ ହାଇ ଫାଇ ଇଂରାଜୀ କହେ, କାଳେ ଇମ୍ପ୍ରେସ୍‌ଡ୍ ହୋଇଯିବେ ।

ଶେଷରେ ସେୟା ହେଲା । ଜଣେ ଭଦ୍ରମହିଳା ଆଗକୁ ଆସି ଇଂରାଜୀରେ ପଚାରିଲେ – ମୁଁ କେଉଁଠୁ ଆସିଲି, କେଉଁଠାକୁ ଯିବି, ଇତ୍ୟାଦି ।

ମୋଠୁଁ ସବୁ ଶୁଣିଲାପରେ ଭିତରକୁ ଡାକିଲେ । ଚିକେନ୍ ସ୍ୟାଣ୍ଡଉଇଚ୍ ଦେଲେ । ମୋ ଭଳିଆ ପିଲାଟେ ତାଙ୍କ ଉପର ବର୍ଥରୁ ବାହାରିବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କହିଲେ, ସିଏ ତାଙ୍କ ପୁଅ । ଜାଗା ନ ମିଳିବାରୁ ସେଇଠି ଆଡ୍‌ଜଷ୍ଟ କରି ନେଇଛି । ମୁଁ ତା' ପାଖରେ ବସିପାରେ । ଭଦ୍ରମହିଳା ଜଣେ ବ୍ରିଗେଡ଼ିୟର୍‌ଙ୍କ ସ୍ତ୍ରୀ । ପୁଅ ସହ ଖଡ଼୍‌ଗପୁର ଯାଉଛନ୍ତି । ପୁଅକୁ ଆଇ.ଆଇ.ଟି.ରେ ଛାଡ଼ି ପରଦିନ ବମ୍ବେ ଫେରିଆସିବେ ।

'ଓହୋ...' ଏକ ଦୀର୍ଘ ନିଶ୍ୱାସ ମାରିଲି । ନିଦ ଆସିଯାଇଥିଲା, ଜାଣି ପାରିଲିନି । ଜୋତା କୋଉଠି, ହାତରେ ଥିବା ଲାଇଟର୍‌ଟି କେଉଁଠି, ସୁମିତ୍ର/ ସୁକୁମାର କେଉଁଠି, ମୁଁ କେଉଁଠି – କୌଣସି ପ୍ରଶ୍ନ ମୋତେ ବିବ୍ରତ କଲା ନାହିଁ । ଆଗକୁ ମାଡ଼ିଯାଉଥିବା ଅସୁରର ପିଠିରେ ଯେମିତି ମୁଁ ବନ୍ଧା ହୋଇଛି... ପଛଆଡ଼େ ଜଙ୍ଗଲ, ଭୟଙ୍କର ଜନ୍ତୁ,... ବିସ୍ତାରିତ, ସୀମାହୀନ ଅନ୍ଧକାର... ଆଗରେ ଫାଳେ ଆକାଶ । ସେଥିରୁ ଲମ୍ବି ଆସିଛି ପତ୍ରର ପାହାଚ । ମୁଁ ଅସୁର ପିଠିରୁ ଖସିଆସି, ପାହାଚରେ । ଉପରକୁ... ଆହୁରି ଉପରକୁ ଆଣ୍ଠେଇ ଆଣ୍ଠଇ ଚାଲିଛି । ବହୁତ ଉପରକୁ ଉଠିଗଲିଣି... ଆକାଶ କିନ୍ତୁ ସରୁନି... ପାହାଚ ପରେ ପାହାଚ...

କେବଳ ମୁଁ । ଆଉ ମୋ ମନ, ତାର ସମସ୍ତ ଶକ୍ତି ଓ ସାହସ ନେଇ ଶରୀରଟିକୁ ଆଗେଇ ନେଉଛି । ମୁଁ ଉପରକୁ... ଉପରକୁ ମାଡ଼ି ଚାଲିଛି । ଉପରେ ତାରା, ଗଛମାନଙ୍କ ଭିତରେ, ଧରାଦେବା ଦୂରତ୍ୱ ଭିତରେ । ଧରି ହେବ ସେମାନଙ୍କୁ, ମନେ ହେଉଛି,

ଛୁଇଁହେବ... ମୁଁ ଧରିବି, ମୁଁ ନିଜର କରିନେବି ତାରାମାନଙ୍କୁ, ଗ୍ରହମାନଙ୍କୁ, ଆଉ ତାପରେ ଆକାଶର କିଛି ଅଂଶକୁ...

ଓ ତାପରେ ସମ୍ପୂର୍ଣ୍ଣ ଆକାଶକୁ...

## ୪୯

ଶେଷରେ ହଷ୍ଟେଲରେ ମୁଁ । ନିଜ ରୁମ୍ ଭିତରେ । ପାୱାର କଟ୍ । କଲିକତା ବିଭିନ୍ନ କାରଣରୁ ବିଶ୍ୱପ୍ରସିଦ୍ଧ ହୋଇଛି, ମୁଁ ଜାଣେ... ପାୱାରକଟ୍ ସେ' ଭିତରୁ ଗୋଟିଏ 'କାରଣ'– ଅଘୋଷିତ, ଅଚାନକ, ଅନବରତ ପାୱାରକଟ୍, ଟେକ୍‌ନିକାଲି 'ଲୋଡ୍‌ସେଡିଂ' କୁହାଯାଉଛି । ଯେ କୌଣସି ସମୟରେ, ଯେ କୌଣସି ସ୍ଥାନରେ, ଚିହ୍ନା, ଅଚିହ୍ନା ଯେ କୌଣସି ଲୋକ ସହିତ – ଏହା ଆଲୋଚନାର ବିଷୟ ହୋଇପାରେ, ଯେପରିକି ସେଦିନ ଗୋଟେ ବସ୍‌ରେ ମିକ୍ସଚର୍‌ବାଲା କହୁଥିଲା –

'ବାଡ଼ି ନିଏ ଜାନ୍ ଦାଦା, ଲୋଡ୍‌ସେଡିଂ ଟାଇମେ ଭାଲ ଟାଇମ୍ ପାଶ୍ । ଯତ ଘଣ୍ଟା ହଲେ ଓ ଖେତେ ପାର୍ବେନ୍... ସବାଇର୍ ସାଥେ – ମା, ବାବା, ଛେଲେ, ମେ, ଏମ୍ନି ଶଶୁର ମସାଏ, ଶାଶୁରି ସାଥେ ଓ ଖେତେ ପାର୍ବେନ୍ । ନିଏ ଜାନ୍, ଭାଲ ଟାଇମ୍ ପାଶ୍ । ବୋଲୁନ୍ ଦାଦା କତ ଦବ ?'

ତେବେ ମୁଁ ଭାବିଲି, ଠିକ୍ ଅଛି, ପ୍ରତି ସ୍ଥାନରେ ପ୍ଲସ୍ ମାଇନସ୍ ତ ପୁଣି ଅଛି । ରହିବ, ରହିବା କଥା, ଯେମିତି ପ୍ରତି ମଣିଷର ଶକ୍ତି ଓ ଦୁର୍ବଳତା, ଷ୍ଟ୍ରେଙ୍ଗ୍‌ଥ୍ ଯାଣ୍ଡ୍ ଉଇକ୍‌ନେଶ୍ ? ପ୍ଲସ୍ ଯାଣ୍ଡ୍ ମାଇନସ୍ ?

ନିଜକୁ ପଚାରିଲି – ଏହା ଜାଣିସାରିବା ସତ୍ତ୍ୱେ ଆମେ କାହିଁକି ଜଣକର ଦୁର୍ବଳତା ଲାଗି ତାକୁ ବାରିବା, ଘୃଣା କରିବା ? ଆଉ ଜଣକର ଶକ୍ତି ବା ସାମର୍ଥ୍ୟ ପ୍ରତି ଈର୍ଷା କରିବା, ଅସହିଷ୍ଣୁ ଭାବ ପ୍ରକାଶ କରିବା ?

ଜଣେ ପୁରା ଭଲ, ଆଉ ଜଣେ ପୁରା ଖରାପ ?

କୌଣସି ଲୋକକୁ ଆମେ ପୁରା ଦେଖୁଛେ କି ? ଦେଖିବାର ଇଚ୍ଛା ଓ ସମୟ ଅଛି କି ? ଯଦି ବା ଦେଖୁଛେ, ଯେତେବେଳେ ଦେଖୁଛେ, କ'ଣ ଦେଖୁଛେ ?

ଆମେ ଖାଲି ଜଣକୁ ପୁରା ନଦେଖି, କିଛି ଅଂଶ ଦେଖି, କିଛି ପରିସ୍ଥିତି ଦେଖି 'ଭଲ' ବା 'ମନ୍ଦ' କହିଥାଉଁ ଏବଂ ଏହି ବିଚାରଧାରାକୁ ଜୀବନଯାକ ଜାବୁଡ଼ି ଧରି ଥାଉଁ । ପରିବର୍ତ୍ତନ କରିବାର ଆବଶ୍ୟକତା ଥିଲେ ବି ସେମିତି ଜାବୁଡ଼ି ଧରିଥାଉଁ ।

କାରଣ ଜାବୁଡ଼ି ଧରିବାରେ ଆନନ୍ଦ ଅଛି, ଜାବୁଡ଼ି ଧରିବାରେ ନିରାପତ୍ତା ଅଛି । କୌଣସି ହେଲେ ପରିସ୍ଥିତିରେ ପରିବର୍ତ୍ତନ ନ ଆଣିବାରେ ଆନନ୍ଦ ଅଛି । ସ୍ଥିତାବସ୍ଥା ବା 'ଷ୍ଟେଟସ୍-କୋ' ସହିତ ଆମର ଆଜନ୍ମ ପରିଚୟ ଓ ବନ୍ଧୁତା । କଥାରେ କହୁ ପରିବର୍ତ୍ତନର କଥା, ବିପ୍ଳବର କଥା, କିନ୍ତୁ ନିଜ ଜୀବନରେ, ପରିଚିତ, ସମସ୍ତେ କେବେ ସନ୍ଦେହ ନ କରି, ପ୍ରଶ୍ନ ନ କରି, ବ୍ୟବହାର କରୁଥିବା ଅସଙ୍ଗତ, ଦୁର୍ବଳ ଚିନ୍ତାଧାରାକୁ ଗ୍ରହଣ କରିଥାଉ ।

କିନ୍ତୁ ବାସ୍ତବରେ, ଜଣେ ଲୋକର ତଥାକଥିତ 'ଭଲ' ଓ 'ଖରାପ' ର ସଂଜ୍ଞା ବାହାରକୁ ନ ଗଲେ, ତାକୁ ବୁଝି ହେବନି ।

ଭାବିଲି କାହାର ସମୟ ଅଛି ତଳେଇ କରି ଦେଖିବାକୁ ଘଟଣାଟିକୁ, ମଣିଷଟିକୁ ? କାହାର ବା ଇଚ୍ଛା ଅଛି ?

ସ୍କୁଲଦିନ କଥା ପୁଣି ମନେ ପଡ଼ିଗଲା – ଘରୁ ରାତିରେ ଅବ୍ଦୁଲ୍ କେମିତି ବହିପରି ପ୍ୟାକିଂ କରି ମଟନ୍ ବିରିୟାନି ସ୍କୁଲ ଭିତରକୁ, କ୍ଲାସ ଭିତରକୁ ନେଇ ଆସୁଥିଲା ! ଆମେ ଦୁହେଁ କେମିତି ଭିତରେ ଡରି ଡରି, ଉପରେ ଖୁବ୍ ଖୁସି ହୋଇ ଖାଉଥିଲୁ ! ଘଟଣାଟିକୁ ପରୀକ୍ଷାକଲେ ମୁଁ ଏବେ ଦେଖିପାରୁଛି ଯେ କୌଣସି ଘଟଣାକୁ ବୁଝିବାର, ବିଚାର କରିବାର କେବଳ ଗୋଟିଏ ଦିଗ ନାହିଁ, ଏକାଧିକ ଦିଗ ଅଛି, ଯେମିତିକି, ସେହି ସମୟରେ ଚିନ୍ତାଧାରାକୁ ନିୟନ୍ତ୍ରଣ କରୁଥିବା, ସେହି ସମୟର, ସେହି ବୟସର ଚାପଲ୍ୟ, ଯାହା ଭିତରେ ରହିଥିଲା, କିଛିଟା ବୁଝିହେବା ଓ କିଛିଟା ବୁଝି ନହେବାର ଆନନ୍ଦ ।

ଚପଳତା କେତେ ଶୀଘ୍ର ହଜିଯାଏ ! ନଷ୍ଟ ହୁଏନା, ଖାଲି ହଜିଯାଏ । ବୟସରେ ଆମେ ଯେଉଁ ବଢ଼ିଚାଲୁ, ତାହା ଖାଲି ଶୈଶବରେ ହଜି ଯାଇଥିବା ଚପଳତାକୁ ଖୋଜିବାର ଯାତ୍ରା । ଏହି ଯାତ୍ରାରେ ସମସ୍ତେ ପଥିକ – ସମୀକ୍ଷା, ଶରତ, ଅବ୍ଦୁଲ୍, ରତନସାର୍, ବାପା, ଆରିୟାନା, ଶିଳ୍ପୀ ରାମକିଙ୍କର୍, ଆଚାର୍ଯ୍ୟ ରାଜନୀଶ୍ – ସମସ୍ତେ ।

କିଛି ହଜେଇଥିବା ସହିତ ଏହି ଯାତ୍ରାରେ ଆମେ ମଧ୍ୟ କିଛି ପାଉ । ତେଣୁ, ଯାତ୍ରା ଭଲ ଲାଗେ । ଇଂରାଜୀରେ ଏହାକୁ କହନ୍ତି 'ଇଟ୍ କିପ୍ସ ଅସ୍ ଗୋଇଙ୍ଗ୍... ଦାଟ୍ସ୍ ହ୍ୱାଇ, ଉଇ ଆର୍ ହ୍ୱାଟ୍ ଉଇ ଆର୍...'

'ତେବେ ପାଉ କ'ଣ ?' – ପ୍ରଶ୍ନ ଆସେ ।

ପାଉ ନୂଆ ନୂଆ ଅଭିଜ୍ଞତା, ନୂଆ ନୂଆ ଭାବନା । ଘଟଣାବହୁଳ ଜୀବନ ମୋତେ ଭଲ ଲାଗେ, ପିଲାଦିନୁଁ, ସବୁବେଳେ । କିନ୍ତୁ ସ୍କୁଲରେ ପଢ଼ିବାବେଳେ ମୁଁ ଜାଣି ପାରି ନଥିଲି, 'ଘଟଣାବହୁଳ' ମାନେ 'ସମସ୍ୟାବହୁଳ'... ଶାନ୍ତିରେ ସେ ଜୀବନ ରଖି ଥୋଇ

ଦେବନି । ଖାଲି ଘଟଣା ଖୋଜୁଥିବ । ଘଟଣାଟିକୁ ଘଟେଇବାକୁ ଅପେକ୍ଷା କରି ରହିଥିବ । କାହିଁକିନା ମୁଁ କୁଆଡ଼େ ଦିନେ ନା ଦିନେ ଲେଖକ ହେବି, ବଡ଼ ଜଣେ ଲେଖକ, ବହୁତ ବଡ଼, ହୋଲ୍‌ଟାଇମ୍ ରାଇଟର୍ । ଜୀବନରେ ଆଉ କିଛି କରିବିନି, ଖାଲି ଲେଖିଯିବି ।

ହଠାତ୍ ଲାଇଟ୍ ଆସିଗଲା । ଆଖିପଡ଼ିଲା ଟେବୁଲ୍ ଉପରେ ଖଣ୍ଡେ ଚିଠିରେ ପରିଚିତ ହସ୍ତାକ୍ଷର :

'ଚିଠିଟି ଦେଖି ଆଶ୍ଚର୍ଯ୍ୟ ହେଲ ନିଶ୍ଚୟ ? ସମ୍ବୋଧନ ନ ଥାଇ ଚିଠିଟିଏ – କେମିତି ଲାଗୁଛି ? ଭାବୁଥିବ ଜାଣିଶୁଣି ମୁଁ ସମ୍ବୋଧନଟା ଛାଡ଼ିଦେଇଛି । ନା, ତା ସତ ନୁହେଁ । ଛାଡ଼ିଦେବାର କାରଣ, ନ ଲେଖିବାର କାରଣ – ଅତି ସହଜ । ପରୀକ୍ଷାରେ କଷ୍ଟ ପ୍ରଶ୍ନଟିକୁ ଆମେ କାହିଁକି ଛାଡ଼ି ଦେଉ ? (ଅବଶ୍ୟ କିଛି ପିଲା ଉତ୍ତର ନ ଜାଣି ବି ଯାଦୁ ସ୍ୟାଦୁ ଲେଖି ଖାତା ଭର୍ତ୍ତି କରିଦିଅନ୍ତି... ନୁହେଁ ? ତମେ କିନ୍ତୁ ସେଭଳି କରନା, ମୁଁ ଜାଣିଛି । ମୁଁ ବି କରେନା, ତମେ ଜାଣିଛ, ତେଣୁ) ଉତ୍ତର ଠିକ୍ ଜାଣି ନଥାଉ ବୋଲି । ସେମିତି ମୁଁ ଠିକ୍ ଜାଣି ପାରିଲିନି କ'ଣ ବୋଲି ସମ୍ବୋଧନ କରିବି – ତୁମକୁ । ଯାହା କଲେ ବି ଭୁଲ ହେବ ଭାବିଲି । ତେଣୁ ଛାଡ଼ି ଦେଲି । ତମେ ତ ଭିନ୍ନ କିସମର ମଣିଷ – ଔପଚାରିକତାରେ ବିଶ୍ୱାସ ନାହିଁ ତମର । ତେଣୁ ଛାଡ଼ି ଦେଲି ।

ଏବେ ଆସିବି ଚିଠିର ଦ୍ୱିତୀୟ ପର୍ଯ୍ୟାୟକୁ – ଯଥା, ଲେଖିଲି କାହିଁକି । କାରଣ କଣ ? କାରଣ ନଥିଲେ ଅନେକ ଘଟଣା ବୁଝିହୁଏନା ବୋଧେ । କାରଣ ନଥିଲେ ମୁଁ ଭାବେ କୌଣସି ଘଟଣାର ସୂତ୍ରପାତ ତ ହୋଇ ପାରେନା । ଯେପରିକି, ଫରାସୀ ବିପ୍ଳବ, ବିଶ୍ୱଯୁଦ୍ଧ । ସ୍କୁଲରେ ପଢ଼ିଲାବେଳେ ଚିଲିକା କୂଳରେ ଯେତେବେଳେ ଆମେ ଦୁହେଁ ବସିଥିଲେ – ମନେ ପଡୁଛି ? ସୂର୍ଯ୍ୟ ଅସ୍ତ ହେବା ଉପରେ... ଆମ ଉଭୟଙ୍କ ଗୋଡ଼ ପାଣି ଭିତରେ ଛନ୍ଦି ହୋଇ ଯାଇଥିଲା... ଚାରୋଟି ହାତ ଦୁଇଟି ଶରୀରର ବିଭିନ୍ନ ଅଂଶକୁ ଅନ୍ଧାରରେ ଖୋଜୁ ଖୋଜୁ, ଅନୁଭବ କରୁ କରୁ... ମନେ ପଡୁଛି ? ଶରୀରର ସେ ଉତ୍ତାପ ଶରୀର ଭିତରେ ହିଁ ମୁଁ ଆବଦ୍ଧ କରି ରଖିଥିଲି, ମନ ଭିତରକୁ ଆଣି ନଥିଲି । ତୁମେ ଖୋଜୁଥିଲ ଧୀରେ ଧୀରେ ମୋ କାନ ପାଖରେ, ମୋ ଓଠ ପାଖରେ – ଏ ଉତ୍ତେଜନା ପାଇଁ ଭାଷା ଓ ଶବ୍ଦ... ଯାହା କହିଥିଲେ ବି ଉଚ୍ଚାରଣ ଭୁଲ ହୋଇଥା'ନ୍ତା ।

ମୁଁ ତୁମ ଅସ୍ଥିର ଆଙ୍ଗୁଠି ଗୁଡ଼ିକୁ ମୋ ପାଟି ଭିତରେ ସ୍ଥିର ରଖି କହିଥିଲି – 'ଉତ୍ତେଜନାର ଭାଷା ବୁଝିବା ପାଇଁ ସାରା ଜୀବନ ପଡ଼ିଛି । ଆମେ ଗୋଟିଏ ଦୁଇଟି ବଖରା ଦେଖି ସମ୍ପୂର୍ଣ୍ଣ ଘରଟି ବିଷୟରେ କିଛି କହିପାରିବା ?'

ସେହି ସ୍କୁଲପଢ଼ା ଝିଅଟି କିଛି ବର୍ଷ ପାଇଁ ହଜି ଯାଇଥିଲା । ପୁଣି ବସ୍‌ରେ ହଠାତ୍ ଦେଖା । ତାପରେ ପ୍ରତି ସପ୍ତାହରେ ଚିଠି ଦିଆ ନିଆ । ଯେତେ ବହି ସବୁ ପଢୁଥିଲ ସେ ସବୁ ବିଷୟରେ ମୋତେ ତୁମେ ଲେଖୁଥିଲ । ମୁଁ ଯେତେ ନୂଆ ସାଙ୍ଗ କରୁଥିଲି ସେମାନଙ୍କ ବିଷୟରେ ତୁମକୁ ଲେଖୁଥିଲି । ମନେ ଅଛି ?, କଲିକତାରେ ମେଡିକାଲ୍ କଲେଜରେ ପଢୁଥିଲାବେଳେ ମୋତେ ପ୍ରପୋଜ୍ କରିଥିଲା ଅଗରତୋଲାର ପିଲାଟିଏ ? ବେଶ୍ ଲମ୍ବା ଚଉଡ଼ା, ଭଦ୍ର, ନମ୍ର ପିଲାଟି । ମନେ ଥିବ ତମର ? ମୋ ଜନ୍ମ ଦିନରେ ଓବିରଏ ଗ୍ରାଣ୍ଡ ହୋଟେଲ୍‌ରେ ପାର୍ଟି ଦେଇଥିଲା ? ଆଉ ଏକଦମ୍ ଭିକ୍ଟୋରିୟାନ୍ ଷ୍ଟାଇଲ୍‌ରେ ଫେରିଲାବେଳେ ଟାକ୍ସିରେ ଅନ୍ଧାର ଭିତରେ କିସ୍ କରିବା ପାଇଁ ମୋ ଅନୁମତି ମାଗିଲା ? ମୁଁ ଯେତେବେଳେ ହସିଲି, ସେ ଗମ୍ଭୀର ହୋଇଗଲା । ମୁଁ କାହିଁକି ହସୁଥିଲି କେଜାଣି... ବୋଧେ ବିଅର୍ ଦିଟା ପି' ଦେଇଥିଲି ତ... ଟିପ୍ସି ଲାଗୁଥିଲା ଟିକେ ଟିକେ.... ସେଇଥିପାଇଁ । କିସ୍ କରିଥିଲେ ମୁଁ କିନ୍ତୁ ମାଇଣ୍ଡ୍ କରି ନଥାନ୍ତି, ସେତେବେଳର ଅବସ୍ଥା ସେୟା ଥିଲା । ଏ ବିଷୟ ତୁମକୁ କହିଲାବେଳେ ତୁମେ ଖୁବ୍ ଅନ୍ୟମନସ୍କ ଥିଲ ( ? )

ମନେ ପଡୁଛି ?

ସତ୍ୟଜିତ ରାୟ ନା ଡେଭିଡ୍ ଲିନ୍– କା' କଥା ଗୋଟେ କହୁଥିଲ... ଟାକ୍ସିଭିତରେ । ଆମେ ଯାଉଥିଲେ, ଗର୍କି ସଦନ ଆଡ଼େ ଗୁଣ୍ଟର୍ ଗ୍ରାସ୍‌ଙ୍କ 'ଟିନ୍‌ଡ୍ରମ୍' ଦେଖିବାପାଇଁ । ଆଉ ସେ ସିନ୍‌ଟା ଭୁଲି ପାରିବିନି ? ଖୋଲା ଖୋଲି ଦୁଇଟି ଚରିତ୍ର ଏଭଳି କରିପାରନ୍ତି ? ବିବାହପରେ ମଧ୍ୟ ମୁଁ ମୋ ସ୍ୱାମୀଙ୍କ ସହ କେବେହେଲେ ଏମିତି କରିପାରିବିନି... ଛି... ! ତମେ ହସିଥିଲ, ତୁମ ଆଖିଥିଲା ସିଧା ସ୍କ୍ରିନ୍ ଉପରେ, ମୁଁ କିନ୍ତୁ ଲାଜରେ ଆଖି ତଳକୁ କରି ଦେଇଥିଲି, ମର୍ଡ଼ର୍ ସିନ୍ ଦେଖିଲାପରି । ତୁମକୁ କହିଥିଲି – 'ସରିଗଲେ କହିବ' । ତମେ ଏଡ଼େ ବଦ୍‌ମାସ୍ – କହିଥିଲ, 'ସବୁ ସରିଗଲାଣି... ଏଥର ଦେଖ' । ମୁଁ ସ୍କ୍ରିନ୍ ଆଡକୁ ଅନାଇଲା ବେଳକୁ... ଇସ୍, ସେୟା ଚାଲିଛି । ମୁଁ ଏଥର କିନ୍ତୁ ଆଖି ତଳକୁ ନେଲି ନାହିଁ । ଦେଖିଲି । ତାପରେ ସେମିତି କିଛି ଖରାପ ଲାଗିଲା ନାହିଁ । କ୍ୟାମେରା ପୁରୁଷ ଓ ସ୍ତ୍ରୀ ଦୁଇଜଣଙ୍କ ଶାରୀରିକ ଓ ମାନସିକ ଉତ୍ତେଜନାର ବିଭିନ୍ନ ନକ୍ସାକୁ ଏକ ସ୍ୱତନ୍ତ୍ର ଭାଷାରେ ପରିଣତ କରିପାରିବା କିଛି କମ୍ କଥା ନୁହେଁ । ଏହି ଛବିଟି ଜର୍ମାନୀ ତଥା ଆମେରିକା ଓ ସମଗ୍ର ୟୁରୋପରେ ଉଚ୍ଚ ପ୍ରଶଂସିତ ହୋଇଥିଲା । ଉପନ୍ୟାସ 'ଟିନ୍‌ଡ୍ରମ୍' ତ କ୍ଲାସିକ୍ ହେଇସାରିଥିଲା, ନୋବେଲ୍ ପ୍ରାଇଜ୍ ପାଇଲାଭଳି ଉପନ୍ୟାସଟିଏ ।

'ଭଲ ପାଇବା' କଣ, ଆମେ କେତେ ଆଲୋଚନା କରିଛେ । ଥରେ ବି ତମେ ମୋତେ ଲେଖିଥିଲ, ମୁଁ କେବେ କାହାକୁ ଭଲପାଇଛି କି ? ମୁଁ କଥାଟାକୁ ଏଡ଼େଇ ଦେଇଥିଲି ସତ, କିନ୍ତୁ, ନିଜକୁ ଅନେକ ଥର ପଚାରିଛି, ଆଉ ଉତ୍ତର ପାଇନି । ମାନସିକ ସ୍ତରରେ... ହଁ, ତମେ ତ କହିଛ, ତମେ ସୁଚିତ୍ରା ସେନ୍‌କୁ ଭଲ ପାଇଛ, ସେକ୍ସପିୟରଙ୍କ ପୋର୍ସିୟାକୁ ଭଲ ପାଇଛ । ଆଉ ମୁଁ ?

ତମକୁ ଭଲ ପାଇଛି ? ବୋଧେ ! ଭଲ ପାଇବା କଥା ଉଠିଲେ ଏରିକ୍ ଫ୍ରମ୍‌ଙ୍କ 'ଆର୍ଟ୍ ଅଫ୍ ଲଭିଂ' କଥା ମନେ ପଡ଼େ । ସେ ବହିଟା କଲେଜ ଷ୍ଟ୍ରିଟ୍‌ରୁ କିଣି ମତେ ଦେଇଥିଲ, ଜନ୍ମଦିନରେ, ମନେ ପଡୁଛି ? ଆଉ ମୁଁ ତମ ଜନ୍ମଦିନରେ ପଠେଇଥିଲି ଲରେନ୍ସଙ୍କ 'ସନ୍ସ୍ ଏଣ୍ଡ୍ ଲଭର୍ସ୍ ?' ଏଇଟା ସିମ୍ବଲିକ୍ ସ୍ତରରେ ଆମର ଭଲ୍ ପାଇବା, ନୁହେଁ ?

ତା ପରେ ତମ ଚିଠି ସବୁ ତ କୋଟେସନ୍‌ରେ ଆରମ୍ଭ ହୁଏ, ପୁଣି କୋଟେସନ୍‌ରେ ହିଁ ସରେ । ବେଳେ ବେଳେ ଲମ୍ବା, ସାଧା ପୃଷ୍ଠାଟି ଆସେ । ମୁଁ ଅସ୍ଥିର ହୋଇ ଖୋଲିଲା ବେଳକୁ ସେଥିରୁ ବାହାରେ ଟାଇପ୍‌କରା ଗୋଟିଏ ବାକ୍ୟ – କାଫ୍‌କାଙ୍କ ମିଲେନାଙ୍କୁ ଲେଖିଥିବା ଚିଠିର ଧାଡ଼ିଏ ବା ହେନ୍‌ରୀ ମିଲରଙ୍କ ବ୍ରେଣ୍ଡାଙ୍କୁ ଲେଖିଥବା ଚିଠିର କିଛି ଅଂଶ । ମୋ' ରୁମ୍‌ମେଟ୍, ରଚନା ଶ୍ରୀବାସ୍ତବ କେତେଥର ଟିପିନେଇଛି ସେ ଧାଡ଼ିଗୁଡା... ସବୁ ମନେ ପଡ଼ି ଯାଉଛି ମୋର ।'

ବାପ୍‌ରେ ବାପ୍... ଚିଠି, ପୁଣି ସମୀକ୍ଷାଠାରୁ ଏମିତି ଚିଠି ? ମୁଁ କଳ୍ପନା କରି ପାରି ନଥିଲି । ନା ଥାଉ, ଭଲ ଲାଗୁଛି, ପରେ ପଢ଼ିବି । ରାତି ପାଇଁ ଥାଉ । ଆହୁରି ଦୁଇ ପୃଷ୍ଠା ଥିଲା ପରି ମନେ ହୁଏ... ଦେଖେ । ନା ଆହୁରି ବେଶୀ ଅଛି । ଏଥିପାଇଁ ସ୍ୱତନ୍ତ୍ର ସମୟ ଦରକାର । ସ୍ୱତନ୍ତ୍ର ସମୟ ବାହାର କରିବାକୁ ପଡ଼ିବ । ଡିପାର୍ଟମେଣ୍ଟ ଯାଇନି ଏତେ ଦିନ । ୟୁନିୟନ୍ କାମ ବି ବାକି ପଡ଼ିଛି । ପ୍ରକ୍ଟରଙ୍କୁ ଦେଖା କରିବାକୁ ପଡ଼ିବ । ପୁନା ଫେଷ୍ଟିଭାଲ୍ ରିପୋର୍ଟ ଦେବାକୁ ପଡ଼ିବ । ତାପରେ ପୁଣି କନ୍‌ଭୋକେସନ୍ ମୁଣ୍ଡ ଉପରେ । ଇନ୍ଦିରା ଗାନ୍ଧି ସବୁ ବର୍ଷପରି ଏବର୍ଷ ବି ଆସିବେ । ଭିଜିଟର୍ସ୍ କାର୍ଡ୍ ପାଶ୍ ଛପେଇବାକୁ ପଡ଼ିବ । ଏଥରକ ଶହେ ଖଣ୍ଡେ ବେଶି, ନହେଲେ ଗଲାବର୍ଷ ପରି ଶେଷମୁହୂର୍ତ୍ତରେ ଭି.ଭି.ଆଇ.ପି. କେଉଁଠି ଥିବେ, ସବୁ ମାଡ଼ି ଆସିବେ । ସିଏ ପୁଣି କଣ ଜଣେ ଦିଜଣ ? ପୁରା ଫ୍ୟାମିଲି, ବନ୍ଧୁଙ୍କ ସହ । ଆଡ୍‌ଜଷ୍ଟ କର, ହଷ୍ଟେଲରେ ରହିବା ବ୍ୟବସ୍ଥା କର, ଗେଷ୍ଟ୍ ହାଉସ୍‌ରେ ଏକ୍ସଟ୍ରାବେଡ୍ ପକାଅ... ଇତ୍ୟାଦି । ଭାଇସ୍‌ଚାନ୍‌ସେଲର୍ ତ ଆଗରୁ କିଛି କରିବେନି, ଶେଷ ଆଡ଼କୁ ବ୍ୟସ୍ତ ହେବେ, ଆମ ୟୁନିୟନ୍ ଉପରେ ଚାପ ପଡ଼ିବ ।

ତା ପରେ ପୁଣି ପ୍ରଧାନମନ୍ତ୍ରୀଙ୍କ ସେକ୍ୟୁରିଟି ଷ୍ଟାଫ୍ – ଯାବତୀୟ ହଇରାଣ କରିବେ । ପଶ୍ଚିମବଙ୍ଗ ଫ୍ରଣ୍ଟ ସରକାର ତ ସବୁବେଳେ କଂଗ୍ରେସବିରୋଧୀ, ସେମାନଙ୍କ ସହଯୋଗ ଖାଲି ଖାତା କାଗଜରେ, ବାସ୍ତବରେ ନୁହେଁ । ଭିତରେ ଭିତରେ କ'ଣ ସବୁ ଷଡ଼ଯନ୍ତ୍ର ଚାଲିଥିବ, କେଜାଣି ? କିଛି ସୁବିଧା ଜଣା ପଡୁନି । ପୁଣି ନକ୍ସାଲାଇଟ୍ କାର୍ଯ୍ୟକ୍ରମ ବିହାର-ବେଂଗଲ-ଓଡ଼ିଶା-ଆନ୍ଧ୍ରା ବେଲ୍ଟରେ ଚାଲିଛି । କ'ଣ ଯେ କେତେବେଳେ ଘଟିବ, କେହି କହି ପାରିବେନି । ଅନ୍ତତଃ ଗତବର୍ଷ କନ୍‌ଭୋକେସନ୍‌ରେ ବୋମାମାଡ଼ ଘଟଣାର ଯେପରି ପୁନରାବୃତ୍ତି ନ ଘଟୁ ।

ଯାଏ, ଭୋକ ହେଲାଣି । କିଛି ଖାଇନିଏ । କିଚେନ୍‌ରେ ଗୋବିନ୍ଦଟା କ'ଣ କରୁଛି କେଜାଣି ? ସିହ୍ନାରୁମ୍ ଆଡ଼କୁ ଅନେଇଲି । ବହୁତ ଦିନ ହେଲା ଦେଖା ହୋଇନି । କେମିତି କେମିତି ଲାଗୁଛି । ଯାଏ... ଦେଖାଟା କରି ଦେଇ ଆସେ ?

ନା, ଥାଉ । ଆଗ ଗାଧାପାଧା କରି ଟିକେ ଫ୍ରେସ୍ ହୋଇଯାଏ, ତାପରେ ଦେଖିବା । ଚିଠିଟା ପୁଣି ପଢ଼ିବାକୁ ଇଛା ହେଲାଣି । କଣ କରିବି ଭାବି ଚାଲିଛି । ନା, ଏମିତି ଅଧୈର୍ଯ୍ୟ ହେଲେ ଚଳିବ ? ସସ୍‌ପେନ୍ସଟା ନଷ୍ଟ ହୋଇଯିବ ଯେ !

ସମୀକ୍ଷା ଏତେ ସୁନ୍ଦର ଲେଖିପାରେ ? କାଇଁ ଆଗରୁ ଏତେ ଚିଠି ଲେଖୁଥିଲା, ଏମିତି ତ କେବେ ଲେଖିନି ?

କ'ଣ ହଠାତ୍ ବଡ଼ ହେଇଗଲା ? ଜୀବନକୁ ବୁଝିଗଲା ? ତାର-ମୋର ସମ୍ପର୍କକୁ ବୁଝେଇବାକୁ ଲାଗିଲାଣି ? ସମ୍ପର୍କ ତ ପୁଣି ସେ ଦିନର, ସ୍କୁଲଜୀବନର ଖାଲି ଚିଠି ଦିଆ ନିଆର ଆଉ ନାହିଁ ?

ଉଃ... ଏତେ ପାଣି ହଠାତ୍ ବାଥ୍‌ରୁମ୍ ସାୱାର୍‌ରୁ କେମିତି ବାହାରି ଆସିଲା ? ମୁଁ ଟ୍ୟାପ୍‌କୁ କମେଇ ଦେଲି ।

ବାହାରେ ପାଟି ଶୁଭିଲା – 'କି ବ୍ୟାପାର୍ ? ଟେପ୍‌ଟା ରିୱାଇଣ୍ଡ୍ ନା ଫରୱାର୍ଡ଼ ଚଲ୍‌ଛେ ?'. ସିହ୍ନାର କଣ୍ଠସ୍ୱର ।

'ସବ୍‌ଗୁଲ ପାର୍ଟ୍‌ସ୍ – ମନେର୍, ଆର୍ ଶରୀରେର୍ – ନିଏ ଏସେଛ, ନା କିଛୁ ପୁନାତେ ଛେଡ଼େଦିଏ ଏସେଛ ?'

ମୁଁ ଅଧା କବାଟ ଖୋଲି ପ୍ରାୟ ଏକପ୍ରକାର ଉଲଗ୍ନ ଅବସ୍ଥାରେ ସିହ୍ନାସହ ହାତ ମିଳେଇଲି । ସାଙ୍ଗେ ସାଙ୍ଗେ ଠିକ୍ ହେଇଗଲା – ରାତିରେ ଡିନର୍ ପରେ ପାର୍ଟି, ସିହ୍ନା ରୁମ୍‌ରେ । ସୁକୁମାର, ସୁମିତ୍ର, ସିହ୍ନା ଆଉ ମୁଁ... ସୁକୁମାର କେତେ କଣ୍ଟିସନ୍ କରିବ !

କହିବ ଅଞ୍ଜନାକୁ ଡାକିବା, ହାର୍ଡ୍ ଡ୍ରିଙ୍କସ୍ ଚଳିବନି, କେବଳ ସଫ୍ଟ, ମାନେ କେବଳ ବିଅର୍ । ସିହ୍ନା କହିବ (ମୁଁ ଜାଣେ), 'ନା, ମୁଁ ବୃଦ୍ଧ ସନ୍ୟାସୀଙ୍କୁ ଧୋକା ଦେବି ? ମାନେ 'ଓଲ୍ଡ୍ ମଙ୍କ୍' ରମ୍‌କୁ ? ଅସମ୍ଭବ ?' ଶେଷରେ କଣ ଗୋଟାଏ କମ୍ପ୍ରମାଇଜ୍ ଫର୍ମୁଲା ଟାଣି ଓଟାରି ବାହାର କରିବାକୁ ପଡ଼ିବ । ସେସବୁ ସୁମିତ୍ର ଉପରେ ଛାଡ଼ିଦେଇ, ମୁଁ ଅନ୍ୟ କଥା ଭାବିବାକୁ ଚେଷ୍ଟା କରି ବାଥ୍‌ରୁମ୍‌ରୁ ବାହାରିଲି ।

## ୫୦

ବିଶ୍ୱଭାରତୀ ୟୁନିଭର୍ସିଟି କନ୍‌ଭୋକେସନ୍ ଏକ ବଡ଼ ଧରଣର ଘଟଣା, ଯେହେତୁ ୟୁନିଭର୍ସିଟିର ଚାନ୍‌ସେଲର୍ ନିଜେ ଦେଶର ପ୍ରଧାନମନ୍ତ୍ରୀ – ନେହେରୁଙ୍କ ବେଳୁ । ତାପରେ ବିଶ୍ୱଭାରତୀ ପୁଣି ଗୋଟାଏ ସେଣ୍ଟ୍ରାଲ୍ ୟୁନିଭର୍ସିଟ, ବାକି ଚାରୋଟି – ଦିଲ୍ଲୀ, ଜାମିଆ ମିଲିଆ, ଆଲିଗଡ଼୍ ଓ ବନାରସ୍ ହିନ୍ଦୁ ୟୁନିଭର୍ସିଟି । ଶୁଣିଛି ଏକ ସାଧାରଣ ୟୁନିଭର୍ସିଟିର ସାତଗୁଣ ଟଙ୍କା ବିଶ୍ୱଭାରତୀକୁ ଦିଆଯାଏ । ତେଣୁ ଏଭଳି ଏକ ୟୁନିଭର୍ସିଟିର କନ୍‌ଭୋକେସନ୍‌ରେ ଯାହାସବୁ ହବାକଥା ! ପଶ୍ଚିମବଙ୍ଗ ଗଭର୍ଣ୍ଣର୍ ଧର୍ମବୀର ଆସିଲେ, ନନ୍ଦିନୀ ଶତପଥି କେନ୍ଦ୍ରରେ ମନ୍ତ୍ରୀ ଥିଲେ, ସିଏ ବି ଆସିଲେ । ଫୁଲରେଣୁ ଗୁହା, ସରକାରଙ୍କ ବୈଜ୍ଞାନିକ ପରାମର୍ଶଦାତା ଡଃ ବି.ଡି. ନାଗଚଉଧୁରୀ ଇନ୍ଦିରା ଗାନ୍ଧିଙ୍କ ସହ ଆସିଲେ । ବି.ବି.ସି., ଭଏସ୍ ଅଫ୍ ଆମେରିକା (ଭି.ଓ.ଏ.) ତଥା ଭାରତର ସବୁ ବଡ଼ ବଡ଼ ସମ୍ବାଦପତ୍ରର ପ୍ରତିନିଧି, ସୁପ୍ରିମ୍ କୋର୍ଟ ଓ ବିଭିନ୍ନ ହାଇକୋର୍ଟର ପ୍ରାକ୍ତନ ବିଚାରପତିଙ୍କ ଛଡ଼ା ପ୍ରାୟ ଚାରିହଜାର ୟୁନିଫର୍ମ୍ ଓ ସାଧାପୋଷାକଧାରୀ ପ୍ରଧାନମନ୍ତ୍ରୀଙ୍କ ସେକ୍ୟୁରିଟି ଷ୍ଟାଫ୍ । ଶାନ୍ତିନିକେତନ କ୍ୟାମ୍ପସ୍ ଖାଲି ଉଠୁଥାଏ, ପଡୁଥାଏ ।

ତାପରେ ଠିକ୍ ଏହି ସମୟରେ ଶାନ୍ତିନିକେତନରେ ପୌଷମେଳା – ହଜାର ହଜାର ପର୍ଯ୍ୟଟକ, ପୂର୍ଣ୍ଣଦାସଙ୍କ ବାଉଲ୍, ପି.ସି. ସର୍କାରଙ୍କ ମ୍ୟାଜିକ୍ ସୋ' । ସନ୍ଧ୍ୟାରେ ସେଦିନ ଆମ କ୍ୟାଣ୍ଟିନ୍‌ରେ ସତ୍ୟଜିତ୍ ରାୟ, ସୌମିତ୍ର ଚାଟାର୍ଜୀ... କଳାଭବନରେ ପଲେ ଝିଅ ଘେରି ରହିଛନ୍ତି । ଆସ୍ତେ କରି ସୌମିତ୍ରଦା ପାଖକୁ ମୁଁ ମାଡ଼ି ଗଲାବେଳକୁ ମୋ ହାତ ପଛରୁ କିଏ ଟାଣିଲା । ଅନେଇଲାରୁ ଡେଲ୍‌ଫି ! ଯେ ପୁଣି ଏଠି ସାମିଲ୍ ହୋଇଯାଇଛି ? କ'ଣ ଗୋଟାଏ ସ୍କେଚ୍‌ଧରି ଅଞ୍ଜନା ସତ୍ୟଜିତ୍ ରାୟଙ୍କ ପାଖରେ । ଡେଲ୍‌ଫିକୁ 'ଟିକେ ରହ' କହି ମୁଁ ସୌମିତ୍ରଦା' ଆଡ଼କୁ ମାଡ଼ିଗଲି । ପାଖରେ ପଚାରିଲି –

'କୁଥାଏ ଉଠେଛେନ୍ ? ଆମି ଏଖାନ୍‌କାର୍ ୟୁନିୟନ୍ ପ୍ରେସିଡେଣ୍ଟ... ଯାକ୍‌ଟୁ କଥା ଆଛେ'

'ଇଣ୍ଟର୍ନାସନାଲ୍ ଗେଷ୍ଟ ହାଉସେ, ରୁମ୍ ତେର, ରାତ୍ରିବେଳା ଏସ, ଆଲାପ୍ କର୍ବ, କେମନ୍ ?'

'ଠିକ୍ ଆଛେ' କହି ମୁଁ ଖସିଲି । ଏ ଗହଳିରେ ରାୟଙ୍କ ସହିତ କିଛି କଥାବାର୍ତ୍ତା କରି ହେବନି । 'କଳାଭବନ'ର ସେ ପୁରୁଣା ଛାତ୍ର, ତେଣୁ କଳାଭବନ ପିଲାଙ୍କ ସହ ସେ ଥାଆନ୍ତୁ । ପରଦିନ ତ ଡିନ୍ନର୍ ଅଛି – ଓଲ୍ଡ ବଏଜ୍ ଆସୋସିଏସନ୍ (ଓ.ବି.ଏ.), ସେଇଠି ସତ୍ୟଜିତ୍ ରାୟଙ୍କ ସହ ବେଶ୍ ଭଲ ଜମିବ... ଏୟା ଭାବି ମୁଁ ଡେଲ୍‌ଫି ପାଖକୁ ଗଲି । ଡେଲ୍‌ଫିସହ ମାସେ ଖଣ୍ଡେ ଦେଖା ହୋଇନି । ପୁନାରୁ ଫେରିଲା ପରେ ଏଇ ପ୍ରଥମ ଦେଖା । କହିଲା ସନ୍ଧ୍ୟା ନା ସକାଳେ, କେତେବେଳେ ? ମୁଁ କହିଲି ଲଞ୍ଚ୍ ପରେ, ଆସନ୍ତାକାଲି... । କହିଲା, ନା ଅନେକ୍ ଡେରି ହେଇଯିବ । ମୁଁ ପଚାରିଲି – 'କଣ ଏ ଭିତରେ ସୁଇସାଇଡ୍ କରିବାର ପ୍ରୋଗ୍ରାମ୍ ଅଛି ନା କଣ ?' କହିଲା, 'ସେମିତି କିଛି...' ତେବେ 'ଅନେକ କିଛି' ତାର ଶୁଣିବାର ଅଛି ମୋଠୁଁ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ମୋ'ଠାରୁ 'ଅନେକ କିଛି' ଶୁଣିବାର ଅଛି ? ସତେ ଯେମିତି ପୁନାରେ ମୁଁ କଣ ଗୋଟାଏ କରି ପକେଇଛି ! ଭାବିଲି ନିଶ୍ଚୟ କାର୍ଯ୍ୟଟି ସୁମିତ୍ରର, ଯାଡୁ ସ୍ୟାଡୁ ବନେଇ କହିଛି କିଛି – ଡେଲ୍‌ଫିକୁ ଚିଡ଼େଇବାପାଇଁ ।

ତେବେ ଚୁପ୍ ରହିଗଲେ ଘଟଣା ଗୋଳମାଳ ହୋଇଯିବ । କୃତ୍ରିମ ସମସ୍ୟାଟିଏ... ମୋତେ ହିଁ ସମାଧାନ କରିବାକୁ ପଡ଼ିବ । ବେଶୀ ଡେରି କଲେ ଚଳିବନି । ଡେଲ୍‌ଫିଟା ମୁଡି ଝିଅଟା, କ'ଣ ଗୋଟାଏ କରି ପକେଇପାରେ । ସେଦିନ ଯେମିତି କଲା, ପୁନା ଯିବା ଆଗଦିନ । ମୁଁ ମୋ ରୁମ୍ ଖୋଲିଲା ବେଳକୁ କୁକୁର ଛୁଆଟେ... କୁଁ କୁଁ... ହଉଛି । ମୋ ରୁମ୍ ଚାବି ତ ସବୁବେଳେ ବାହାର ଝରକା କଣରେ ଥାଏ – ସମସ୍ତେ ଜାଣନ୍ତି, ଡେଲ୍‌ଫି ବି । କେତେବେଳେ ଆସି... ତା ବେକରେ ପୁଣି ରଙ୍ଗିନ କାଗଜର ଚେନ୍‌ରେ ଖୁବ୍ ସୁନ୍ଦର ଭାବରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି – 'ଆଘାତ ଦିଅନି ମୋତେ, ମୁଁ ଯେ ପୁରାପୁରି ତମର' ('ଡୋଣ୍ଟ ୟୁ ହର୍ଟ ମି.. ଆଇ ଆମ୍ ଅଲ୍ ୟୋର୍ସ') ।

ମୁଁ ପପିଟାକୁ ଝର୍କା ସେପାଖକୁ ଫୋପାଡ଼ି ଦେଇଥିଲି ବୋଲି ସୁମିତ୍ର ଡେଲ୍‌ଫିକୁ କହିଦେଲା । କେବଳ ଏଇଥିପାଇଁ ଡେଲ୍‌ଫି ଅଭିମାନ କରି ଷ୍ଟେସନ୍‌କୁ ସି ଅଫ୍ କରିବାକୁ ଆସି ନଥିଲା । ଭୀଷଣ ଆଘାତ ପାଇଥିଲା । ମୋତେ ଖରାପ ଲାଗିଥିଲା – କୁକୁର

ଛୁଆଟିକୁ ଫିଙ୍ଗି ଦେଇଥିଲି ବୋଲି ନୁହଁ, ଏଭଳି କରିବାଦ୍ୱାରା ଡେଲ୍‌ଫିକୁ ଆଘାତ ଦେଇଥିଲି ବୋଲି । ପ୍ରକୃତରେ ବହୁତ ଖରାପ ଲାଗିଥିଲା ।

ରାତିରେ ଡିନର୍ ପରେ କଣ ମନେ ହେଲା, ଫୋନ୍ କଲି, 'ଶ୍ରୀସଦନ' ଲେଡିଜ୍ ହଷ୍ଟେଲକୁ । ସେପାଖରୁ ଫୋନ୍ ଉଠେଇଲେ ନିଜେ ସୁପରିଣ୍ଟେଣ୍ଡେଣ୍ଟ୍ ଶୁଭ୍ରା ଘୋଷ । ମୁଁ ନର୍ଭସ୍ । ସେପାଖରୁ 'ହ୍ୟାଲୋ'... ହ୍ୟାଲୋ' । ମୁଁ ଭିତରେ ଡରି ଯାଇଥିଲେ ବି ଗମ୍ଭୀର ଗଳାରେ ମିଛଟିଏ କହି ପକେଇଲି ଯେ ବମ୍ବେରୁ କହୁଛି, ଡେଲ୍‌ଫିର ଭାଇ, ଇତ୍ୟାଦି, ଇତ୍ୟାଦି । ଶୁଭ୍ରାଦି ବୋଧେ ଭାବିନେଲେ ସତରେ ମୁଁ ବମ୍ବେରୁ କହୁଛି, ତେଣୁ ଡେଲ୍‌ଫିକୁ ଖବର ଗଲା ।

ଏ ଭିତରେ ମୋତେ ଜୋର୍ ହସ ଲାଗିଲାଣି । ପାଖରେ ଗୋବିନ୍ଦଟା ଦାନ୍ତ ଦେଖେଇ କଣ ସବୁ ତା ବିହାରୀ ହିନ୍ଦୀରେ କମେଣ୍ଟ୍ ମାରୁଛି । ମୋତେ ହସ ଲାଗିବାର କାରଣ ଶୁଭ୍ରାଦି । ଗୋଟେ ଘଟଣା ମନେ ପଡ଼ିଗଲା ।

ଦିନେ ଶୁଭ୍ରା ଘୋଷ ଫୋନ୍ ରିସିଭର୍ ଉଠେଇଲା ବେଳକୁ ସେପାଖରେ ଭଦ୍ରଲୋକ କହିଲେ – 'ଆମି ତୋମାର୍ ବୋଲ୍‌ଛି ।'

ଶୁଭ୍ରାଦି ରାଗି... ଅସମ୍ଭାଳ ଅବସ୍ଥା । ପଚାରିଲେ 'ଆପ୍ନି କେ ?'

'ଆମି ତୋମାର୍ ବୋଲ୍‌ଛି...' ଉତ୍ତର ଆସିଲା ।

ଶୁଭ୍ରାଦି ଅବିବାହିତା, ବୟସ ପଇଁଚାଳିଶ ପ୍ଲସ୍, ହଷ୍ଟେଲ ଚାର୍ଜରେ ରହିଲେଣି କୋଡ଼ିଏ ପଚିଶ ବର୍ଷ ହେଲା । ରାଗିବେନି ? ବଡ଼ ପାଟିରେ କହିଲେ –

'ଅଭଦ୍ର, ଅସଭ୍ୟ-କୁଥାୟକାର୍...'

ସେପାଖରୁ ଶୁଭିଲା –'ଆପ୍ନି ରେଗେଯାଚ୍ଛେନ୍ କେନ ? ଆମି ତୋମାର୍ ବୋଲ୍‌ଛି, ହିନ୍ଦୀ ଭବନଥେକେ, ଡକ୍ଟର୍ ତୋମାର୍.'

'ଓଃ... ଡଃ. ତୋମାର୍ !!' ଶୁଭ୍ରାଦିଙ୍କ ପ୍ରକୃତିସ୍ଥ ହେବାକୁ ବହୁତ ସମୟ ଲାଗିଥିଲା । ଶାନ୍ତିନିକେତନରେ ଏହି ଜୋକ୍‌ଟା ବହୁତ ଦିନ ଚାଲିଥିଲା ।

ସେ ଯାହାହେଉ, ଡେଲ୍‌ଫି ସହ ଗୋଟେ ପ୍ରକାର ବୁଝାମଣା ହୋଇଗଲା । ଶୁଭ୍ରାଦି ଥିବାରୁ ଭାଷା ମୋଟାମୋଟି ସାଙ୍କେତିକ ସ୍ତରରେହିଁ ରହିଲା । ଟେନ୍‌ସନ୍ ଅନେକଟା କମିଗଲା ! ମୁଁ ଫୋନ୍ ଛାଡ଼ି ନିଜ ରୁମ୍ ଆଡ଼କୁ ଚାଲିଲି ।

## ୫୧

ରୁମ୍‌ରେ ପହଞ୍ଚୁ ପହଞ୍ଚୁ ଟେବ୍‌ଲ୍ ଉପରେ ଆଖିପଡ଼ିଲା । ଖୁବ୍ ଯତ୍ନର ସହିତ ରଖା ହୋଇଛି ସମୀକ୍ଷାର ଚିଠିଟି । ଉପରେ ପୁଣି ଦୁଇଟା ପେପର୍-ୱେଟ୍, କାଳେ ଫର୍ଦ୍ଦେ ଦି ଫର୍ଦ୍ଦ ଉଡ଼ି ପଳେଇବ ?

ସମୀକ୍ଷାକୁ କେତେବା ମୁଁ ବୁଝିଛି ? ଆଉ ଆମ ଭିତରେ ଗଢ଼ି ଉଠିଥିବା ଏତେ ବର୍ଷର ସମ୍ପର୍କ ? ସେ ବିଷୟରେ କେତେ ଥର, କେତେ ସମୟ ବା ମୁଁ ଭାବିଛି ? ଭାବିଲେ ଲାଗେ, ଆମ ସମ୍ପର୍କରେ କେବଳ 'ଅତୀତ' ଓ 'ବର୍ତ୍ତମାନ' ଅଛି, ରହିବ – 'ଭବିଷ୍ୟତ' ନୁହେଁ । କହିବାକୁ ଗଲେ 'ଭବିଷ୍ୟତ' ଏ ସମ୍ପର୍କରେ ନାହିଁ ।

ବିଛଣା ଉପରେ ମୁଁ... ବାଁ ହାତରେ ଚିଠି, ଫର୍ଦ୍ଦ ପରେ ଫର୍ଦ୍ଦ... ବିଛଣାର ଡାହାଣ ପାଖକୁ ଆଇନା... ବଡ଼ ଆଇନାଟେ..., ମୋ ଶରୀରର ଫାଳେ ଦିଶୁଛି । ମୁଁ ଭଲକରି ଅନେଇଲି । ମୋତେ ଲାଗିଲା ସମୀକ୍ଷାର ଚିଠି ଆମ ସମ୍ପର୍କର ଆଇନା, ମୋ ବାଁ ହାତରେ । ସିଏ ବି ପୁରା ଦିଶୁନି, ଫାଳେ ।

ନିଜକୁ ସିଧାସଳଖ ପଚାରିଲି – ମୁଁ କ'ଣ ସମୀକ୍ଷାକୁ ଭଲ ପାଉଛି ? ତାପରେ ପୁଣି ଆଉ ଏକ ପ୍ରଶ୍ନ – ଡେଲ୍‌ଫିକୁ ? ଗୀତାକୁ ? ଆରିୟାନାକୁ ? ବିଭିନ୍ନ ସମୟରେ, ବିଭିନ୍ନ ପରିସ୍ଥିତିରେ ସେମାନଙ୍କ ପ୍ରତି ମୋର ଦୁର୍ବଳତା ପ୍ରକାଶ ପାଇଛି । ସେମାନଙ୍କ ଖୁବ୍ ନିକଟକୁ ମୁଁ ଚାଲିଯାଇଛି, ଧରିବାକୁ ଚେଷ୍ଟା କରିଛି – ଯାହା ବେଶୀ କ୍ଷଣ ଧରି ହୁଏନା, ରଖି ହୁଏନା, ବୁଝି ହୁଏନା । ବଞ୍ଚିବାଲାଗି ବଞ୍ଚୁ ବଞ୍ଚୁ, ମଣିଷ ସମ୍ପର୍କ ତିଆରି କରେ, ନା ସମ୍ପର୍କର ଜାଲରେ ଛନ୍ଦି ହୋଇଯାଏ ? ମୁକୁଳିଲାବେଳକୁ ବେଳ ଗଡ଼ି ଯାଇଥାଏ । ଅମଡ଼ାବାଟରେ ପଶିଆସି ମୁଁ କଣ ସବୁ କରିଛି ? କାହାକୁ ଛାଡ଼ିଛି, କାହାକୁ ସାଙ୍ଗରେ ନେଇଛି ? କେତେ ବାଟ ଚାଲିଛି ଏକା ?

ପୁଣି ସେଇ କଥା – ଅନ୍ୟମାନଙ୍କ ପରି ବଞ୍ଚିବିନି, ଅନ୍ୟମାନଙ୍କ ରାସ୍ତା ମାଡ଼ିବିନି, ଅନ୍ୟମାନଙ୍କ ଭାଷା କହିବିନି – ପିଲାଦିନେ ହିଁ ସ୍ଥିର କରିଥିଲି । ଏବେ ସମ୍ଭାଳିବି କେମିତି ଜୀବନର ଏତେ ଆଲୋଡ଼ନ, ଏତେ ଘଟଣା ? କିଏ ଟାଣିନେବ ମୋତେ, ମୋ ଆନନ୍ଦ ଓ ଯନ୍ତ୍ରଣାକୁ – ତାର କୋଳକୁ, ତାର ଛାତି ଭିତରକୁ ?

କିଏ ? ସମୀକ୍ଷା ? ଡେଲ୍‌ଫି ?

ନିଶ୍ଚୟ ଆରିୟାନା ନୁହେଁ । ସେ'ତ ସମୁଦ୍ର ଭିତରେ ହଜିଯାଇଥିବା ଜାହାଜରୁ ଦିଶୁଥିବା ବତୀଘର, ହଜିଯିବା ପରେ ପାଇବାର ପ୍ରତିଶ୍ରୁତି, ଆଉ ବେଶୀ କିଛି ନୁହେଁ ।

ନିଶ୍ଚୟ ରୀତା ନୁହେଁ, କାରଣ ତାର ପୃଥିବୀ ଏତେ ଦୂର ଯେ, ପହଞ୍ଚୁ ପହଞ୍ଚୁ ଜୀବନଟା ସରିଯାଇଥିବ... ଆଉ ପହଞ୍ଚି ଗଲେ ବି, ତାର ପୃଥିବୀ ଏତେ ଛୋଟ ଯେ, ଅତିକ୍ରମ କରିସାରିଲା ପରେ ବି ଜାଣି ହେଉ ନ ଥିବ ।

ବେଳେବେଳେ ମୁଁ ଅନୁଭବ କରୁଛି, ବଞ୍ଚିବା ପରିବର୍ତ୍ତେ ମୁଁ ଖାଲି- ଜୀବନଟାକୁ ବିଶ୍ଳେଷଣ କରି ଚାଲିଛି । ଉତ୍ତର ପରିବର୍ତ୍ତେ, ପ୍ରଶ୍ନ ପରେ ପ୍ରଶ୍ନ ଖାଲି ତିଆରି କରି ଚାଲିଛି ।

ରୀତା, ଆରିୟାନା, ଡେଲ୍‌ଫିକୁ ଡେଇଁ ମୁଁ ପୁଣି ସମୀକ୍ଷା ପାଖରେ ପହଞ୍ଚିଲି । ସମୀକ୍ଷାର ଚିଠିର ଚତୁର୍ଥ ପୃଷ୍ଠା —

'ଲରେନ୍‌ସ୍‌ଙ୍କ 'ସନ୍‌ସ୍ ଯାଣ୍ଡ୍ ଲଭର୍ସ୍' ତ ପଢ଼ିସାରିବଣି ? ତମେ ସାହିତ୍ୟର ଛାତ୍ର, ମୁଁ ମେଡ଼ିକାଲ ଛାତ୍ରୀ । ମୁଁ ବା ତୁମକୁ କ'ଣ ବୁଝେଇବି ? ଉପନ୍ୟାସଟିରେ ପଲ୍, ମିରିୟାମ୍‌କୁ ଭଲ ପାଉଥିଲା, ଅସୁବିଧା ହେଲା କେଉଁଠି ? ବିବାହିତା ନାରୀ କ୍ଲାରା ପାଖକୁ ଟାଣି ହୋଇଗଲା କାହିଁକି ସେ ? ନିଶ୍ଚୟ ପଲ୍ କ୍ଲାରା ଠାରୁ କିଛି ପାଇଲା, ଯାହାକି ମିରିୟାମ୍‌ଠାରୁ ପାଇପାରୁ ନଥିଲା । ଧରି ନିଆଯାଉ — ବୌଦ୍ଧିକ ସ୍ତରରେ, ମିରିୟାମ୍ ଓ ଶାରୀରିକ ସ୍ତରରେ, କ୍ଲାରା — ପଲ୍‌କୁ ଧରି ରଖିଥିଲେ । କିନ୍ତୁ ହେଲା କଣ ? ପଲ୍ ସେହି ବନ୍ଧନରେ କେତେଦିନ ରହିଲା ? କ୍ଲାରା ପାଖରୁ ମଧ ସେ ଦୂରେଇ ଗଲା । ଶେଷ ଆଡ଼କୁ ଆମେ ବୁଝି ପାରୁଛୁ ଇଡିପସ୍ କଂପ୍ଲେକ୍ସ କାମ କଲା — ପଲ୍ ଉପରେ ତା ମା'ର ପ୍ରଭାବ ଘନିଷ୍ଠ ଓ ଗଭୀର ହେବା ଫଳରେ ସେ ଆଉ କୌଣସି ନାରୀ ପାଖରେ ବେଶୀ ଦିନ ନିଜକୁ ସମର୍ପଣ କରି ପାରିଲା ନାହିଁ ।

ମୁଁ ଭାବୁଛି ତମର ଅସୁବିଧା ହୋଇଛି ପିଲାଦିନୁଁ — ମା'ଙ୍କୁ ହରାଇବା ପରଠାରୁ । ଏକ ବିରାଟ ଶୂନ୍ୟତା ନେଇ ତୁମ ବାଲ୍ୟଜୀବନ ଆରମ୍ଭ ହୋଇଛି । ଶୂନ୍ୟତାକୁ ପୂର୍ଣ୍ଣ କରିବାପାଇଁ ଖୋଜିଛ ଝିଅଟିଏ, ଗଢ଼ିବାକୁ ଚେଷ୍ଟା କରିଛ ସମ୍ପର୍କଟିଏ । କିନ୍ତୁ ଠିକ୍ ପାଇନ ସେଭଳି ଚରିତ୍ର ଯାହା ପାଖରେ ନିଜକୁ ସମର୍ପଣ କରିଦେଇ ପାରିଥାନ୍ତ — ସମ୍ପୂର୍ଣ୍ଣ, ଭାବେ । ଯାହାକୁ ପାଇଛ, ଯେତେଦିନ ପାଇଛ,ତାହା ଆଂଶିକ, ଅସଂପୂର୍ଣ୍ଣ କେବଳ । ତେଣୁ ଏ ପର୍ଯ୍ୟନ୍ତ ତମେ କାହାକୁ ଭଲ ପାଇ ପାରି ନାହଁ, ଆଉ ଭବିଷ୍ୟତରେ ପାରିବନି ମଧ୍ୟ ।

ଆହୁରି ଗୋଟିଏ କାରଣ ମୁଁ ଦେଖିପାରୁଛି । ତମ 'ଆଦର୍ଶ ପୁରୁଷ' ତମ ଜୀବନର ସବୁଠୁଁ ବଡ଼ ଶତ୍ରୁ । ସାଧାରଣ ଜୀବନରେ ବିଶ୍ୱାସ ନ କରିବା, ସାଧାରଣ ବଞ୍ଚିବା ପ୍ରଣାଳୀକୁ ହତାଦର କରିବା – ତମ ସମସ୍ୟାକୁ ଆହୁରି ଜଟିଳ କରି ପକେଇଛି । କେତେ ବହିର କେତେ ଚରିତ୍ର ତୁମ ମନ ଭିତରେ ବସା ବାନ୍ଧି ରହିଛନ୍ତି ! ଆଉ ତା' ସହିତ ତୁମ ନିଜ ଜୀବନରେ ଭେଟିଥିବା ଚରିତ୍ର – ସବୁ ମିଶି ଫେଣ୍ଟାଫେଣ୍ଟି ହୋଇ ଯାଇଛନ୍ତି ।

ଦୀପଙ୍କର ଭିତରେ ତମେ ତମର 'ଆଦର୍ଶ ପୁରୁଷ'କୁ ପାଇଛ । ଦୀପଙ୍କର ଭିତରେ ମୁଁ ତୁମକୁ ପାଇଛି । ଦୀପଙ୍କରକୁ ମୁଁ ବାହା ହୋଇନି, କିନ୍ତୁ ଆମେ ଏକାଠି ରହୁଛୁ, ଜାଁ-ପଲ୍-ସାର୍ତ୍ର ଓ ସିମୋ ଯେମିତି ରହୁଥିଲେ ।

ବେଳେ ବେଳେ ମୁଁ ଭାବେ, ଦୀପଙ୍କର ଓ ତମେ – ଦୁଇ ଜଣ । ପୁଣି ପରମୁହୂର୍ତ୍ତରେ ମୋତେ ଲାଗେ, ନା, ଦୁହେଁ ଜଣେ – ଜଣେ ଅନ୍ୟଜଣକର ସଂପ୍ରସାରଣ । ପୁଣି ବେଳେ ବେଳେ ଭାବେ, ମୁଁ ଉଭୟଙ୍କୁ ଭଲ ପାଏ । ଜଣେ ନାରୀ ଦୁଇ ଜଣ ପୁରୁଷଙ୍କୁ କ'ଣ ଭଲ ପାଇ ପାରେନା ? ଏକକାଳୀନ ? ବିଶେଷକରି ଦୁଇଜଣଯାକ ଯଦି ଏକ ଚିନ୍ତାଧାରାର, ଏକ ଆଦର୍ଶ, ଏକ ଲକ୍ଷ୍ୟର ହୋଇଥା'ନ୍ତି ?

ତମେ ତ ବିଭିନ୍ନ ଦିଗରୁ ଜୀବନକୁ ଦେଖିବାକୁ ଚାହିଁଥିଲ ? ନିଜ ଜୀବନରେ ଉତ୍‌ଥାନ, ପତନ ତ ସବୁ ତମ ସ୍ୱେଚ୍ଛାକୃତ, ଭିନ୍ନ ଭାବରେ ବଞ୍ଚିବାର ଶପଥ ତମେ ତ ନେଇଥିଲ ଆରମ୍ଭରୁ ?'

ସତେ ତ... ଠିକ୍ ଲେଖିଛି ସମୀକ୍ଷା । ମୁଁ ଭିନ୍ନ ଭିନ୍ନ ଦିଗରୁ ଜୀବନକୁ ଦେଖିବାକୁ ଚାହିଁଥିଲି, ଭିନ୍ନ ଭିନ୍ନ ପରିସ୍ଥିତିରୁ ଜୀବନକୁ ବୁଝିବାକୁ ଚାହିଁଥିଲି । ଭିନ୍ନ ଭାବରେ ବଞ୍ଚିବାର ସିଦ୍ଧାନ୍ତ ନେଇଥିଲି । ଏବେ ଡରି ଯାଉଛି କାହିଁକି ? ଚଲାପଥରେ ଏକା ଚାଲିଲାବେଳକୁ ତ ଡର ଲାଗୁନି, ଭୟ ଲାଗୁନି, ଅନ୍ୟ ଜଣେ ଥିଲେ, ଅନ୍ୟ କାହାକୁ ଦେଖିଲେ ଡର ଲାଗୁଛି କାହିଁକି ? ନିଜ ସହିତ ଆଉ କାହାକୁ ତୁଳନା କରିବିନି କେତେଥର ଭାବିଛି, କିନ୍ତୁ କରୁଛି କାହିଁକି ? ସମୀକ୍ଷାର ଚିଠି ସତରେ ପରିଷ୍କାର ଆଇନାଟେ, ନିଜକୁ ଏତେ ପରିଷ୍କାର ଭାବେ ଆଗରୁ କେଉଁଠି ଦେଖିଲା ପରି ମନେ ହୁଏନା ।

ଖାଲି 'ଦେଖିବାର' ସୁଯୋଗ ଓ ଶକ୍ତି ଥିଲେ ହୁଏନା, ତା ସହିତ 'ବୁଝିବାର' ଇଚ୍ଛା ଓ ସାମର୍ଥ୍ୟ ଦରକାର । ଶେଷରେ 'ବୁଝେଇବାର' ଭାଷା ଓ ଶୈଳୀ ନ ଥିଲେ ପ୍ରଥମ ଦୁଇଟି ପର୍ଯ୍ୟାୟର ଅର୍ଥ କିଛି ହୁଏନା ।

ସମୀକ୍ଷା କେତେ ସୁନ୍ଦର ତା ଜୀବନକୁ, ମୋ ଜୀବନକୁ, ଚାରିକଡ଼ର ପୃଥିବୀକୁ ଦେଖିପାରିଛି, ବୁଝିପାରିଛି, ଆଉ ଶେଷରେ ବୁଝେଇପାରିଛି । ପୁଣି ଏତେ କମ୍ ବୟସରେ ?

ଏକ ଦୀର୍ଘ ନିଶ୍ୱାସ ନେଲି । ଝରକା ଦୁଇଟା ବନ୍ଦ ଥିଲା, ଖୋଲି ଦେଲି । ବାହାରୁ ସୁନ୍ଦର ପବନ ରୁମ୍ ଭିତରକୁ ପଶି ଆସିଲା । ଝରକା ପାଖରେ ମୁଁ ସେମିତି ଛିଡ଼ା ହୋଇ ଅନେଇ ରହିଛି ଦୂରକୁ... ଅନେକ ଦୂରକୁ ।

ଅନ୍ଧକାର ଭିତରେ ଆକାଶକୁ ଦେଖିପାରୁନି । ଦେଖିବାକୁ ଖୁବ୍ ଇଚ୍ଛା । ପକ୍ଷୀମାନେ ଉଡ଼ି ଉଡ଼ି କ୍ଲାନ୍ତ ହୋଇ କେଉଁଠି ଅଟକି ଯାଇଛନ୍ତି – ଦେଖିବାକୁ ଇଚ୍ଛା । ତାରା ତ ଦିଶୁ ନାହାନ୍ତି... କଳାମେଘ ଖଣ୍ଡେ ଉଠେଇଲାଣି । ଘଡ଼ଘଡ଼ି ମାରିଲାଣି... ବର୍ଷାଟେ ହେବ ଜଣାଯାଉଛି । ଲାଇନ୍ ଗଲା... ପୁଣି ପାୱାର କଟ୍... ବାହାରେ ଅନ୍ଧାର, ଭିତରେ ଅନ୍ଧାର । କିନ୍ତୁ ଏହି ଅନ୍ଧାରରେ ମୁଁ ସ୍ପଷ୍ଟ ଦେଖିପାରୁଛି ଜୀବନର ଭିନ୍ନ ଭିନ୍ନ ରଙ୍ଗ, ଠିକ୍ ଶୁଣିପାରୁଛି ଜୀବନର ଭିନ୍ନ ଭିନ୍ନ ସ୍ୱର ।

ବିକ୍ଷିପ୍ତ ଚିନ୍ତାଧାରାକୁ ଏବେ ସଜାଡ଼ିବାକୁ ଇଚ୍ଛାନାହିଁ, ବିଚ୍ଛିନ୍ନ ରଙ୍ଗକୁ ଏକତ୍ରିତ କରିବାର ବେଳ ନାହିଁ, ବିଭକ୍ତ ସ୍ୱରମାନଙ୍କୁ ସୁସଙ୍ଗତ କରିବାର ଆବଶ୍ୟକତା ନାହିଁ । ଏ ମୁହୂର୍ତ୍ତ ଅସୀମ ଅନ୍ଧକାର ଭିତରେ ପୁଣି ଥରେ ନିଜକୁ ହଜେଇ ଦେବାର ମୁହୂର୍ତ୍ତ, ପୁରୁଣା ବା ନୂଆ ସଙ୍କଳ୍ପକୁ ଭୁଲିଯିବାର ମୁହୂର୍ତ୍ତ । ଅନ୍ଧାର ଭିତରେ ମୋତେ ଲାଗୁଛି ମୁଁ ଧାଇଁବାରେ ଲାଗିଛି, ଧାଇଁବା ବ୍ୟତୀତ ଆଉ ଯେପରି ମୁଁ କିଛି ଜାଣିନି, ଆଉ କିଛି ମୁଁ ଶିଖିନି । ବାଟ ସରୁନାହିଁ, ମୁଁ କ୍ଲାନ୍ତ ହେଉନାହିଁ, ଧାଉଁଛି ଆହୁରି ଜୋରରେ ।

କୌଣସି ଜାଗାରେ ମୁଁ ଝୁଣ୍ଟି ପଡୁନି କାହିଁକି ?

ପଛକୁ ଫେରି ଚାହୁଁଛି କାହିଁକି ?

କାହିଁ ଦୀପଙ୍କର ? କେଉଁଠି ସମୀକ୍ଷା ? ଡେଲ୍‌ଫି, ରୀତା, ଅବ୍‌ଦୁଲ୍, ସିହ୍ନା, ସୁମିତ୍ର ? କିଏ କେଉଁଠି ?

ପୁଣି ଫ୍ରାଞ୍ଜ୍ ସୁବର୍ଟ୍‌ଙ୍କ ସିଂଫୋନି ଶୁଭୁଛି କେଉଁଠାରୁ... ପିକାଶୋଙ୍କ 'ଉଇପିଙ୍ଗ୍ ଉମ୍ୟାନ୍' – ଡୋରା, ମୋ ଆଖି ଆଗରେ ! ରାସ୍ତାର ଶେଷ ନାହିଁ, ମୋର ଧାଇଁବାରେ ବିରାମ ନାହିଁ...

ମୁହୂର୍ତ୍ତ ପରେ ମୁହୂର୍ତ୍ତକୁ, ଅନ୍ଧାର ପରେ ପୁଣି ଅନ୍ଧାରକୁ ମୁଁ ଜାବୁଡ଼ି ଧରି ଧାଇଁବାରେ ଲାଗିଛି, ଦୂରକୁ, ଆହୁରି ଦୂରକୁ...

## ୫୨

ଏ' ଭିତରେ ଅସରାଏ ବର୍ଷା ହୋଇଯାଇଛି । କରେଣ୍ଟ୍ ଆସି ଯାଇଛି । ମୁଁ ଝରକା ପାଖରୁ ଆସ୍ତେ ଆସ୍ତେ ଆସି ଟେବୁଲ୍ ପାଖରେ । ପୁଣି ଆଖି ପଡ଼ିଲା ସମୀକ୍ଷାର ଚିଠି ଉପରେ ।

ଚିଠିର ଶେଷ ପୃଷ୍ଠା –

'ଭିନ୍ନ ଭାବରେ ବଞ୍ଚୁ ବଞ୍ଚୁ ଜୀବନରେ ତମେ କ'ଣ ପାଇଲ, କ'ଣ ଛାଡ଼ି ଆସିଲ, କ'ଣ ହଜେଇଲ – କେବେ ଭାବିଛ ? କେବେ ନିଜକୁ ପଚାରିଛ ?'

ଆରେ ସତ କଥା ତ ! ହଁ, ବେଳେ ବେଳେ ଭାବିଛି – ଫାଳେ ଫାଳେ, କିଛି କିଛି, ଘଟଣା, ଅନୁଭୂତି... ତେବେ ସାମଗ୍ରିକ ଭାବେ, ପିରିୟଡ଼ିକାଲ୍ ଷ୍ଟକ୍‌ଟେକିଂ କଲାପରି ନୁହେଁ, ଏମିତି । ଭାବିବାକୁ ଭଲ ଲାଗିଛି, ଭାବିଛି । କିନ୍ତୁ ତା'ପରେ ଆଗରୁ ଯାହା, ପରେ ସେୟା । ଜୀବନରେ ଆଗକୁ ମାଡ଼ି ଚାଲିବାରେ – ପୁଣି ସେୟା, ଆଗପରି । ଯେ କୌଣସି ପରିସ୍ଥିତିରେ ଜଟିଳତା ମୋତେ କେବେ ବିବ୍ରତ କରିନି, ଅସ୍ଥିର କରିନି । ମୁଁ କେବେହେଲେ ଅସହାୟ ମନେ କରିନି । ମୁକାବିଲା କରିବାଲାଗି ହୃଦୟ ଭିତରକୁ ଅନେଇଛି । ଠିକ୍ କ'ଣ ଖୋଜିଛି ଜାଣେନା, ପାଇଛି କିନ୍ତୁ – ଯେ କୌଣସି ପରିସ୍ଥିତିକୁ ମୁକାବିଲା କରିବା ପାଇଁ ସାହସ ଓ ଶକ୍ତି । ଭିତରେ ଥିବା ଆବେଗ ହେଉ, କିଛିଟା ଆତ୍ମବିଶ୍ୱାସ ହେଉ, କିଛିଟା ଭାବପ୍ରବଣତା ହେଉ – ମୋତେ ଦରକାର ବେଳେ ସାହାଯ୍ୟ କରିଛି । ତା'ରି ଫଳରେ ମୁଁ କ'ଣ ଗୋଟାଏ କରି ପକେଇଛି ଯାହାକି ଅନ୍ୟଜଣେ ହୁଏତ କରି ପାରି ନଥା'ନ୍ତା, ହୁଏତ ଭିନ୍ନ ଭାବରେ ସେ ପରିସ୍ଥିତିକୁ, ଘଟଣାଟିକୁ ଦେଖିଥା'ନ୍ତା, ବୁଝିଥା'ନ୍ତା !

ଘଟିଯାଇଥିବା ଘଟଣାଗୁଡ଼ିକୁ ପୁଣିଥରେ ଭିନ୍ନ ଭାବରେ ସଜେଇ ଭାବି ଚାଲିଲି... ଯଥା ମୁଁ ଛାତ୍ର ଆନ୍ଦୋଳନରେ ନାହିଁ । ଅନ୍ୟମାନେ ଅଛନ୍ତି, କିନ୍ତୁ ମୁଁ ନାହିଁ । ତା' ହେଲେ ? ସମୀକ୍ଷା, ଶରତ, ଅବ୍‌ଦୁଲ୍ – ମୁଁ କାହାକୁ ଜାଣିନି..., ବାପା, ମା' ମୋ'ର ପିଲାଦିନୁଁ ମୋତେ ଛାଡ଼ି ଚାଲିଯାଇଛନ୍ତି... ମୁଁ ଅନାଥ, ନିଃସହାୟ ! ଡେଭିଡ୍ କପରଫିଲ୍ଡ୍ ପରି କୋଉ ଗୋଟା' ଗଳିରେ ବାଜେ ଲୋକଟିର କବଳରେ ପଡିଛି... ଇସ୍ ! ଇଏ କି ପୃଥିବୀ । ମୋ ଆଗରେ ରଙ୍ଗୀନ୍ ଭବିଷ୍ୟତ ପାଉଁଶିଆ ଦେଖା ଗଲାଣି । ସମ୍ଭାବନା ସବୁ ଆସ୍ତେ ଆସ୍ତେ ସଙ୍କୁଚିତ ହେବାକୁ ବସିଲାଣି । ମୁଁ କରିବି କ'ଣ ଏବେ ?

ପୁଣି ସମୀକ୍ଷାର ଚିଠି –

'...କହିବି – ତୁମ ଜାଗାରେ ଦୀପଙ୍କରକୁ ମୁଁ କାହିଁକି ବାଛିଲି ?'

ନାରୀର ହୃଦୟ କ'ଣ, କେମିତି ନଈପରି ଦିଶେ, କିନ୍ତୁ ସମୁଦ୍ରଟିଏ... (ଭାବିଛ ? କଳ୍ପନା କରିଛ ?) ଢେଉ ଆସେ ଭିନ୍ନ ସମୟରେ ଭିନ୍ନ ରୂପ ନେଇ : ଶାନ୍ତ –ପୁଣି ବେଳେ ବେଳେ ଗର୍ଜନ କରି ଆସେ, କୂଳରେ କିଛି ଛୁଏଁନା, ଅଥଚ ପରମୁହୂର୍ତ୍ତରେ ସବୁକିଛି ଭସେଇନେଇ ଯାଏ । ଅଦ୍ଭୁତ ନାରୀର ହୃଦୟ ! କଳ୍ପନାବିଳାସୀ ନୁହଁ ମୁଁ, ବାସ୍ତବବାଦୀ – ତମେ ଜାଣିଛ । ତଥାପି ଅଜାଣତରେ ଘଣ୍ଟା ଘଣ୍ଟା ଧରି ମୁଁ ସ୍ୱପ୍ନର କବଳରେ ପଡ଼ିରହେ ଅତି ନିଃସହାୟ ଭାବେ । କେତେବେଳେ ଶିଶୁର ଭୂମିକାରେ ତମ କାନ୍ଧରେ ଝୁଲିବାକୁ ଇଚ୍ଛାହୁଏ, ପୁଣି କେତେବେଳେ ସ୍କୁଲ ଝିଅ ପରି ତମଠୁଁ ଗାଳି ଶୁଣିବାକୁ ଭଲଲାଗେ (ତମେ ରାଗିଲେ ସୁନ୍ଦର ଦିଶ !)... କେତେବେଳେ ତମରି ମା' ହେବାକୁ ଇଚ୍ଛାହୁଏ, ତମକୁ କାଖେଇ ଧରି ଶିବାଜୀ, ମହାରାଣା ପ୍ରତାପ, ବୁଦ୍ଧ, ଅଶୋକଙ୍କ କଥା ଶୁଣେଇବାକୁ ମନ କରେ । ପୁଣି କେତେବେଳେ ତମ ମିଟିଂର ପଛଧାଡ଼ିରେ ବସି ଘଣ୍ଟା ଘଣ୍ଟା ତମ ବକ୍ତୃତା ଶୁଣିବାକୁ ଇଚ୍ଛା ହୁଏ । ଇଚ୍ଛା ହୁଏ, ବେଳେ ବେଳେ ତୁମକୁ ପ୍ରଲୋଭିତ କରିବାପାଇଁ, ନାଟକରେ ତମ ସହିତ ଅଭିନୟ କରୁ କରୁ ଭାବପ୍ରବଣ ହୋଇ ତମକୁ ନିଜର କରିବା ପାଇଁ, ନିଜର, ଅତି ଆପଣାର – ଦୁଇଟି ଶରୀର ଓ ମନର ସମସ୍ତ ବ୍ୟବଧାନକୁ ସଙ୍କୁଚିତ କରି ଏକାକାର କରିବାପାଇଁ ।

ଆଉ ତା'ପରେ ? ଚିଲିକାର ସୂର୍ଯ୍ୟାସ୍ତ ସମୟରେ ଯେମିତି ଛ ବର୍ଷ ତଳେ ଦୁଇଟି ଅସମ୍ପୂର୍ଣ୍ଣ ଶରୀର ଓ ଅସ୍ଥିର ମନର କିଛି କିଛି ଅଂଶ ଛନ୍ଦି ହୋଇ ଯାଇଥିଲେ, ପରସ୍ପରକୁ ଅନାଇ ନପାରି ଆକାଶ ଆଡ଼କୁ ଚାହୁଁଥିଲେ... ଆଖିପତା ପଡ଼ିଯାଉଥିଲା... ହୃଦୟ ଭିତରେ ଏକ ଅପରିଚିତ ଆନ୍ଦୋଳନ ଓ ବାହାରେ ପୃଥିବୀ ସହିତ, ସମୁଦ୍ର ସହିତ, ଅନ୍ଧକାର ସହିତ ଏକ ଅସ୍ୱାଭାବିକ ବୁଝାମଣା ହୋଇଯାଇଥିଲା !

ଆଉ ଥରେ ଚିଲିକାର ନୀଳ ପାଣି ଭିତରେ ଇଚ୍ଛାହୁଏ ଆମ ଦୁଇଜଣଙ୍କ ଗୋଡ଼ ଛନ୍ଦି ହୋଇଯାଉ, ଅନ୍ଧକାର ଆମ ଦୁହିଙ୍କୁ ସମ୍ପୂର୍ଣ୍ଣ ଗ୍ରାସ କରୁ... ତାରାମାନେ ଦେଖାଦେବା ଆଗରୁ, ଆକାଶ ପରିଷ୍କାର ହୋଇଯିବା ଆଗରୁ, ମୋ ବନ୍ଧନରୁ ତମେ ଖସିଯିବା ଆଗରୁ, ଇଚ୍ଛା ହୁଏ, ହଁ ଇଚ୍ଛା ହୁଏ, ସବୁକିଛି ତମକୁ ଦେଇ ଦେବାକୁ – ମୋର ଶରୀର ଓ ମନ, ସ୍ମୃତି ଓ ସ୍ୱପ୍ନ, ଭୟ ଓ ଦୁଃଖର ପ୍ରତ୍ୟେକ ଅଣୁ, ପ୍ରତ୍ୟେକ ପରମାଣୁ ।

କିନ୍ତୁ ଏ' ସବୁ ଇଚ୍ଛା ଥିଲା, 'ଇଚ୍ଛା' ହୋଇ ରହିଥିବ ବୋଧେ ସବୁବେଳେ । ମୁଁ ଜାଣେନା । ମୁଁ ଠିକ୍ ଭାବେ କହି ପାରିବିନି ।

କିନ୍ତୁ ଠିକ୍ ଭାବେ ଏତିକି କହିପାରିବି, କୌଣସି ବନ୍ଧନରେ ବାନ୍ଧି ହେବା ଲୋକ ତମେ ନୁହଁ, କୌଣସି ବନ୍ଧନରେ ନୁହଁ । 'ବିବାହ' ତ ପୁଣି ଗୋଟାଏ ବନ୍ଧନ ? କ'ଣ ଭାବୁଛ ? ମୁଁ ଭୁଲ୍ କହୁଛି ? ତମକୁ ବିବାହବନ୍ଧନରେ ବାନ୍ଧି ରଖିବା ମୁସ୍କିଲ୍ । ପ୍ରେମର ବନ୍ଧନରେ ବି ନୁହେଁ । 'ପ୍ରେମ' କ'ଣ ଏକରକମ ବନ୍ଧନ ନୁହେଁ ? ଅଙ୍ଗୀକାର ଓ ଦାୟିତ୍ୱ ନୁହେଁ ? ଏଗୁଡ଼ାକ ସବୁ ତମ ବ୍ୟକ୍ତି-ସ୍ୱାଧୀନତାର ପରିପନ୍ଥୀ, ତମକୁ କେବେହେଲେ ଭଲ ଲାଗିବ ନାହିଁ । ତମେ ସବୁବେଳେ ମୁକ୍ତି ଚାହିଁଛ, ସ୍ୱାଧୀନ ହୋଇ ରହିବାକୁ ଚାହିଁଛ ।

ତମେ ଜଣଙ୍କର କେବେହୋଇ ରହିପାରିବନି, ତମେ ସମସ୍ତଙ୍କର ବା କାହାର ନୁହଁ ।

ଏବେ ବୁଝିପାରୁଛ, ତମକୁ ଛାଡ଼ି ଦୀପଙ୍କରକୁ କାହିଁକି ମୁଁ ବାଛିଲି ? ଆଗରୁ କହିଚି, ମୋ' ପାଇଁ ତମେ ଦି' ଜଣ ନୁହଁ, ଜଣେ । ବହୁ ସମୟରେ ସେମିତି ମୋତେ ଲାଗିଛି । ଏପରିକି ଶରୀର, ଓ ଶରୀରର ଉତ୍ତାପ – ଉଭୟଙ୍କର ସମାନ । ଦୀପଙ୍କର ଭିତରେ ମୁଁ ତୁମକୁ ପାଏ, ତୁମକୁ ଦେଖେ । ସେ କେତୋଟି ମୁହୂର୍ତ୍ତ ମୁଁ 'ମୁଁ' ହୋଇ ରହେ । ବାକି ସମୟରେ ମୋର ଭିନ୍ନ ଭିନ୍ନ ରୂପ ଦୀପଙ୍କରର ସାନ୍ନିଧ ଚାହିଁଛି । କିନ୍ତୁ ହୃଦୟର କେତୋଟି ବଖରା ଏବେ ବି ଖାଲି ପଡ଼ିଛି । କେହି ସେଠାରେ ପହଞ୍ଚି ପାରି ନାହାନ୍ତି । ହୁଏତ କେହି ଚାହିଁ ନାହାନ୍ତି, ଇଚ୍ଛା କରି ନାହାନ୍ତି ଯିବାକୁ, ସେଠାରେ ପହଞ୍ଚିବାକୁ ।'

ମୁଁ ଏକ ଦୀର୍ଘଶ୍ୱାସ ନେଲି ।

ଜାଣିପାରିଲିନି, କଣ କରୁଛି ମୁଁ । ଗୋଟେ ଝିଅର ଚିଠି ପଢୁଛି, ନା ନାରୀମନର ଏକ ସୁନ୍ଦର ଏକ୍ସରେ, ପ୍ରୋଜେକ୍ଟର୍ ସ୍କିନ୍‌ରେ ଦେଖୁଛି ?–ମୁଁ ଜାଣିପାରିଲିନି ।

ପୁରା ରୁମ୍‌ଟା ଖୋଜି ପକେଇଲି କାଳେ କେଉଁଠି ଚାର୍ମିନାର୍ ପ୍ୟାକେଟ୍‌ରୁ ଖଣ୍ଡେ ଦି ଖଣ୍ଡ ବଳି ପଡ଼ିଥିବ । ପ୍ରବଳ ଇଚ୍ଛା ହେଲାଣି ଖଣ୍ଡେ ସିଗାରେଟ୍ ପାଇଁ । ଟେନ୍‌ସନ୍ ବଢ଼ିଗଲାଣି । ସିନ୍ହାରୁମ୍ ଆଡ଼କୁ ଅନେଇଲି ଝରକା ବାଟେ । ଧୂଆଁଳିଆ ଦେଖାଯାଉଛି, ସିନ୍ହା ନିଶ୍ଚେ ବତୀଟେ ଜଳେଇଥିବ... ଚେନ୍‌ସ୍ମୋକର୍ ତ !

ରୁମ୍ ଭିତରେ ଟେବୁଲ୍ ଆଡ଼କୁ ଆଖି ଗଲା, ସମୀକ୍ଷାର ଚିଠିଆଡ଼କୁ – ଚିଠି ସରିଗଲାଣି... ଆଉ ଧାଡ଼ିଟେ ବା ଦି ଧାଡ଼ି ରହିଛି... । ତାପରେ ଗୋଟିଏ କଣକୁ

ନାଁଟିଏ... ବୋଧହୁଏ ନିଜ ନାଁ ଲେଖିଛି । ନା, ଏଥର ରୁମ୍ ବାହାରକୁ ଯିବାକୁ ହେବ । ଟେନ୍‌ସନ୍‌ଟାକୁ ଉତାରିବାକୁ ହେବ । ସମୀକ୍ଷାର ସମୀକ୍ଷାରୁ ମୁକ୍ତି ପାଇବାକୁ ହେବ ।

ଉପରମହଲା ସିହ୍ନାରୁମ୍ ଆଡ଼କୁ ମୁଁ ଚାଲିଲି ।

## ୫୩

ପୁରୀ ଏକ୍ସପ୍ରେସ୍ ସେ ଦିନ ଠିକ୍ ସମୟରେ ହାଓଡ଼ା ଛାଡ଼ିଥିଲା । ଜଣାପଡ଼ିଲାନି ଯାଜପୁର ରୋଡ୍‌ରେ ଆମେ ଆସି ପହଞ୍ଚିଗଲୁଣି । ପ୍ଲାଟ୍‌ଫର୍ମ୍‌ରେ ପହଞ୍ଚୁ ପହଞ୍ଚୁ ପରିଚିତ ସ୍ୱର –

'ଜିଅନ୍ତା ବରା... ଆଞ୍ଜା, ଜିଅନ୍ତା ବରା ...'

ଯେ କେହି ଲୋକ କହି ପାରିବ ଯାଜପୁର ଷ୍ଟେସନ୍ ଆସିଗଲା । ଏଥରକ କିନ୍ତୁ ମୁଁ କଟକରେ ଓହ୍ଲେଇବି, ବରହମ୍‌ପୁର୍‌ରେ ନୁହେଁ । କଟକ ଆସିବାର କାରଣ ଗୋଟେ ଇଣ୍ଟର୍ଭ୍ୟୁ । ଚଣ୍ଡିଛକ ପାଖରେ ଜଷ୍ଟିସ୍ ଦାଶଙ୍କ ଘରେ ହେବ । ଖବରକାଗଜରେ ଅଧ୍ୟାପକ ଚାକିରି ପାଇଁ ବାହାରିଥିଲା ମାସେ ଖଣ୍ଡେ ତଳେ । ସେକେଣ୍ଡ୍‌କ୍ଲାସ ଇଂଲିଶ୍ ଏମ୍.ଏ. ବାଲା କେହି ନ ଥିଲେ – ସବୁ ସରକାରୀ କଲେଜ, ବ୍ୟାଙ୍କ୍ ବା ଆଡ୍‌ମିନିଷ୍ଟ୍ରେଟିଭ୍ ସର୍ଭିସ୍‌ରେ ପଶିଯାଇଥିଲେ, ନହେଲେ ଗୋଟେ ଏମ୍.ଏ. ପରୀକ୍ଷା ନଦେଇଥିବା ପିଲାକୁ ପଚାରେ କିଏ ? 'ଆପିୟରିଂ କ୍ୟାଣ୍ଡିଡେଟ୍' ହିସାବରେ କ୍ୟାରିୟର୍ ଗ୍ରାଫ୍ ଦେଖି ବୋଧେ ମୋତେ ଡକାଯାଇଥିଲା, ଆଶା କରାଯାଇଥିଲା ଏମ୍.ଏ.ରେ ଅତି କମ୍‌ରେ ସେକେଣ୍ଡ କ୍ଲାସ୍ ହେବ, ତେଣୁ ଅଧ୍ୟାପକ ପାଇଁ ଫିଟ୍ । ପ୍ରାଇଭେଟ୍ କଲେଜ ହେଲେ ବି ପ୍ରଥମ ଚାକିରିଟା, (ସିଏ ପୁଣି ଏମ୍.ଏ. ପାଶ୍ କରିବା ଆଗରୁ) ମୋତେ ବେଶ୍ ରୋମାଞ୍ଚିତ କରିଥିଲା । ଜୀବନରେ ପ୍ରଥମ ଇଣ୍ଟର୍ଭ୍ୟୁ... ଅଭିଜ୍ଞତାଟେ ନିଶ୍ଚୟ ଦରକାର ! ଚାକିରି ପାଉଛି କି ନା, କରିବି କି ନା, ସେ ବିଷୟରେ ଭାବିନି, ଭାବିବା ଦରକାର ପଡ଼ିନି । ମାସେ ତଳେ ଗୋଟେ ଇଣ୍ଟର୍ଭ୍ୟୁ ପାଇଁ ଡାକିଥିଲେ କଲିକତା ଗ୍ରାଣ୍ଡ୍ ହୋଟେଲରେ – 'ଇଣ୍ଡିଆନ୍ ଅଏଲ୍' ସେଲ୍‌ସ୍ ଏକ୍‌ଜିକ୍ୟୁଟିଭ୍ ପାଇଁ । 'ଷ୍ଟେଟ୍‌ସ୍‌ମ୍ୟାନ୍' ପେପର୍‌ରେ ବାହାରିଥିଲା – ଆମେ ତିନି ଚାରିଜଣ କଲ୍ ପାଇ ଯାଇଥିଲୁ । ସେଠି ଗ୍ରୁପ୍ ଡିସ୍‌କସନ୍, ଆପ୍ଟିଚ୍ୟୁଡ୍ ଟେଷ୍ଟ୍, ସାଇକୋଲୋଜିକାଲ୍ ଟେଷ୍ଟ୍ ଇତ୍ୟାଦିରେ ପର୍ଯ୍ୟାୟକ୍ରମେ କାଟି କାଟି ଶେଷରେ ଇଷ୍ଟ୍‌ଜୋନ୍ ପାଇଁ ତିନିଜଣଙ୍କୁ ଇଣ୍ଟର୍ଭ୍ୟୁ ପାଇଁ ଡାକିଥିଲେ ।

ଗ୍ରାଣ୍ଡ୍ ହୋଟେଲରେ ଲଞ୍ଚ୍‌ସେସନ୍ ଚା' ଆଗରୁ । ଦି ତିନିଥର ରବିବାରିଆ ସବ୍‌ସିଡାଇଜ୍‌ଡ୍ ଷୋଳଟଙ୍କିଆ ଲଞ୍ଚ୍ ସୁମିତ୍ର ଓ ଅପୂର୍ବ ସାଙ୍ଗରେ ଖାଇଛି । କିନ୍ତୁ ଏଥର ବେଶ୍ ଖୋଲା, ଅନ୍‌ଲିମିଟେଡ୍ ଷ୍ଟଫ୍ । ସେଣ୍ଟ ଜେଭିୟର୍ସ୍ ଓ ଆଇ.ଆଇ.ଟି. ଖଡ଼ଗପୁରର ଦିଜଣଙ୍କ ସାଙ୍ଗରେ କିଛିଟା ଜମିଯାଇଥିଲା । ତେଣୁ ତିନିଜଣଯାକ ଗୋଟାଏ କଣକୁ ବୁଫେ ଲଞ୍ଚ୍‌ର ଗୋଟେ ପରେ ଗୋଟେ କୋର୍ସ୍... ତାପରେ ବିଅର୍... ! ଲୋଭରେ ତିନିଚାରିଟା ଲେଖା ସାରି ଇଣ୍ଟର୍ଭ୍ୟୁବେଳକୁ ଅବସ୍ଥା ଅସମ୍ଭାଳ । ଅତିମାତ୍ରାରେ ଆତ୍ମବିଶ୍ୱାସ (ଓଭର୍ କରେଜ୍) ବଢ଼ିଯିବାର ମୁଁ ଅନୁଭବ କଲି । କଣ ପଚାରିଲେ, କଣ ମୁଁ ଉତ୍ତର ଦେଲି – ମନେ ପଡୁନି । ଏତିକି ଖାଲି ମନେ ପଡୁଛି – ଫେରିଲାପରେ ହଷ୍ଟେଲ ଠିକଣାରେ ଚିଠି ପାଇଲି, ସେ ପୋଷ୍ଟସବୁ ଉଚ୍ଛେଦ କରି ଦିଆଯାଇଛି । ତେଣୁ ଅଧ୍ୟାପକ-ଇଣ୍ଟର୍ଭ୍ୟୁଟି... ଦେଖାଯାଉ କ'ଣ ହେଉଛି । ହାତରୁ ଖର୍ଚ୍ଚ କରି ଆସିବାକୁ ପଡ଼ିଛି, ପରିଷ୍କାର କଲ୍‌ଲେଟର୍‌ରେ ଲେଖା ହୋଇଛି ସେମାନେ ଟି.ଏ. ଦେବେନି । କିନ୍ତୁ 'ଇଣ୍ଡିୟାନ୍ ଅଏଲ୍'ବାଲା ଲଞ୍ଚ୍ ସହ ରାଉଣ୍ଡଟ୍ରିପ୍ ଫାଷ୍ଟ୍ କ୍ଲାସ ଟିକେଟ୍ ଫେୟାର୍ ଓ ଗୋଟେ 'ଥ୍ୟାଙ୍କ୍ ୟୁ' କାର୍ଡ଼ ପଠାଇଥିଲେ । ପୋଷ୍ଟ୍ ଉଠିଗଲା; ଇଣ୍ଟର୍ଭ୍ୟୁରେ କଟିଯାଇଥିଲେ ବି ଦୁଃଖ ହେଇ ନଥାନ୍ତା ।

କଟକ ଆସିଗଲା । ରାତି ସରିନି । ଭୋର ୫ଟା, ସାଢ଼େ ୫ଟା ହେବ । ଯିବି କେଉଁଠିକି, ଭାବିଲି । ମାମୁଁ ଘର ? ଭଉଣୀ ଘର ? ନା, ବନ୍ଧୁବାନ୍ଧବ ଭୁଲି ଯିବାକୁ ହେବ । ଆରାମ୍‌ରେ ସେମାନେ ରଖେଇଥୋଇ ଦେବେନି । ଖୋଇ ଖୋଇ ମାରି ଦେବେ । ଅଯଥା ଇଆଡୁ ସିଆଡୁ ଗପିବେ, ପ୍ରଶ୍ନ ପଚାରିବେ । ସେମାନଙ୍କ ସହ ସମୟ କଟେଇବା ମୁଡ୍‌ରେ ମୁଁ ମୋଟେ ନାହିଁ । ମୋତେ ସାଙ୍ଗ ଗୋଟେ ବାହାର କରିବାକୁ ପଡ଼ିବ, ଯିଏକି ଏକା ରହୁଥିବ, ଅବିବାହିତ ଥିବ ଓ ମୋତେ ଦେଖି ବେଶୀ ଗୁଡ଼ାଏ ଖୁସି ହୋଇ ବିବ୍ରତ କରିବନି । ମନେ ପଡ଼ିଗଲା ବୁଲ୍‌ଟୁ... ଆଡ଼ଭୋକେଟ୍, ବାରିଷ୍ଟର ରଣଜିତ୍ ମହାନ୍ତିଙ୍କ ଜୁନିୟର୍ । ବେଶ୍ ଭଲହେଲା, ରିକ୍ସାଟେ ଧରିଲି । ଚାଲିଲି କାଫ୍ଲା ଛକ । ଆକାଶ ପରିଷ୍କାର ହୋଇଗଲାଣି । କଟକର ଚା' ଦୋକାନ ସବୁ ଖୋଲି ଗଲାଣି ।

ରିକ୍ସାବାଲାକୁ ପଚାରିଲି –

'ଆରେ ଚା' ଖାଇବୁ ?'

'ବାବୁ... ତୁ ଚା ଖାଇବୁ କି ?' ପ୍ରଶ୍ନର ଉତ୍ତରରେ ଆସିଲା ଆଉ ଏକ ପ୍ରଶ୍ନ । ବୋଧେ ଏହି ପ୍ରଶ୍ନରେ ରହିଛି ଉତ୍ତର । ପିଲାଦିନେ ବାପାଙ୍କ ସେମିତି ଗୋଟେ ଉଦାହରଣ ମନେ ପଡ଼ିଗଲା । ଡିନର୍ ଟେବୁଲ୍‌ରେ କେତେ ଯେ ଏମିତି ଉଦାହରଣ ବାପା ଦିଅନ୍ତି !

ସେଦିନ କହିଥିଲେ –

'ବାବୁ... କହିଲୁ ଏମିତି ଗୋଟେ ପ୍ରଶ୍ନ – ଅବଶ୍ୟ ସଂସ୍କୃତରେ... ଯାହା ଭିତରେ ହିଁ ଉତ୍ତର ରହିଥିବ ?

ମୁଁ ସେତେବେଳେ ସପ୍ତମଶ୍ରେଣୀର ଛାତ୍ର । ମୁଣ୍ଡ ଟୁଙ୍ଗାରିଲି । ଆଉ ବେଶୀ ସମୟ ଅପେକ୍ଷା ନକରି ସେ କହି ପକେଇଲେ –

'କା ଶୀତଳବାହିନୀ ଗଙ୍ଗା ?'

ସାଙ୍ଗେ ସାଙ୍ଗେ ଧରି ନେଇ ମୁଁ କହିଲି –

'କାଶୀତଳ ବାହିନୀ ଗଙ୍ଗା...' ବାପା ହସିଲେ, ମୁଁ ହସିଲି, ଭଉଣୀ କିଛି ନ ବୁଝି, ସେ ବି ହସିପକେଇଲା ।

ରାଣୀହାଟ ପାଖରେ ରିକ୍ସା ରହୁ ରହୁ ମୁଁ କହିଲି –

'ଦିଟା ଚା ପାଇଁ କହିଦେ'

ଚା ପିଇବା ଅବସ୍ଥାରେ ପଚାରିଲି –

'ଷ୍ଟେସନ୍‌ରୁ ଆସିବାଲାଗି ତୋତେ ପନ୍ଦରମିନିଟ୍ ଲାଗିଲା ? ତୁ କାଫ୍ଲାରେ ପହଞ୍ଚିଲା ବେଳକୁ... ?

'ବାବୁ, କ୍ୟଣ କହିବାର ? ବଡ୍‌ଡ ଲୋକ ବଡ୍‌ଡ କତ୍ତା କଉଛୁ... ଉଠାଣିମାନେ ଅଛନ୍ତି, ତୁ ବସିଥାଉଛୁ, କ୍ୟଣ ବୁଝିବୁ ? ତୁ ରିକ୍ସାଟାଣିଲେ ବୁଝିବୁ ପନ୍ଦ୍ରମିଣ୍ଟ ଲାଗିବ କି ଗଣ୍ଟେ ଲାଗିବ, ହାଁ...'

ମୁଁ ହସୁଛି, ଚା' ଦୋକାନୀ ହସୁଛି, ଖବରକାଗଜ ହକର୍ ଟୋକାଟେ ଯାଉଥିଲା, ସିଏ ବି ସମ୍ଭାଳି ପାରିଲାନି, ହସି ପକେଇଲା । ମୁଁ ରିକ୍ସାବାଲାକୁ କହିଲି –

'ଆଚ୍ଛା ତୁ ପଛରେ ବସିବୁ ? ମୁଁ ରିକ୍ସା ଚଲେଇବି ?'

'ନାଇଁ ବାବୁ, ତୁ କୋଉଟି ଲଗେଇଦେବୁ । ରିକ୍ସା ବାଗିଯିବ । ବଡ୍‌ଡ ଲୋକ ଆପଣର ପୈସା ଅଛି, ଆମେ ଗରୀବ୍‌ଲୋକ୍, ପୈସା ନାଇଁ, ରିକ୍ସା ବାଗିଯିବ...'

ସେ ବହୁତ କଷ୍ଟରେ ରାଜି ହେଲା, ମୁଁ ରିକ୍ସା ଚଲେଇଲି । ବେଶୀ କିଛି ଅସୁବିଧା ହେଲାନି । 'ବିଦ୍ୟାଭବନ' ହଷ୍ଟେଲ ସାମନାରେ ସନ୍ଧ୍ୟାବେଳେ ବିହାରୀ ରିକ୍ସାବାଲାଙ୍କଠୁ କାଇଦାଟା ଶିଖିନେଇଥିଲି । ଖାଲି ହ୍ୟାଣ୍ଡଲ୍ ଉପରେ ଶକ୍ତ କଣ୍ଟ୍ରୋଲ୍ ଦରକାର, ନ ହେଲେ ମୋଡ଼ିନେବ ଗୋଟେ ଆଡ଼କୁ ।

ଆଗରେ ଗାଈ... ପୁରା ପ୍ରୋସେସନ୍ ଗାଈମାନଙ୍କର । ମୁଁ ସମ୍ଭାଳି ପାରିଲିନି, ଲଗେଇଦେଲି ମଣିସାହୁଛକ ଟ୍ରାଫିକ୍ ପୋଷ୍ଟ ସାଙ୍ଗରେ । ରିକ୍ସାବାଲା ଡେଇଁ ପଡ଼ି ବ୍ରେକ୍ କଷିଦେଲା । ନିଜକୁ କହିଲି 'ବାସ୍, ସେତିକି ଥାଉ... ଇନଫ୍ ଇଜ୍ ଇନଫ୍...'

ବୁଲ୍‌ଟୁ ଛୋଟ୍‌ରାୟ କବାଟ ଖୋଲି ଆଶ୍ଚର୍ଯ୍ୟ । ଅନେକ ଦିନପରେ ଦେଖା । ବାବୁଙ୍କ ପାହାନ୍ତିଆ ସେସନ୍ ଚାଲିଛି, ସାଙ୍ଗରେ ଚାରିବାଟିଆର ଜଣେ ଏୟାରଫୋର୍ସ୍ ଅଫିସର୍ । ମୋ' ଆଡ଼କୁ ଗ୍ଲାସ୍‌ଟେ ଆସିଗଲା...ଓଲ୍ଡ୍ ମଙ୍କ୍ ପରି ଲାଗୁଛି । ମୁଁ ଗୋଟେ 'ଛୋଟ' କହୁ କହୁ ଲାର୍ଜ ପେଗ୍‌ଟେ ଆସିଗଲା । 'ନାହିଁ' ଶୁଣିବାର ଅଭ୍ୟାସ ନାହିଁ ବୁଲ୍‌ଟୁର । ଦିଲ୍‌ଦାରିଆ ପିଲାଟେ । ଲ' ପଢ଼ିଲାବେଳେ – ଖଲ୍ଲିକୋଟ୍ କଲେଜରେ ସମସ୍ତଙ୍କ ସାଙ୍ଗରେ ଜମେଇ ପାରୁଥିଲା – ବିଶେଷକରି ବାଳିକା ପିଲାମାନଙ୍କ ସହ । ଭଲ କହିପାରେ, ଅଭିନୟ କରିପାରେ... (କ'ଣ ନ କରି ପାରେ ?)

ସେ ଯା' ହେଉ ମୁଁ ଗୁଡ଼ାଏ ପାଣି ମିଶେଇ ଚଳେଇ ଦେଲି । ଠିକ୍ ଦଶଟାରେ ଉଣ୍ଟର୍ଭ୍ୟୁ । ଗୋଟେ ଲମ୍ବା ବେଞ୍ଚରେ ଖାଲିଜାଗା ଦେଖି ବସିପଡ଼ିଲି । ଜଣେ କିଏ ଆସି ମୋ ନାଁ ପଚାରି ତାଙ୍କ ଲିଷ୍ଟରେ ଟିକ୍ ମାରିଲେ । ମୋ ପାଖରେ ବସିଥିବା ଯୁବକ ମୋତେ ପଚାରିଲେ –

'ଆପଣ ଶାନ୍ତିନିକେତନ ପ୍ରେସିଡେଣ୍ଟ ଥିଲେ ?'

ମୁଁ ସମ୍ମତି ଜଣେଇବା ପରେ ପରେ ସେ ନିଜର ପରିଚୟ ଦେଲେ । ନାଁ ଆସ୍ରଫ୍ ଅଲ୍ଲୀ । ଓଡ଼ିଆ ଅଧ୍ୟାପକ ପୋଷ୍ଟ ପାଇଁ ଆସିଛନ୍ତି । ଇଣ୍ଟର୍ଭ୍ୟୁ ବୋର୍ଡ଼ରେ ପାଠଉପରେ କିଛି ପଚାରିଲେନି । ପଚାରିଲେ – ଜଏନ୍ କଲେ 'ବର୍ଷଟେ ରହିବେ ତ ?' ମୁଁ ଧରିନେଲି ଚାକିରିଟା ହେଇଗଲା ବୋଧେ ।

ଠିକ୍ ସେୟା । ଶାନ୍ତିନିକେତନରେ ସେଦିନ ଖରାବେଳେ ରେଜିଷ୍ଟ୍ରି ଡାକରେ ଆପଏଣ୍ଟମେଣ୍ଟ ଲେଟର୍‌ଟି ଆସିଗଲା । କଣ କରିବି, ଜଏନ୍ କରିବି କି ନା ଭାବି ଭାବି ଶେଷରେ ଜଏନ୍ କଲି । ଖାଲି ବେସିକ୍ ପେ' ଟା ଦେବେ । ଡି.ଏ., ଫି.ଏ. ପରୀକ୍ଷାଫଳ ବାହାରିବା ପରେ । କଲେଜରେ ଜଏନ୍ କରି ସାରି ଷ୍ଟଡିଲିଭ୍ ନେଇ ପୁଣି ଫେରି ଆସିଲି ହଷ୍ଟେଲକୁ – ଏମ୍.ଏ. ପରୀକ୍ଷା ଦେବାଲାଗି ।

ମନେରଖିଲା ଭଳି ଦିନଟେ – ଜୁଲାଇ ୨୧,୧୯୬୯... ମୁଁ ହେଲି ଅଧ୍ୟାପକ, ଆର୍ମଷ୍ଟ୍ରଙ୍ଗ୍ ପ୍ରଥମ ମଣିଷ ରୂପେ ଚନ୍ଦ୍ରପୃଷ୍ଠରେ ଗୋଡ଼ ରଖିଲେ ।

## ୫୪

ସ୍ଥିର ହୋଇ ବସି ରହିବା, କିଛି ନ କରିବା – ମୋ' ଜାତକରେ ନାହିଁ ବୋଧେ । ହଁ, ତା ପରେ ପୁଣି ଘନ ଘନ ଚିଠି, ଟେଲିଗ୍ରାମ (ଭାଗ୍ୟ ଭଲ – ମୁଁ ରହୁଥିବା ଭଡ଼ାଘରେ ଟେଲିଫୋନ୍ ବ୍ୟବସ୍ଥା ନଥିଲା !), ରେଜିଷ୍ଟ୍ରି – ଡେଲ୍‌ଫି ପାଖରୁ – ରଫିୟା ମଞ୍ଜିଲ୍,ବମ୍ବେରୁ – ଚାଣକ୍ୟପୁରୀ, ଦିଲ୍ଲୀରୁ, – ହିନ୍ଦୁସ୍ଥାନ୍ ରୋଡ୍, ବାଲିଗଞ୍ଜ୍, କଲିକତାରୁ – ଯୁଆଡ଼େ ଗଲା ଡେଲ୍‌ଫି ଛୁଟିରେ, ସେ ଲେଖିଲା, କାର୍ଡ଼ ପଠେଇଲା । ଦିନେ ଦିନେ ଦୁଇଟା, ତିନିଟା । ପିଲାଟା ବିଗିଡ଼ି ଗଲା – ମୋତେ ଲାଗିଲା ।

ମୁଁ କିଛି କମ୍ ବଦ୍‌ମାସ୍ ନୁହେଁ, ମୁଁ ବି ଇନ୍ଧନ ଯୋଗେଇଛି, ଚିଠି ପୃଷ୍ଠାପରେ ପୃଷ୍ଠା ଲେଖିଛି । ଡେଲ୍‌ଫି ସୁନ୍ଦର ଚିଠି ଲେଖିପାରେ । ଦୀର୍ଘ ଚୁମ୍ବନ ଦେଇପାରେ । ଶରୀରର ବିଭିନ୍ନ ଅଂଶକୁ ସମର୍ପଣ କରିବାର କଳା ସେ ଜାଣିଛି । ହଷ୍ଟେଲରେ ପଢ଼ିଛି, ପରୀକ୍ଷା ସରିନି । ମୁଁ ଏତେ ଦୂରରେ, ନୂଆ ଜୀବନରେ ଯେମିତି ମୁଁ ତାକୁ ଭୁଲି ନଯାଏ, ସେଥିପାଇଁ ସେ ବରାବର ଚିଠି ଦିଏ । ଆଉ ଅଭ୍ୟାସକ୍ରମେ ତାଠୁଁ ଚିଠି ନ ପାଇଲେ, ମୋତେ କିଛି ଭଲ ଲାଗେନା, କୌଣସିଥିରେ ମନ ଲାଗେନା । କାହା ସହିତ ଭଲଭାବେ କଥାବାର୍ତ୍ତା କରିବାକୁ ଇଚ୍ଛା ହୁଏନା ।

ହୋଲିଦିନ ବିକଳ କର ମିଠା ଦୋକାନରେ ବସିଛି, ବିଜୁ ଦୌଡ଼ି ଦୌଡ଼ି ଆସିଲା । ବିଜୁ – ଆମ ଘରେ ରୋଷେଇବାସ କରେ, ପୁରୀରୁ ପଳେଇ ଆସିଥିବା ଟୋକାଟେ ।

'ସାର୍, ଚିଠି ।'

ମୁଁ ଲଫାପାଟି ଖୋଲୁ ଖୋଲୁ ଅବିରତଙ୍କ ସବୁ ବାହାରି ମୋ' ମିଠାପ୍ଲେଟ୍, ମୁହଁସବୁ ଲାଲ୍ ହୋଇଗଲା । ପାଖରେ ସାଙ୍ଗ ଯୋଗେଶ୍... ହସୁଛି ! ଅପ୍ରତିଭ ହୋଇ, କଥାଟାକୁ ହାଲୁକା କରିବାର ଚେଷ୍ଟା ବିଫଳ ହେଲା ।

ବଡ଼ଦିନ ଛୁଟି ଆରମ୍ଭ ହୋଇଗଲାଣି । ଯିଏ ଯୁଆଡ଼େ ପଳେଇଲେଣି । ମୁଁ ଏକା ବସାଘରେ । ଘରକୁ ଯିବାର ଇଚ୍ଛା ନାହିଁ । କୃଷ୍ଣମୂର୍ତ୍ତୀ, ହକ୍ସଲେ, ହର୍ମାନ୍ ହସେଙ୍କୁ ପଢ଼ିବି ବୋଲି ସ୍ଥିର କରି କୁଆଡ଼େ ଗଲିନି ।

ଆମ୍ବଗଛକୁ ଲାଗି ଆମ ଛାତ । ଛାତ ଉପରେ ବସି ମୁଁ ଦେଖୁଛି କଳାକାଇମନ୍ଦିର କଡ଼ର ସୂର୍ଯ୍ୟାସ୍ତ । ଆଃ ! କି ସୁନ୍ଦର ! ହନୁମାନ ପରି ସୂର୍ଯ୍ୟଙ୍କୁ ଛୁଇଁବାକୁ, ଅନ୍ତରସ୍ଥ

କରିନେବାକୁ ଇଚ୍ଛା ହେଲାଣି । ଅନେକଦିନୁଁ ଡେଲ୍‌ଫିଠାରୁ ଚିଠି ଆସିନି । ସେ ଏବେ ଦିଲ୍ଲୀ ଚାଣକ୍ୟପୁରୀରେ ଡିଫେନ୍ସ ଅଫିସର୍ସ୍ ଏନ୍‌କ୍ଲେଭରେ – ବାପା ମା'ଙ୍କ ପାଖରେ । ଏୟାର୍‌ହୋଷ୍ଟେସ୍ ଇଣ୍ଟର୍ଭ୍ୟୁ ଅପେକ୍ଷାରେ । ହୁଏତ ଡେଲ୍‌ଫିର ବାପା କମୋଡର୍ ଚାଟାର୍ଜୀ ତାଙ୍କ ଏକମାତ୍ର ଝିଅପାଇଁ କୌଣସି ବଙ୍ଗାଳୀ ଆର୍ମି ଅଫିସର୍ ବା ନେଭାଲ୍ ଅଫିସର୍ ଠିକ୍ କରିଥିବେ । ତେଣୁ ଓଡ଼ିଶାରୁ ଯେତେବେଳେ, ଯେଉଁ ଗତିରେ ଚିଠି ଯାଉଛି ଝିଅପାଖକୁ, ବିବ୍ରତ ଓ ବିରକ୍ତ ହୋଇଥିବେ ନିଶ୍ଚୟ । କିଛି ଚିଠି ନଷ୍ଟ କରିଦେଇଥିବେ । ଡେଲ୍‌ଫି କିଛି ଜାଣି ପାରୁନଥିବ, କିଛି କରିପାରୁ ନଥିବ ।

ତାଙ୍କ ବାପା ନଷ୍ଟ କରିଦେଇଥିବା ଶେଷ ଦୁଇଟି ଚିଠିରେ ବୋଧେ ଥିଲା ମୋ ଦିଲ୍ଲୀଯିବା ଖବର । କ'ଣ ମନ ହେଲା କେଜାଣି, ହଠାତ୍ ଠିକ୍ କଲି, ଯିବା ଦିଲ୍ଲୀ, ବଡ଼ଦିନ ଛୁଟିରେ । ଉତ୍କଳ ଏକ୍ସପ୍ରେସ୍ ନୂଆଗାଡ଼ି ପଡ଼ିଥାଏ ପୁରୀରୁ – ନୂଆଦିଲ୍ଲୀ । ଚଉବନ ଟଙ୍କା... ସ୍ଲିପର୍‌ରେ ସିଧା ଉଠିପଡ଼ିଲି । ଦି ତିନିଜଣ ଯାତ୍ରୀ ପରିଚିତ ବନ୍ଧୁ ଥିଲେ । ଅପରିଚିତ ଯିଏ ସବୁ ଥିଲେ ଦୁଇ-ତିନି ଘଣ୍ଟାରେ ପରିଚିତ ହୋଇଗଲେ । ଦିଲ୍ଲୀ ପଲିଟିକାଲ୍ ସାଏନ୍ସ ଆସୋସିଏସନ୍ ସେମିନାର୍‌କୁ ଓଡ଼ିଶାରୁ ଚାରିପାଞ୍ଚଜଣ ଯାଉଥିଲେ । କିଛି ସମୟରେ କେହି କେହି ଜାଣିଲେ ମୁଁ କୌଣସି ସେମିନାର୍‌କୁ ଯାଉନାହିଁ, ଯାତ୍ରାର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ବ୍ୟକ୍ତିଗତ... ଫ୍ୟାକ୍ଟ-ଫାଇଣ୍ଡିଂ-କମିସନ୍‌ପରି ମୋତେ ବାହାର କରିବାକୁ ହେବ କେଉଁ କାରଣରୁ ଡେଲ୍‌ଫି ନୀରବ ।

'ବାହାଟା ହେଇଗଲାକି ? ପଳେଇଲା କି ଲଣ୍ଡନ୍, ମାମୁଁଙ୍କ ପାଖକୁ ? ତା ଛଡ଼ା ଦିଲ୍ଲୀଟା ବି ଦେଖାହୋଇଯିବ, ଅସୁବିଧା କେଉଁଠି ରହିଲା ?' – ପଚାରିଲି ନିଜକୁ ।

ନୂଆଦିଲ୍ଲୀ ଷ୍ଟେସନ୍‌ରେ ଓହ୍ଲାଉ ଓହ୍ଲାଉ ଗୋଟେ ଫୋନ୍ ମାରିଲି । ସେ ପାଖରୁ ଚଢ଼ାଗଲାରେ କମୋଡର୍ ଚାଟାର୍ଜୀଙ୍କ 'ହେଲୋ' ଓ ହଠାତ୍ ଫୋନ୍ ରଖିଦେବାର ଶବ୍ଦ । ମୋତେ ଖରାପ ଲାଗିଲା, ଦୁଃଖ ଲାଗିଲା, ରାଗ ଲାଗିଲା । ନା, ପୁଣିଥରେ ଫୋନ୍ କରିବି ।

ଠିକ୍ ସେୟା ହେଲା ।

ମୋତେ ଆହୁରି ଖରାପ ଲାଗିଲା । ବ୍ୟସ୍ତ, ଅସ୍ଥିର ହୋଇ ଭାବିଲି – ନା, ସକାଳେ ଉଠି ସିଧା ତାଙ୍କ ଘରକୁ ଯିବି । ଏମିତି ଫୋନ୍ କରିବାର କିଛି ଅର୍ଥ ହୁଏନା । ତେବେ ନିଜକୁ ଅନେଇଲି – ଟେରିକଟ୍ ସୁଟ୍‌ଟା ବେକାର... ଦିଲ୍ଲୀରେ କି ଥଣ୍ଡା !... ମୁଁ ପୁରାପୁରି ଥରୁଛି । ଷ୍ଟେସନ୍ ଡର୍ମିଟୋରୀରେ ବେଡ୍‌ଟିଏ ମିଳିଗଲା, ବଞ୍ଚିଗଲି । ପାଖ ରିଫ୍ରେସ୍‌ମେଣ୍ଟ ରୁମ୍‌ରେ କିଛି ଖାଇ ଶୋଇଗଲି । ହସ, ଭୟ, ରୋମାଞ୍ଚ ହୃଦୟ ଭିତରେ;

ବାହାରେ ଜନସମୁଦ୍ର, ବିଭିନ୍ନ ରଙ୍ଗର ଆଲୋକ, କୋଳାହଳ, ବ୍ୟସ୍ତ-ବିଭକ୍ତ ଜୀବନ। ରାତିଟି ବିତିଯିବ ନିଶ୍ଚିତଭାବେ । ମୁଁ ହୁଏତ ଛାଟିପିଟି ହେବି, ଶୋଇପାରିବିନି... ଯାଁତୁ ସ୍ୟାତୁ ଭାବିବି... ଚା' ପରେ ଚା' ପିଇବାପାଇଁ ଦଶଥର ପ୍ଲାଟ୍‌ଫର୍ମ୍‌କୁ ଯିବି । ତଥାପି ରାତି ରହୁଥିବ, ସରିବନି । ପରଦିନର ତାତ୍ପର୍ଯ୍ୟ, ଡେଲ୍‌ଫିକୁ ଦେଖିବାର ରୋମାଞ୍ଚ, କମୋଡର୍ ଚାଟାର୍ଜୀଙ୍କ ଗୁରୁଗମ୍ଭୀର ସ୍ୱର – ମଉଳି ଯିବ !

ବହୁଦିନରୁ ପରିଚିତ ଆତ୍ମ-ସମୀକ୍ଷାର ଆଉ ଏକ ମୁହୂର୍ତ୍ତ । ନିଜ ପାଖରେ ପ୍ରଶ୍ନ, ନିଜକୁ ପ୍ରଶ୍ନ –

'ଆସିଛି କାହିଁକି ଏତେ ବାଟ ?'

'ଠିକ୍ ଜାଣେନା...'

'ତଥାପି ?'

'ଆସିଛି, ଡେଲ୍‌ଫିକୁ ଦେଖା-କରିବାକୁ, ପଚାରିବାକୁ, ସେ ମାସ ମାସ ଧରି ନୀରବେ କାହିଁକି ? କୌଣସି ଚିଠିର ଉତ୍ତର ଦେଇନି କାହିଁକି ? ଅସୁବିଧା କ'ଣ ହେଲା ?'

'ତମେ ତା' ହେଲେ ଡେଲ୍‌ଫିକୁ ଚାହଁ ?'

'ହଁ....'

'ତା'କୁ ବାହା ହବାକୁ ଚାହୁଁଛ ?'

'ନା...'

'କାହିଁକି, ନା ?'

'କାରଣ ...'

'ଭଲ ପାଉଛ ତାକୁ ?'

'ହଁ ।'

'ତା' ହେଲେ, ବାହା ହେବନି କାହିଁକି ?'

'କାରଣ ମୁଁ ତାକୁ ଭଲ ପାଉଛି... ବାହା ହେଇଗଲେ ଭଲ ପାଇବା ନଷ୍ଟ ହୋଇଯିବ । ଭଲ ପାଇବା ଓ ବାହାହେବା ଦୁଇଟା ଘଟଣା, ଗୋଟିଏ ହୋଇଗଲେ ଯନ୍ତ୍ରଣା ପାଲଟିଯିବ ।'

'ଅଦ୍ଭୁତ ତମ ଯୁକ୍ତି ?'

'ଆହୁରି ଅଦ୍ଭୁତ... ଜୀବନର ଧାରା – ପୁରୁଷ ଓ ସ୍ତ୍ରୀର ସମ୍ପର୍କ ଓ ସମ୍ଭାବନା । ଯୁକ୍ତି ନଥାଏ ସେଥିରେ, ନଥାଏ ସାଧାରଣ ଆବଶ୍ୟକତା । ଥାଏ ଏକ ଉଭଟ ଆକର୍ଷଣ, ଅସ୍ୱାଭାବିକ ଆଲୋଡ଼ନ, ଆଉ ଆସନ୍ତାକାଲିର ରୋମାଞ୍ଚ ଓ ପ୍ରତିଶ୍ରୁତି !'

## ୪୫

ବ୍ୟତିକ୍ରମ – ଜୀବନର ଦେଖା ଯାଉନଥିବା, ବୁଝି ହେଉନଥିବା ଅର୍ଥ ଓ ଆବଶ୍ୟକତାକୁ ଅନେକ ସମୟରେ ପରିଷ୍କାର କରିଦିଏ । ସାଧାରଣତଃ ଅଭ୍ୟାସଗତ ଆଚରଣକୁ ମଣିଷ ନିଜର ପ୍ରକୃତି ବୋଲି ଧରିନେଇଥାଏ । କିନ୍ତୁ ଅଭ୍ୟାସ – ଖରାପ ହେଉ ବା ଭଲ ହେଉ – ଯଦି ଏହାକୁ ସମୀକ୍ଷା କରା ନଯାଏ, ମଝିରେ ମଝିରେ ସଂଶୋଧନ କରା ନ ଯାଏ, ଏହା ପ୍ରକୃତିରେ ପରିଣତ ହୋଇଯାଏ । ମଣିଷ ସେହି ପ୍ରକୃତିର ଶିକାର ହୋଇଥାଏ । ଜୀବନର ଅର୍ଥ ବୁଝିଲାବେଳକୁ ତା'ର ଅସୁବିଧା ହୁଏ । ସେ ଠିକ୍ ଧରିପାରେନା, ଚିହ୍ନି ପାରେନା ତା'ର ପ୍ରକୃତିକୁ, ବାହ୍ୟ ଜୀବନର ଧାରା ଓ ନିଜ ଜୀବନଯାତ୍ରାରେ ବାରମ୍ବାର ଉପୁଜିଥିବା ଦ୍ୱନ୍ଦ୍ୱ ଓ ସମସ୍ୟାକୁ । ଜୀବନର ଅର୍ଥ ଜଟିଳରୁ ଜଟିଳତର ହେବାକୁ ବସେ, ସେ ରହେ ଜଣେ କ୍ଲାନ୍ତ ପଥିକର ଭୂମିକାରେ । ଯାତ୍ରା ଅସରନ୍ତି, ବିକଳ୍ପ ଯାହାର ନାହିଁ, ନାହିଁ କୌଣସି ସହଜ, ବୋଧଗମ୍ୟ ଅର୍ଥ ବା ଲକ୍ଷ୍ୟ ।

ସବୁଦିନ ଗଡ଼ିଯାଏ ଏହିଭଳି ଅଭ୍ୟାସଗତ ଆଚରଣ ଓ ଦୃଷ୍ଟିଭଙ୍ଗୀରେ । ସବୁଦିନ ଏକାଭଳି ଲାଗେ । ଜୀବନର ପ୍ରକୃତ ତାତ୍ପର୍ଯ୍ୟ ଓ ଆବଶ୍ୟକତା ବୁଝିବା ପୂର୍ବରୁ ବେଳ ଗଡ଼ି ଯାଇଥାଏ, ସ୍ୱପ୍ନ ସରିଯାଇଥାଏ ।

କିନ୍ତୁ ଜୀବନର ଲକ୍ଷ୍ୟ ପଥରେ, ଦୃଷ୍ଟିଭଙ୍ଗୀରେ ବ୍ୟତିକ୍ରମଟିଏ ଆଣିଲେ କିଛି ଦେଖାଯାଉନଥିବା, ବୁଝିହେଉନଥିବା ଅର୍ଥ ପରିଷ୍କାର ହୋଇଯାଏ ।

'ବ୍ୟତିକ୍ରମ' ଆସିଥିଲା ଡିସେମ୍ବର ୨୬ ସକାଳେ ଯେତେବେଳେ ମୁଁ ନୂଆଦିଲ୍ଲୀ ଷ୍ଟେସନ୍‌ରୁ ଅଟୋରିକ୍ସାଟିଏ ନେଇ ଚାଲିଲି ଚାଣକ୍ୟପୁରୀ – ସର୍ଦ୍ଦାର୍ ପଟେଲ୍ ମାର୍ଗ । ସବୁଦିନ ପରି, ସବୁ ସକାଳ ପରି ସେଦିନ ନଥିଲା, ସେଦିନ ଥିଲା ଏକ ବ୍ୟତିକ୍ରମ । ରାତି ପାଞ୍ଚରୁ ନିଦ ଭାଙ୍ଗି ଯାଇଥିଲା । ଡେଲ୍‌ଫିର ବାପା କ'ଣ ପଚାରିବେ, ମୁଁ କିଭଳି ଉତ୍ତର ଦେବି – ସେ ସବୁର ଗୋଟେ ରକମର ରିହିଅର୍ସାଲ୍ ଚଳେଇଥିଲି । ଏଲାହାବାଦ୍ ନ୍ୟାସ୍‌ନାଲ୍ ଡିବେଟ୍ କମ୍ପିଟିସନ୍‌ରେ ବି ଏଭଳି ରିହିଅର୍ସାଲ୍ ମୁଁ କରି ନଥିଲି । ଠିକ୍ ପାଞ୍ଚ ମିନିଟ୍ ଭିତରେ କଥାବସ୍ତୁଟିକୁ ସାରିବାକୁ ହେବ । ଆହୁରି ଆଗରୁ ସରିଗଲେ ଭଲ,

କାରଣ କମୋଡର୍ ଚାଟାର୍ଜୀ ଯେ ମୋ'ର କୌଣସି କଥା ଆଗ୍ରହର ସହିତ ଶୁଣିବେ, ସେ ବିଷୟରେ ମୁଁ ସନ୍ଦିହାନ ।

କଲିଂ ବେଲ୍ ଟିପିବା ପରଠାରୁ ଡ୍ରଇଂରୁମ୍‌ରେ ପଶିବା ପର୍ଯ୍ୟନ୍ତ ଅତି ସ୍ୱାଭାବିକ ରୀତିରେ ନିଜକୁ ମୁଁ ସମ୍ଭାଳି ନେଇଥିଲି । ତା'ପରେ... କମୋଡର୍ ଚାଟାର୍ଜୀଙ୍କ ଶେଷ କଥା – ସେ ଡେଲ୍‌ଫିକୁ ଡାକିବେ ନାହିଁ (ଡେଲ୍‌ଫି ସେ ପର୍ଯ୍ୟନ୍ତ ଜାଣିନି ମୁଁ ତାଙ୍କ ଘରେ ପହଞ୍ଚି ସାରିଲିଣି ବୋଲି) ଆଉ ମୋତେ – ଭିତରେ ଓ ବାହାରେ ଥରୁଥିବା ଶରୀର ଓ ମନସହ – ଫେରିଯିବାକୁ ପଡ଼ିବ । ମୁଁ ବି ଶେଷକଥା ଭଦ୍ରଲୋକଙ୍କୁ ଶୁଣେଇଦେଲି – 'ଆପଣଙ୍କ ବିଷୟରେ ଅନେକ କିଛି ଶୁଣିଥିଲି । ମୁଁ ପ୍ରଶଂସା କରୁଥିଲି ଆପଣଙ୍କ ବ୍ୟକ୍ତିତ୍ୱକୁ । କିନ୍ତୁ ଆଶ୍ଚର୍ଯ୍ୟ ଓ ଦୁଃଖ ଲାଗୁଛି, ସତର ସାମ୍ନା କରିବାକୁ ଆପଣ ଡରୁଛନ୍ତି । ଯଦି ଡେଲ୍‌ଫିର ନିଜ ମୁହଁରୁ ମୁଁ ଶୁଣିବି ଯେ ସେ ମୋତେ ଭଲ ପାଉ ନଥିଲା, ମୋ' ସହିତ ତା'ର କୌଣସି ସମ୍ପର୍କ ନାହିଁ, ତା' ହେଲେ ମୁଁ ସିଧା ଫେରିଯିବି ।'

'ସିଧା ଫେରିଯିବା ହିଁ ତୁମର ଭଲ ହେବ । ଝିଅକୁ ଡାକିବାର କୌଣସି କାରଣ ମୁଁ ଦେଖୁନି ।'

ଶେଷରେ ଚା' ଆଣିବାକୁ ଯାଉଥିବା ଅବସ୍ଥାରେ ମିସେସ୍ ଚାଟାର୍ଜୀଙ୍କୁ ଦେଖି ନମସ୍କାର କରି ଘରୁ ବାହାରି ଆସିଲି । ତଳେ ଏକ ଛୋଟ ରାସ୍ତା ପରେ ସର୍ଦ୍ଦାର ପଟେଲ ମାର୍ଗ । ଅଟୋ ଗୋଟେ ଦେଖି ହାତ ହଲାଇଲି । ଅଟୋରିକ୍ସାଟି ରହିବାର ସଙ୍କେତ ଦେଲା । ଅବିକଳ ଏକ ହିନ୍ଦୀ ଚଳଚ୍ଚିତ୍ରର ଦୃଶ୍ୟଟି ଏତେ ଶୀଘ୍ର ସରିଯିବ ଆଶା କରି ନଥିଲି ।

କିନ୍ତୁ ସରିଲା କେଉଁଠି ?

ମୋ ନାଁ ପଛରୁ କେହି ଡାକିବାର ଶୁଣିପାରିଲି ।

ଅନେଇବାକୁ ସାହସ ହେଲାନି... କାଳେ ଆଉ କାହାକୁ... ! ନା, ଦ୍ୱିତୀୟ ଥର ପୁଣି ମୋରି ନାଁ, ଝିଅଟିର କଣ୍ଠରୁ । ଏଥର ସାହସ ହେଲା । ପଛକୁ ବୁଲି ଦେଖେ ତ ଡେଲ୍‌ଫି – ଖୁବ ଜୋର୍‌ରେ ଦଉଡୁଛି । (ତା' ହେଲେ ଚଳଚ୍ଚିତ୍ରର ପରବର୍ତ୍ତୀ ଦୃଶ୍ୟ ?) ଡେଲ୍‌ଫି ମୋ' ବାହୁବନ୍ଧନରେ... ଆଖିରେ ଲୁହ, ଛାତିରେ କମ୍ପନ... ରାସ୍ତା ନିର୍ଜନ । କେହି ଜଣେ ବି ନାହାନ୍ତି । ଡିସେମ୍ବର ଶୀତରେ ଏତେ ସକାଳୁ ଦିଲ୍ଲୀର ସେହି ଛୋଟ ରାସ୍ତାଟିରେ କିଏ ବା ଥାଆନ୍ତେ ? ମନେ ମନେ ଭାବିନେଲି – ମୁଁ ଜିତିଗଲି... କମୋଡର୍ ଚାଟାର୍ଜୀ ହାରିଗଲେ ।

ଯେମିତି ଦି ବର୍ଷ ତଳେ ୟୁନିଭର୍ସିଟି ଇଲେକ୍ସନ୍‌ରେ ମୁଁ ଜିତିଲି, ଚାରିବର୍ଷ ତଳେ କଲେଜ ଇଲେକ୍ସନ୍‌ରେ ହାରିଥିଲି । ଜିତିବା, ହାରିବା ଲାଗୁଛି ଯେମିତି ବଞ୍ଚିବାର ଅନ୍ୟ ନାମ । କିନ୍ତୁ ଦୃଷ୍ଟିକୋଣ ବଦଳେଇଦେଲେ ? ହଠାତ୍ ମୁଁ ହେଇଗଲି କମୋଡର୍ ଚାଟାର୍ଜୀ... (ଭିତରେ ଆନନ୍ଦର ଉଲ୍ଲାସ କମିବାକୁ ଲାଗିଲାଣି)... ଘଟଣାଟିର ଚିତ୍ର ଏବେ କ'ଣ ଅନ୍ୟରକମ ଦେଖାଦେଲାଣି ?

ସବୁ ଘଟଣା କ'ଣ ଏମିତି ? ଦୃଷ୍ଟିକୋଣ ବଦଳେଇଦେଲେ ଦିଶିବ ଭିନ୍ନ ରକମ ?

ନୂଆଦିଲ୍ଲୀ ଷ୍ଟେସନରେ ଦୋସ୍ତି ହେଇଗଲା ମୋରି ବୟସର ଜଣେ ପିଲା ସହିତ... 'ଦାଦା' କରିନେଲି ପରିସ୍ଥିତି ଦୃଷ୍ଟିରୁ । ସିଏ ବି 'ବେହ୍‌ନ୍‌ଜି' କହି ଆମ ପାଇଁ ଉପରେ ଏ.ସି. ରିଟାୟରିଂ ରୁମ୍‌ଟିଏ ବ୍ୟବସ୍ଥା କରିଦେଲା । ୨୮ ଟଙ୍କା ରେଣ୍ଟ୍ । ଡେଲ୍‌ଫି ଖାଲି କାନ୍ଦୁଥାଏ । 'ଘରକୁ ଫେରିଯିବ ?' ପଚାରିବାରୁ ମନା କଲା । ମୁଁ ଜାଣିପାରୁନଥାଏ କଣ କରିବି । ଆଶା କରି ନଥିଲି ଏଭଳି ପରିସ୍ଥିତି ହେବ ବୋଲି । ମନେ ମନେ ତିଆରି କରିଥିବା ସିନ୍ ଓ ସ୍କ୍ରିପ୍ଟ୍ ସରି, ପ୍ଲଟ୍ ନୂଆ ମୋଡ଼ ନେଲାଣି । ଏଇଠି ବୁଝିଲି କାହାଣୀକୁ ଅତିକ୍ରମ କରି ଜୀବନ ଦ୍ରୁତ ବେଗରେ ଆଗେଇ ଯାଉଛି... ସ୍କ୍ରିପ୍ଟ୍ ବାହାରେ ଘଟଣାସ୍ରୋତ ମାଡ଼ି ଯାଉଛି ବିଭିନ୍ନ ଦିଗକୁ । ମୋ ଭିତରେ ଥିବା ଲେଖକଟି ଉତ୍ତେଜିତ, କିନ୍ତୁ ମଣିଷଟି ସଙ୍କଟାପନ୍ନ । ଏବେ କରିବି କ'ଣ ?

ଠିକ୍ କଲି ଡେଲ୍‌ଫିକୁ ଖୁସି କରିବା ପାଇଁ କିଛି କରିବାକୁ ପଡ଼ିବ । ଫୋନ୍ କରିବାକୁ କହିଲି ମା'ଙ୍କ ପାଖକୁ । ମା' ବ୍ୟସ୍ତ ହେଉଥିବେ । କଥା ହେଇଗଲେ ଉଭୟଙ୍କୁ ଭଲ ଲାଗିବ । ମୋତେ ବି । ବିଛଣାରେ ଘଣ୍ଟାଏରୁ ବେଶି ମୋତେ ଜାବୁଡ଼ିଧରି ଅଧାକାନ୍ଦ-ଅଧାହସ ଅବସ୍ଥାରୁ ଉଠି ଡେଲ୍‌ଫି ଫୋନ୍ କଲା ମିସେସ୍ ଚାଟାର୍ଜୀଙ୍କୁ । କ'ଣ ମା' ଝିଅ କଥାହେଲେ ଠିକ୍ ମୁଁ ଶୁଣିନି – ଅଧାଖୋଲା ବାଥ୍‌ରୁମ୍‌ରେ ଥିଲି । ପରେ ପରେ ଜାଣିଲି ସେ କୁଆଡ଼େ ଝିଅକୁ ଘରକୁ ଫେରିଯିବାକୁ କହିଲେ । କିନ୍ତୁ ଝିଅ ଏକ୍‌ଜିଦିଆ... ମୋତେ 'ଜାମାଇ ବାବୁ' ଭାବରେ ଗ୍ରହଣ ନକଲେ ସେ ଆଉ ଘରକୁ ଫେରିବନି ବୋଲି ରୋକ୍‌ଠୋକ୍ ଜଣେଇ ଦେଇଛି ।

ଥଣ୍ଡା ଲାଗିଲାଣି । ବେଶ୍ ଥଣ୍ଡା । ଘୋଡ଼ାଘୋଡ଼ି ହୋଇ ଦୁହେଁ ପୁଣି ବିଛଣାରେ । ଏଥରକ ଆଉ କିଛି ଯୋଜନା ଭାବିବାକୁ ହେବ । ଡେଲ୍‌ଫି ଆସ୍ତେ ଆସ୍ତେ ଭଲ୍ର ଅବସ୍ଥାକୁ ଆସିଗଲାଣି.... ମୋର ଆଉ ଆଗକୁ ଭାବିବା ଅବକାଶ ନାହିଁ । ସମ୍ପୂର୍ଣ୍ଣ ଏକ

ନାରୀର ଶରୀରକୁ ଅତିକ୍ରମ କରିବା ଏତେ ସହଜ ନୁହେଁ... କରିବି ବା କାହିଁକି ? ମୋତେ କିନ୍ତୁ ସଂଯମ ରହିବାକୁ ପଡ଼ିବ – ଭାବିନେଲି । କିନ୍ତୁ ଠିକ୍ ପରମୁହୂର୍ତ୍ତରେ ମୋ' ଭିତରେ ଅନୁଭବ କରୁଛି ଆଉ ଏକ ମଣିଷ, ଆଡାମ୍ ଭଳି, କିନ୍ତୁ ଠିକ୍ ଆଡାମ୍ ନୁହେଁ । ସେ ସଭ୍ୟ ମଣିଷର ପୋଷାକ, ଆବରଣ ଚିରି ଫିଙ୍ଗି ଦେଲାଣି, ଡେଲ୍‌ଫିର ନଗ୍ନ ଶରୀର ସହ ଏକାକାର ହୋଇଗଲାଣି...

ସଭ୍ୟତାର ସବୁବେଳେ ଗୋଟେ ଆବରଣ ଥାଏ । ସେଇ ଆବରଣ ଭିତରେ 'ଅସଭ୍ୟ' ମଣିଷ ଲୁଚିରହେ, ଲୁଚିରହିବାକୁ ଭଲ ପାଏ । ଲୁଚି ରହେ ତାର ବିଭତ୍ସ ରୂପ, ଜାନ୍ତବ ଇଚ୍ଛା... । ଅନ୍ଧକାର ତା ପାଇଁ ଏକ ଉତ୍ତେଜନା ଆଣେ, ଗୋପନୀୟତା ଆଣେ ରୋମାଞ୍ଚ । ସଭ୍ୟତାର ଆଲୋକରେ କେତେ ସମୟ ବା ମଣିଷ ବଞ୍ଚେ ? ବେଶୀ ଭାଗ ଯାଏ ଅନ୍ଧକାର ଭିତରେ, ଅଦୃଶ୍ୟ ବା ଗୋପନୀୟ ଶକ୍ତିକୁ ମୁକାବିଲା କରିବାରେ ।

ଡେଲ୍‌ଫିର ଶରୀର ବାହାରେ ଯେ ଆଉ ଏକ ପୃଥିବୀ ରହିଛି, ଆଉ କିଛି କରିବାର, ଭାବିବାର ଇଲାକା ରହିଛି – ଜାଣିଲାବେଳକୁ ସକାଳ ହୋଇଗଲାଣି । ଦିନ ବାରଟାବେଳକୁ ହରିଦ୍ୱାରରେ – ଗୁରୁକୁଳ କାଙ୍ଗ୍ରି ୟୁନିଭର୍ସିଟିରେ । ସୁମିତ୍ର ସେଠି ଦର୍ଶନ ଅଧ୍ୟାପକ । ଏଡ଼େ ବଡ଼ ଘର... ପାଞ୍ଚ ଛ'ଟା ବେଡ୍‌ରୁମ୍... ମାଛ ମାଂସ ନିଷେଧ, ଧୂମପାନ ମଧ୍ୟ ନିଷେଧ । ଆମେ କିନ୍ତୁ ସିଗାରେଟ୍ ଲଗେଇଲୁ । ଡେଲ୍‌ଫିକୁ ବାହା ନହେଲେ ଭଉଣୀ କରିବ – କହିଥିଲା ସୁମିତ୍ର, ବିଶ୍ୱଭାରତୀରେ । ସେୟା ହେଲା । ଭଉଣୀଙ୍କ ଦୁରବସ୍ଥା ଦେଖି ଭାଇ ବ୍ୟାଙ୍କ୍‌ରେ ସଞ୍ଚିତ ଦୁଇଶହ ଖଣ୍ଡେ ଟଙ୍କା ଆଣି ଭଉଣୀଙ୍କ ପାଇଁ ଆଉ ଏକ ସେଟ୍ ଶାଢ଼ି ଓ ବ୍ଲାଉଜ୍‌ପିସ୍ କିଣି ପକେଇଲେ । ଦୋସ୍ତ ମାନେ ପ୍ରକୃତ ଦୋସ୍ତ ।

'ଏ ଫ୍ରେଣ୍ଡ୍ ଇନ୍ ନିଡ୍ ଇଜ୍ ଏ ଫ୍ରେଣ୍ଡ୍ ଇଣ୍ଡିଡ୍ ?' ପ୍ରମାଣ କଲା ସୁମିତ୍ର । କୃତଜ୍ଞତାରେ ମୋ ମୁଣ୍ଡ ନଇଁଗଲା, ଭାବିଲି କେଡ଼େ ଭାଗ୍ୟବାନ ମୁଁ !

ସତରେ ମୋ' ସାଙ୍ଗ ଥିଲେ ମୋର ସବୁଠୁଁ ବଡ଼ ସମ୍ପଦ । ଅସୁବିଧା ବେଳେ କୋଉଠି ଥାଆନ୍ତି – ଆସି ଧରାଦିଅନ୍ତି, ସାହାଯ୍ୟ କରନ୍ତି । ମୁଁ ପ୍ରକୃତରେ ବଡ଼ ଭାଗ୍ୟବାନ । ରାତିରେ କିନ୍ତୁ ଜିଦ୍ ଧରିଲା ସୁମିତ୍ର ଆମ ସାଙ୍ଗରେ ଶୋଇବ । ଶୀତରେ ତିନିଜଣଯାକ ବଡ଼ ରେଜେଇତଳେ ଗୋଟିଏ ପୃଥିବୀ ତିଆରି କରି ଶୋଇଗଲୁ । ମୁଁ ବୁଝିପାରିଲି, ଭଲ ସାଙ୍ଗଟିଏ ଥିଲେ ଯେ କୌଣସି ପରିସ୍ଥିତିର ମୁକାବିଲା କରିହେବ, ଆତ୍ମବିଶ୍ୱାସ ବଢ଼ିଯିବ, ସାମନାରେ ବନ୍ଦଥିବା ରାସ୍ତା ଖୋଲିଯିବ, ଅନ୍ଧକାର ଥିଲେ ବି ଅନେକ କିଛି ଦେଖାଯିବ ।

୫୬

ନୂଆଦିଲ୍ଲୀ ଷ୍ଟେସନ୍ ଛାଡ଼ିଲାବେଳକୁ ସକାଳ ହୋଇଯାଇଥିଲା । ଡେଲ୍‌ଫି ଘରକୁ ଫୋନ୍ କରି ମୋ ସହିତ ଓଡ଼ିଶା ଯିବା କଥା ମା'ଙ୍କୁ ଜଣେଇ ଦେଇଥିଲା । ସାନଭାଇ ଦୁଇଜଣ ଦୁଇଟା ଟ୍ରଙ୍କ୍ ଓ ଗୋଟେ ସୁଟ୍‌କେଶ୍‌ରେ ଡେଲ୍‌ଫିର ଜିନିଷପତ୍ର – ସାର୍ଟିଫିକେଟ୍, ଏକ ହଜାର ଟଙ୍କାର ଗୋଟେ ଚେକ୍, କିଛି କ୍ୟାସ୍ ଓ ଡ୍ରେସ୍‌ସବୁ ଗାଡ଼ିରେ ଉଠେଇଦେଲେ । କମ୍ପାର୍ଟମେଣ୍ଟରେ ପୁରୁଣା ସାଙ୍ଗ ଭାରତୀ ମିଶ୍ର – ନ୍ୟାସନାଲ୍ ଫୁଟବଲ୍ ଟିମ୍‌ର ଗୋଲ୍‌କିପର୍, ପୁରୁଣା କଲେଜ ସାଙ୍ଗ... ବେଶ୍ ଜମିଗଲା । ଆଗ୍ରା ପରେ ପରେ ଡେଲ୍‌ଫିର ମୁଡ୍‌ରେ ବି ପରିବର୍ତ୍ତନ ଦେଖାଗଲା । ଉତ୍କଳ ଏକ୍ସପ୍ରେସ୍‌ରେ ସଫର୍ ମାନେ ପ୍ରାୟ 'ଭାରତଦର୍ଶନ'... ଆଠଟା ପ୍ରଦେଶ ଦେଇ ଗାଡ଼ିଟା ଯାଏ – ଦିଲ୍ଲୀରୁ ପୁରୀ । ଭାରତଦର୍ଶନ ନୁହେଁତ ଆଉ କଣ ?

କଟକରେ ପହଞ୍ଚିଲା ପରଠାରୁ ସାଙ୍ଗମାନେ – ଦ୍ୱାରି, ଅଜିତ୍, ଅଜୟ, ସତ୍ୟେନ୍ – ସବୁ ବ୍ୟବସ୍ଥା କରିଦେଲେ । ବାସନ କିଣିବାଠୁଁ ଆରମ୍ଭ କରି ନାଇଟ୍ ସୋ' ଫିଲ୍ମର ଟିକେଟ୍ ପର୍ଯ୍ୟନ୍ତ – ସବୁକିଛି । ଛୋଟ ସହରଟିରେ ଡେଲ୍‌ଫି ଆରମ୍ଭ କଲା ଘର ସଂସାର । ଲଣ୍ଡନ୍‌ରେ ସ୍କୁଲିଂ କରିଥିବା, ବମ୍ବେ, ଦିଲ୍ଲୀ କନ୍‌ଭେଣ୍ଟରେ ଆଚାର ବ୍ୟବହାର ଶିଖିଥିବା, ଶାନ୍ତିନିକେତନରେ କଳା ଓ ସାହିତ୍ୟରେ ପାରଦର୍ଶିତା ଲାଭ କରିଥିବା ଝିଅଟି ଆଜି ଛାତ ନଥିବା ବାଥ୍‌ରୁମ୍‌ରେ । ପାଖ ନଡ଼ିଆଗଛରେ ଦଶବାର ବର୍ଷର ହରିଜନସାହିର ଟୋକାଟେ ଅନେଇରହିବା ଦେଖି ଡେଲ୍‌ଫି ଜୋର୍‌ରେ ହସି ପକେଇଲା । ପିଲାଟି ଲାଜରେ ଗଛରୁ ଖସି ଆସିଲା । ତଳେ ପଡ଼ିଲାବେଳକୁ ଡେଲ୍‌ଫି ଦଉଡ଼ିଯାଇ ପିଲାଟିକୁ ମାଡ଼ିବସି ନିଓସ୍ପିରିନ୍ ଲଗେଇବାରେ ବ୍ୟସ୍ତ । ସାହିବାଲା ଆଶ୍ଚର୍ଯ୍ୟ ଓ ଆନନ୍ଦରେ ଡେଲ୍‌ଫିକୁ ଚାହିଁଛନ୍ତି । କି ସୁନ୍ଦର ଦୃଶ୍ୟଟିଏ !

କଲେଜରୁ ଫେରି ଚା ଦେଲାବେଳେ ଡେଲ୍‌ଫି କହିଲା, ସେ ହିସାବ କରି ଦେଖିଲାଣି ପୁରା ମାସକ ଭିତରେ ଦୁଇଥର ସେ ରୋଷେଇ କରିଛି (ଭାତ + ଘିଅ + ଅଣ୍ଡାସିଜା + ସାଲାଡ୍) ! କିଏ ନା କିଏ ଖାଇବାକୁ ଡାକନ୍ତି ପ୍ରତିଦିନ । ବେଶ୍ ଦିନ କଟିଗଲା । ବାପା ଗାଁରୁ ମଝିରେ ମଝିରେ ଆସନ୍ତି । କଲେଜଝିଅ ବି ଆସନ୍ତି (ମୁଁ ନ ଥିଲାବେଳେ) । ତା' ବାଳକୁ ଧରି ଏପାଖ ସେପାଖ କରନ୍ତି, ତା ଡ୍ରେସ୍‌ପତ୍ର ଦେଖନ୍ତି, ଆଲ୍‌ବମ୍ ଖୋଜନ୍ତି । ଡେଲ୍‌ଫି ସମସ୍ତଙ୍କ ସହ ହସେ, ଅନେକଙ୍କୁ ହସାଏ । ଓଡ଼ିଆ ଭାଷା ନ ଜାଣି, ନ କହି, ବେଶ୍ ସମସ୍ତଙ୍କ ସହ ଜମେଇଦେଇପାରେ । ରାତିରେ ଛୋଟ

ସହରଟି ଶୋଇଯାଇଥିଲା ବେଳେ ଆମେ ଦୁହେଁ କଫି ପରେ କଫି ପିଇ ଚାଲିଥାଉ, ପରସ୍ପରର ସାନ୍ନିଧ୍ୟ ଓ ସ୍ପର୍ଶର ନୂଆ ନୂଆ ଅର୍ଥ ଆବିଷ୍କାର କରି ଚାଲିଥାଉ । ଦେଖୁ ଦେଖୁ ତିନିମାସ କଟିଗଲା । ଦିଲ୍ଲୀରୁ ଚିଠି ଆସିଲା । ନିଜେ କମୋଡର୍ ଚାଟାର୍ଜୀ ପୁରା ପରିବାର ସହ କାର୍‌ରେ ରୋଡ୍‌ମ୍ୟାପ୍ ସାହାଯ୍ୟରେ ଆସି ଦିନେ ପହଞ୍ଚିଗଲେ ଆମ ଘର ସାମନାରେ । ଡେଲ୍‌ଫିର ଆନନ୍ଦ କହିଲେ ନ ସରେ ।

ତାପରେ ଦିଲ୍ଲୀ ଧଉଲାକୁଆଁ ଡିଫେନ୍ସ ଅଫିସର୍ସ କ୍ଲବ୍‌ରେ ରିସେପ୍‌ସନ୍ । ଆର୍ମି ଚିଫ୍ ଫିଲ୍ଡ ମାର୍ଶାଲ୍ ସାମ୍ ମାନିକ୍ସାଙ୍କଠୁଁ ଆରମ୍ଭ କରି ଡିଫେନ୍ସ ସେକ୍ରେଟାରୀ, ନେଭି, ଏୟାର୍‌ଫୋର୍ସ ଓ ଆର୍ମିର ଅନେକ ସିନିୟର୍ ଅଫିସର୍ସ – ସବୁ ଆସିଲେ । ଡେଲ୍‌ଫିର ସାଙ୍ଗ ୫-୧୦ ଜଣ ମୋତେ ଘେରି ବେଟ୍ ମାରିଲେ ମୁଁ କେତେଟା ମିଠେଇ ଖାଇପାରିବି । ଶେଷରେ ଠିକ୍ ହେଲା ଯେତେଟା ମିଠେଇ, ସେତିକିଟା ଚୁମ୍ବନ । ମୁଁ ବାରଟା ଖାଇଲା ପରେ ବାନ୍ତି ବାନ୍ତି ଲାଗିଲା । ଗୋଟାଏ ପାଖରେ ଦେଖିଲାବେଳକୁ ଡ୍ରିଙ୍କସ୍ ଆରମ୍ଭ ହୋଇଗଲାଣି । ସ୍କଚ୍ ହ୍ୱିସ୍କି (ଟିଚର୍ସ, ଜନି ୱାକର୍) ବଟ୍‌ଲ୍‌ସବୁ ପରିଷ୍କାର ଦେଖାଯାଉଛି । ତାପରେ ଅଙ୍କଲ୍ ସିହ୍ନା (ଡେଲ୍‌ଫି ଡାକିବାରୁ ମୁଁ ବି ଡାକିଲି) ଜାମେଇକା ରମ୍ ସହିତ ଭୋଡ୍‌କା ପଞ୍ଚ୍ କରିବାରେ ବ୍ୟସ୍ତ । ମୋର ଲୋଭ ହେଲାଣି । କିନ୍ତୁ ଲଡୁଗୁଡ଼ା ଖାଇ ବେକାର ହୋଇଗଲା । ଝିଅ ଦୁଇଜଣ ଖାଲି ପାଖରେ ଅଛନ୍ତି । ବେଟ୍‌ରେ ହାରିଯାଇ ଅପେକ୍ଷା କରିଛନ୍ତି ସର୍ତ୍ତପୂରଣ କରିବା ପାଇଁ । ମୁଁ କହି ପକେଇଲି –

'ବାରଟା କିସ୍ ଇନ୍‌ଭେଷ୍ଟ୍‌ମେଣ୍ଟ୍ ଆକାରରେ ତୁମ ଦୁଇଜଣଙ୍କ ଉପରେ ରହିଲା । ପରେ ଯେତେବେଳେ ସୁଧସହ ମୂଳଧନଟି ବଡ଼ ଆକାର ଧାରଣ କରିବ, ସେତିକିବେଳକୁ ନେବି ।'

ସେମାନେ ମୋ କଥା ନ ସରୁଣୁ ଧାଇଁ ପଳେଇଲେ । ଯିବା ଆଗରୁ ନାଁ ଠିକ୍ ମନେ ରଖି ପାରିଲି ନାହିଁ । ଇଣ୍ଟ୍ରୋଡ୍ୟୁସ୍ କଲାବେଳେ ଡେଲ୍‌ଫି କଣ ସବୁ କହିଥିଲା, ଆଉ ମନେ ନାହିଁ ।

ରାତିରେ କମୋଡର୍ ଚାଟାର୍ଜୀଙ୍କ ଫ୍ଲାଟ୍‌ରେ ପହଞ୍ଚି ଦେଖେ ସେଠି ସୁମିତ୍ର । ଭାରି ଖୁସି ଲାଗିଲା – ଯାହାହେଉ, ମୋ ଆଡୁ କେହିଜଣେ ତ ଆସିଲେ ? ଗ୍ରିଟିଂ ଟେଲିଗ୍ରାମ୍ ଓଡ଼ିଶାରୁ ଆସିଥିଲା ତିନିଜଣଙ୍କଠାରୁ; ସେମାନେ ହେଲେ ଡଃ ମାୟାଧର ମାନସିଂ, ଡଃ ହରେକୃଷ୍ଣ ମହତାବ, ଆଉ ବାପା ।

ହଠାତ୍ ବିଚିତ୍ର ଭାବନା ମନରେ ପଶିଲା – ଆମ ଘରୁ କେହି ହେଲେ ଆସିଲେନି କାହିଁକି ? ବିଧିବଦ୍ଧ ନିମନ୍ତ୍ରଣପତ୍ର ତ ଯାଇଥିଲା, ଅନେକ ଆଗରୁ । ଆସିଲେନି କାହିଁକି ? ଦିଲ୍ଲୀ – ଦୂର ବାଟ... ବୋଧେ ଏଇଥିପାଇଁ । ତା'ଛଡ଼ା 'ରିସେପ୍‌ସନ୍' ଆଇଡିଆଟି ଅନେକଙ୍କ ପାଇଁ କିଛିଟା ଯନ୍ତ୍ରଣା । ନାସ୍ତିକର ମନ୍ଦିର ଗଲାଭଳି । ଯିବାକୁ ପଡ଼େ, କାରଣ ଶ୍ରୀମତୀଙ୍କ ଯୋଗୁଁ, ବା ଝିଅର/ ପୁଅର ଗଦ୍ ଗଦ୍ ଭାବ ଯୋଗୁଁ । ଇଚ୍ଛା ପ୍ରକୃତରେ ଥାଉ ବା ନ ଥାଉ, ଯିବାକୁ ପଡ଼େ ଅନ୍ୟମାନଙ୍କ ପାଇଁ – ସାମାଜିକ ବିଧି, ମନସ୍ତାତ୍ତ୍ୱିକ ଚାପ ।

ତାପରେ ହୁଏ କଣ 'ରିସେପ୍‌ସନ୍‌ରେ ?' ସୋସିଆଲ୍ ଏଟିକେଟ୍... 'ହାଇ ! ହାଓ ଡୁ ୟୁ ଡୁ ?'

'ହାଓ ଡୁ ୟୁ ଡୁ ?'

ପ୍ରଶ୍ନର ଉତ୍ତରରେ ଆଉ ଗୋଟିଏ ପ୍ରଶ୍ନ – ଠିକ୍ ସେହି ପ୍ରଶ୍ନଟିକୁ ଦୋହରେଇବାକୁ ହେବ – ମୁଁ ଜାଣି ନ ଥିଲି । 'ଫାଇନ୍, ଥ୍ୟାଙ୍କ୍ ୟୁ...' ଆଦି ଆଗରୁ କହୁଥିଲି । କିନ୍ତୁ ଜାଣି ନଥିଲି "କା ଶୀତଳବାହିନୀ ଗଙ୍ଗା" ପରି ପ୍ରଶ୍ନରେ ହିଁ ଉତ୍ତର ରହିଛି । ମାନେ ଚବିଶ କ୍ୟାରାଟ୍ ସାହେବ, ନେଟିଭ୍ ସ୍ପିକର୍ ଉତ୍ତର ଦେଇଥାନ୍ତି - 'ହାଓ ଡୁ ୟୁ ଡୁ ?'

ଘରୁ କେହି ଆସିଥିଲେ ନିଶ୍ଚେ ଭଲ ଲାଗିଥା'ନ୍ତା । ଠିକ୍ ଅଛି, ସୁମିତ୍ର ତ ଘର ଲୋକପରି । ତାକୁ ନେଇ ଚଳେଇଦେବା... ଭାବିଲି । ଏହି ଚଳେଇଦେବା, ଆଡ୍‌ଜଷ୍ଟ କରିନେବା ଆମର ଏକ ଜାତୀୟ ଅଭ୍ୟାସ – ମୁଁ ଅନୁଭବ କଲିଣି କେତେ ଥର !

ପ୍ରକୃତିର ସ୍ରୋତ ଜୀବନକୁ ନିୟନ୍ତ୍ରଣ କରିଚାଲିଛି ବୋଲି ବିଜ୍ଞ ବ୍ୟକ୍ତିସବୁ କହିଛନ୍ତି । ସେହି ସ୍ରୋତ ତ ସବୁବେଳେ 'ପ୍ରାକୃତିକ' ରହେନା, ଯେତେବେଳେ ଅପ୍ରାକୃତିକ ହୋଇଯାଏ ? ସେଭଳି ଅପ୍ରାକୃତିକ ବାଧା ବା ବିପର୍ଯ୍ୟୟକୁ ମୁକାବିଲା କଲାବେଳେ ମଣିଷର ନମନୀୟତା, ପରିବର୍ତ୍ତନସାଧ୍ୟତାର ଆବଶ୍ୟକତା ପଡ଼େ । ଏହି ଗୁଣଟି ଜନ୍ମରୁ ନଥାଏ । ବିଭିନ୍ନ ପରିସ୍ଥିତିକୁ ଚିହ୍ନୁ ଚିହ୍ନୁ, ମୁକାବିଲା କରୁ କରୁ, ଗୁଣଟିକୁ ଆମେ ଆହରଣ କରିଥାଉ ।

ତେବେ ମୋ' ଜୀବନରେ ଦେଖା ଦେଇଥିବା ପରିସ୍ଥିତି ସୃଷ୍ଟି କରେ କିଏ ? ନିଜେ ମୁଁ !

'ଅନ୍ୟମାନଙ୍କ ପରି ବଞ୍ଚିବି'... ସ୍ଥିର କରିଛି କିଏ ?

ନିଜେ ମୁଁ ।

'ଅନ୍ୟମାନଙ୍କ ରାସ୍ତାରେ ଚାଲିବିନି, ଅନ୍ୟର ଅନୁଭୂତିକୁ ଦୋହରାଇବିନି, ଅନ୍ୟ କାହାର ଲକ୍ଷ୍ୟ ପଛରେ ଧାଇଁବିନି...'

## ୫୭

ସେଦିନ କଲେଜ ଅଫିସରେ ଟାଇପ୍ ମେସିନ୍‌ଟାରେ ଛୁଟି ଦରଖାସ୍ତ ଟାଇପ୍ କଲାବେଳେ ପାଖ କ୍ଲାସ ରୁମ୍‌ରୁ ଶୁଣିବାକୁ ମିଳିଲା –

'ସେକ୍ସପିୟର୍ ରୋଟ୍ ଫୋର୍ ଟ୍ରାଜେଡିକ୍...'
ପରେ ପରେ କୋରସ୍... 'ଫୋର୍ ଟ୍ରାଜେଡିକ୍...'

ଭାବିଲି, ଯେ କଣ ଗୀତକ୍ଲାସ କି ? ନା କିଣ୍ଡରଗାର୍ଟନ୍ 'ନର୍ସରୀ ରାଇମ୍' କ୍ଲାସ ? ଯେପରିକି 'ହିଅର୍ ଉଇ ଗୋ ରାଉଣ୍ଡ୍ ଦା ମଲ୍‌ବେରୀ ବୁଶ୍... ମଲ୍‌ବେରୀ ବୁଶ୍, ଦା ମଲ୍‌ବେରୀ ବୁଶ୍ ।'

ତାପରେ ଶୁଭିଲା –
'ହୁ ରୋଟ୍ ଫୋର୍ ଟ୍ରାଜେଡିକ୍ ?'

କୋରସ୍‌ରେ ଉତ୍ତର ଆସିଲା –
'ସେକ୍ସପିୟର୍'

ବଡ଼ବାବୁଙ୍କୁ ପଚାରିଲି ପାଖ କ୍ଲାସଟା କେଉଁ ପିଲାଙ୍କର । ଉତ୍ତର ଆସିଲା– ଫାଇନାଲ୍ ଇଅର୍ ବି.ଏ. ।

ପୁଣି ଶୁଣାଗଲା –
'ସେକ୍ସପିୟର୍ ରୋଟ୍, ହାଓ ମେନି ଟ୍ରାଜେଡିକ୍ ?'
କେହି ଜଣେ କହିଲା – 'ଟେନ୍'
ଆଉ ଜଣେ – 'ସିକ୍ସ'
ସାର୍‌ଙ୍କ କଣ୍ଠ – ''ନୋ... ନୋ... ନଟ୍ ଟେନ୍, ନଟ୍ ସିକ୍ସ...'
ଶେଷରେ ଜଣେ କହିବାର ଶୁଣାଗଲା 'ଫୋର୍'
'ଭେରି ଗୁଡ୍'... ସାର୍‌ଙ୍କ ଆନନ୍ଦ ଓ ହସର କିଛି ଅଂଶ 'ହେ... ହେ... ହେ...'

ମୁଁ ଜାଣିପାରିଲିନି ସାର୍ ସେକ୍ସପିୟର୍‌ଙ୍କ ଉପରେ କ୍ଲାସ ନେଉଛନ୍ତି, ଅଥବା ଗ୍ରାମାର୍ କ୍ଲାସ । ମୁଁ ଆଉ ଟାଇପ୍ କରିବି କଣ ? ତାରିଖ ଫାରିଖ ସବୁ ଭୁଲ ଟାଇପ୍ କରିସାରିଲିଣି । ଏତିକିବେଳେ ଶୁଣାଗଲା –

'ସେକ୍ସପିୟର୍ ରୋଟ୍ ଫୋର୍ ହ୍ୱାଟ୍ ?'

ଉତ୍ତର ଆସିଲା – 'କମେଡିଜ୍'

'ନୋ... ନୋ... ନୋ...'

'ହିଷ୍ଟ୍ରିଜ୍'

'ନୋ... ନୋ... ନୋ...'

'ସାଟାୟର୍ସ୍'

'ନୋ... ନୋ... ନୋ...'

'ଟ୍ରାଜେଡିଜ୍' – ସାର୍‌ଙ୍କ ସ୍ପଷ୍ଟ କଣ୍ଠସ୍ୱର । ମୁଁ ଜୋର୍‌ରେ ନ ହସି ରହି ପାରିଲିନି । ତା ପରେ ଅଫିସରେ ଅନ୍ୟମାନଙ୍କୁ ଗମ୍ଭୀର ଦେଖି ମୁଁ ଗମ୍ଭୀର ହୋଇଗଲି ।

## ୪୮

କଟକରେ ସେତେବେଳେ ଏକମାତ୍ର ଏ.ସି. ହୋଟେଲ୍ – 'କଟକ ହୋଟେଲ୍', ଚବିଶ ଘଣ୍ଟା ପାଇଁ ତିରିଶ ଟଙ୍କା । ଅଧିକାଂଶ ଦିନ ଏ.ସି. ଖରାପ ଥିବାରୁ ପଚିଶ ଟଙ୍କା ଚାର୍ଜ୍ ହୁଏ । ମୁଁ ଓ ଡେଲ୍‌ଫି ପ୍ରାୟ ପ୍ରତି ଉଇକ୍-ଏଣ୍ଡରେ ସେଇଠି । ତଳେ ବାର୍ ଥାଏ । ବିଅର୍ ରୁମ୍‌କୁ ମଗେଇ ଦେଉ । ତନ୍ଦୁର୍ ଚିକେନ୍ ନ ଥିଲେ ବଟର୍ ଚିକେନ୍, ନାନ୍ ଓ ସାଲାଡ୍ । ଡେଲ୍‌ଫିର ଫ୍ରେଞ୍ଚ୍ ପର୍ଫ୍ୟୁମ୍, ଖୋଲା କେଶ, ଆଉ ସେହି ନୀଳ ନାଇଟି – ଭଲ କିକ୍‌ଟିଏ ପାଇଁ ଯଥେଷ୍ଟ । ତାପରେ ବ୍ଲାକ୍‌ଲେବ୍ଲ୍ ବିଅର୍ ଦୁଇ ତିନିଟା ଅଥବା ମ୍ୟାକ୍ ଡାଓ୍ୱେଲ୍ ବ୍ରାଣ୍ଡି । ବ୍ରାଣ୍ଡି ଅଥବା ବିଅର୍ । ଡେଲ୍‌ଫି କୌଣସି ଷ୍ଟ୍ରଙ୍ଗ୍ ଡ୍ରିଙ୍କ୍ ପସନ୍ଦ କରେନା । ମୁଁ କିନ୍ତୁ ବେଳେ ବେଳେ ଓଲ୍ଡ୍ ମଙ୍କ୍ ନେଇଆସେ, ସେ ଖାଲି କମ୍ପାନୀ ଦିଏ । ସାଲାଡ୍ ଓ ମିକ୍ସଚର୍ ଖାଏ, ହାତରେ ସବୁବେଳେ ଗୋଟେ ବେଷ୍ଟ୍‌ସେଲର୍ ବହି – କ୍ରୋନିନ୍ ବା ମମ୍, ବେଳେବେଳେ ମିଲ୍ସ ଆଣ୍ଡ ବୁନ୍, ଅଥବା ହେମିଙ୍ଗ୍‌ଓ୍ୱେ ବା ମରିସ୍ ଓ୍ୱେଷ୍ଟ୍–ହେଭି ଷ୍ଟଫ୍ । ଅନେକ ରାତି ଆମର କଟିଛି ଗୋଟିଏ ବେଡ୍‌ର ଲ୍ୟାମ୍ପସେଡ୍ ତଳେ ବହି ପଢ଼ି ପଢ଼ି...

ସେଦିନ ଡେଲ୍‌ଫିର ଖୋଲା ଛାତି ଉପରେ ମୁଣ୍ଡ ରଖି ମୋ ଆଖି ଘୁରି ବୁଲୁଥିଲା ଏରିକା ଜଙ୍ଗ୍‌ଙ୍କ 'ଫିଅର୍ ଅଫ୍ ଫ୍ଲାଇଂ'ର ପୃଷ୍ଠା କେତୋଟିରେ । ଜୀବନର ଅନ୍ତରଙ୍ଗ ଅନୁଭୂତିର କି ସୁନ୍ଦର ଭାଷା ! ଅନୁଭୂତିର ସ୍ତରେ ସ୍ତରେ ଶବ୍ଦଗୁଡ଼ିକ ଇନ୍ଦ୍ରଜାଲ ତିଆରି କଲାପରି ମନେ ହେଲା । ମୁଁ ଡେଲ୍‌ଫିକୁ ଆହୁରି ଜୋର୍‌ରେ ଟାଣିଆଣିଲି ।

ପରିଚିତ ଶରୀର, ପରିଚିତ ସହରଟିଏ ପରି ।

କିନ୍ତୁ ଲାଗିଲା ଅପରିଚିତ, ପୁରାପୁରି ନୂଆ । ସହରରେ କେତେ ରାସ୍ତା, କେତେ ଘର ! କେତେ ଲୋକ ଯାତାୟତ କରୁଛନ୍ତି ! କିନ୍ତୁ ଏକ ଅଦ୍ଭୁତ ନୀରବତା ଚାରିଆଡ଼େ । ଦୁଇଟି ଉଲଗ୍ନ, ପରିଚିତ ଶରୀର ବିଭିନ୍ନ ଅଂଶରେ ଏକାକାର ହୋଇ ସେହି ନୀରବତା, ସ୍ଥିରତାକୁ କ୍ଷତବିକ୍ଷତ କରିବାରେ ବ୍ୟସ୍ତ । କିଛି ରୋମାଞ୍ଚ, କିଛି ଅସ୍ଥିରତା – ସମୟ ଓ ସୁଯୋଗର ସୀମା ବିରୁଦ୍ଧରେ ବିଦ୍ରୋହ କରିବସିଲେଣି । ଆଖି ଆଗରେ ମୁଁ କ'ଣ ଦେଖୁଛି ? ତା'ର ବିଭିନ୍ନ ଆବେଗ ଓ ଭାଷା ? ପୂର୍ବପରିଚିତ ଏକ ନାରୀର ଶରୀର ?

କ'ଣ ମୁଁ ଅନୁଭବ କରୁଛି ? ବାସ୍ତବ ନା କାଳ୍ପନିକ ଆନନ୍ଦ ? କିଛି ନ ଖୋଜି, ନ ହଜାଇ – ପାଇବାର ଆନନ୍ଦ ? ନା ମନ ଭିତରେ ନିତିଦିନିଆ ଜୀବନର ନିରର୍ଥକତା ଓ ଦୁଃଖ ପ୍ରତି ବସାବାନ୍ଧିଥିବା ଭୟକୁ ଦୁର୍ବଳ କରି ପକାଉଥିବା ଆନନ୍ଦ ?

କ'ଣ ମୁଁ ଅନୁଭବ କରୁଛି ?

ମୋ ଶରୀରର ଶିଥିଳତା ଅନୁଭବ କରି ଡେଲ୍‌ଫି ଘୁଞ୍ଚିଗଲା ଦୂରକୁ । ମୋ ମନର ଦ୍ୱନ୍ଦ୍ୱ ହଠାତ୍ ଯେମିତି ମୋତେ ଜଣେ ଭିନ୍ନ ମଣିଷ କରି ସାରିଲାଣି, ଯାହାପାଖରେ ମୁଁ ନିଜେ ଅପରିଚିତ, ଆଉ ଡେଲ୍‌ଫି ନାରୀ ନୁହେଁ, ନାଁଟିଏ – କୁଳୁକୁଳୁ ହୋଇ ପାହାଡ଼ତଳେ ବହିଯାଉଥିବା ଝରଣାଟିଏ ନୁହେଁ, ଆଟ୍‌ଲାସ୍‌ରେ ଦେଖାଯାଉଥିବା ହ୍ରଦଟିଏ ।

ଡେଲ୍‌ଫି ମୋ ଅନ୍ୱେଷଣର ରାସ୍ତା ବନ୍ଦ କରିଦେବାକୁ ବସିଛି । ସେ କେବେହେଲେ ମୋ ଅନ୍ୱେଷଣର ଲକ୍ଷ୍ୟ ହୋଇ ନ ପାରେ । ଜୀବନକୁ ଖୋଜିବା ଓ ପାଇବା ଭିତରେ ମୁଁ ନିଜକୁ ଖୋଜି ଚାଲିଛି । ପାଇଛି କ'ଣ, ଏ ପର୍ଯ୍ୟନ୍ତ ଜାଣେନା । ଖୋଜିବା ରାସ୍ତାରେ ଡେଲ୍‌ଫି ସହଯାତ୍ରୀଟିଏ ହୋଇପାରେ, ହୋଇପାରେ ବନ୍ଧୁ, ପ୍ରେମିକା, ଏପରିକି ସ୍ତ୍ରୀ – କିନ୍ତୁ ମୋ ଅନ୍ୱେଷଣର ଲକ୍ଷ୍ୟ ନୁହେଁ ।

ସବୁକିଛି ଗୋଳମାଳିଆ ଲାଗିଲା । ନିଜକୁ ପଚାରିବାକୁ ଲାଗିଲି – ମୁଁ ତା' ହେଲେ ବାହା ହଉଥିଲି କାହିଁକି ? ପ୍ରସ୍ତାବକୁ ତାଙ୍କ ବାପା, ମୋ ବାପା ଅଗ୍ରାହ୍ୟ କରିଦେଲେ ବୋଲି ?

ବିଚିତ୍ର ଭାବନା ମନକୁ ଆସିଲାଣି । ଭାବନାସବୁ ଯୋଡ଼ାଯୋଡ଼ି ହୋଇ ଗଢ଼ିଛନ୍ତି କେତେ ଆଶଙ୍କା, କେତେ ସ୍ୱପ୍ନ ! ନିତିଦିନିଆ ଜୀବନରେ ପୁଣି ସେଇ ଆଶଙ୍କା ହୁଏ ଆଶା, ସ୍ୱପ୍ନ ହୁଏ ସତ... ପୁଣି ସବୁକିଛି ଓଲଟପାଲଟ ହୋଇଯାଏ । ଭାଷା ଜରିଆରେ ଜୀବନକୁ ବୁଝିବା ବନ୍ଦ ହୋଇଯାଏ । କଥା ସୁନ୍ଦର ଭାବରେ କହି, ଯୁକ୍ତିରେ ଜିଣି – ଜୀବନ ହୁଏ ତ ବଞ୍ଚି ହୁଏ, କିନ୍ତୁ ବୁଝିହୁଏନା ।

ଜୀବନରେ କିଛି ପାଇବାକୁ ହେଲେ ସମ୍ଭବତଃ କିଛି ହଜେଇବାକୁ ପଡ଼େ ।

ପାଇବା ଓ ହଜେଇବା କ'ଣ ଗୋଟିଏ ମୁଦ୍ରାର ଦୁଇପାଖ ?

ମୋତେ ଲାଗିଲା ଡେଲ୍‌ଫିକୁ ପାଇ ମୁଁ କିଛିଟା ନିଜକୁ ହଜେଇ ବସିଛି, ମୋର ଅନ୍ୱେଷଣର ରାସ୍ତାରୁ ଦୂରେଇ ଯାଇଛି ।

ମନ ଭିତରେ ପୁରୁଣା, ପରିଚିତ ଆଲବମ୍ ଖୋଲି ଯାଉଛି । ତା'ରି ଭିତରେ ଦେଖାଯାଉଛି ତିନୋଟି ପରିଷ୍କାର ଛବି – ସମୀକ୍ଷା, ରୀତା, ଡେଲ୍‌ଫି । ଚିଲିକା କୂଳରେ ଫ୍ରକ୍‌ପିନ୍ଧା ଝିଅଟିଏ, ଗୋଟିଏ ଗୋଡ଼ ପାଣି ଭିତରେ, ଆରଟି ବାଲିରେ, ଜେଲ୍ ଲାଇବ୍ରେରୀ ପଛଆଡ଼େ କୋଡ଼ିଏ ବାଇଶିବର୍ଷର ଝିଅଟିଏ – ଅତି ବେପରୱା, ଆଉ ଶାନ୍ତିନିକେତନ ଶ୍ରୀସଦନ ହଷ୍ଟେଲ ସାମନାରେ ବସେ ଡାଇଂ ନୀଳ କଟନ୍ ଶାଢ଼ିଟିଏ ପିନ୍ଧି 'ଟାଇମ୍' ମ୍ୟାଗାଜିନ୍ ପଢୁଥିବା ଷୋଳ, ସତର ବର୍ଷର ଝିଅଟିଏ ! ସମୀକ୍ଷା, ରୀତା, ଡେଲ୍‌ଫି – ବିଭିନ୍ନ ଅବସ୍ଥାରେ, ବିଭିନ୍ନ ସ୍ୱପ୍ନକୁ ବଞ୍ଚେଇ ରଖିଥିବା ତିନୋଟି ଅଭୁଲା ଚରିତ୍ର, ମୋତେ ନିଜକୁ ବିଭିନ୍ନ ସମୟରେ ଚିହ୍ନିବାଲାଗି ଯେଉଁମାନେ ସାହାଯ୍ୟ କରିଛନ୍ତି, ପ୍ରେରଣା ଦେଇଛନ୍ତି ଆଗେଇଯିବାକୁ, ଆଉ ନିତିଦିନିଆ, ସମ୍ପର୍କହୀନ, ଅର୍ଥହୀନ ଘଟଣାଭିତରେ ସୃଷ୍ଟି କରିଛନ୍ତି ସମ୍ପର୍କ, ନୂଆ ନୂଆ ସମ୍ଭାବନା ।

ମୁଁ କିନ୍ତୁ ଠିକ୍ ଆଗେଇପାରିବିନି ଆଉ ଜଣଙ୍କ ସହିତ । ନା, ଏଥରକ ମୋତେ ଫେରି ଆସିବାକୁ ପଡ଼ିବ ମୋ' ରାସ୍ତାକୁ, ଦୀପଙ୍କରର ରାସ୍ତାକୁ, ପିଲାଦିନରୁ ଅଜାଣତରେ ଓ ପରେ ଜାଣି ଜାଣି ବାଛିଥିବା ଆଦର୍ଶ ଓ ଲକ୍ଷ୍ୟକୁ ।

## ୫୯

ସମୟ ଥିଲା ଘଟଣାର ସ୍ରୋତରେ ଭାସିଯିବାକୁ ଭଲ ଲାଗୁଥିଲା । ଇଚ୍ଛା ନ କରି ଭାସିଯିବାରେ ଏକ ଆନନ୍ଦ ଥାଏ । ଘଟଣାଗୁଡ଼ିକ ଦୈବିକ ହେଉ ବା ପ୍ରାକୃତିକ ହେଉ, ଇଚ୍ଛାକୃତ ନ ହେଲେ ହେଲା । ଭଲ ଲାଗୁଥିଲା କାହିଁକି, କାରଣ ଖୋଜୁନଥିଲି ଆଗରୁ । କାରଣ ଖୋଜି ବସିଲେ କାଳେ ଘଟଣାଟି ଆଉ ଭଲ ଲାଗି ନ ପାରେ ? ଯୋଜନାଜନିତ ଆନନ୍ଦ କ'ଣ ପ୍ରକୃତ ଆନନ୍ଦ ? ବୁଝୁ ବୁଝୁ, ଆନ୍ଦୋଳିତ ହେବା ପୂର୍ବରୁ ତାହା ସରିଯାଇଥାଏ ବା ହଜିଯାଇଥାଏ । ତାକୁ ପୁଣି ଖୋଜି ଆଣିବା, ପାଇବା – କଷ୍ଟକର ହୋଇଥାଏ ।

ମୁଁ ନିଜ ଇଚ୍ଛାରେ ଜୀବନକୁ ଘଟଣାବହୁଳ କରି ସବୁବେଳେ ଚାହିଁଥିଲି ଜଣେ ଭିନ୍ନ ମଣିଷ ହେବି ବୋଲି, ଅନ୍ୟମାନଙ୍କ ରାସ୍ତା ଛାଡ଼ି ନୂଆ ଏକ ରାସ୍ତାରେ ଆଗେଇଯିବି ବୋଲି । ବିଭିନ୍ନ ଘଟଣା ଜରିଆରେ ନିଜକୁ ଚିହ୍ନିବାର, ନିଜର ବ୍ୟକ୍ତିତ୍ୱର ସଂଜ୍ଞା ନିରୂପଣ କରିବାର ଦାୟିତ୍ୱ ନିଜେ ନେଇଥିଲି । ମୋର ଅସ୍ତିତ୍ୱ, ବ୍ୟକ୍ତିତ୍ୱ ଓ ଜୀବନର ଲକ୍ଷ୍ୟ ନେଇ ଗଢ଼ି ଉଠିଥିଲା ମୋର କାହାଣୀ, ଏକ ଅସରନ୍ତି ଉଦ୍ଭଟ ନାଟକର ସ୍କ୍ରିପ୍ଟ ପରି । ସ୍ରୋତରେ ଭାସିଗଲାବେଳେ ଘଟଣା ପରେ ଘଟଣା ତିଆରି କରିଥିଲା ଭାଷା – ଭିନ୍ନ ଭିନ୍ନ ପରିସ୍ଥିତିରେ ।

ଜୀବନ ମୋ ପାଇଁ ଥିଲା ଏକ ବିରାଟ ପରୀକ୍ଷା, ଚାରିକଡ଼ର ପୃଥିବୀ ଥିଲା ମୋର ପରୀକ୍ଷାଗାର । ଯେତେଥର ଆଘାତ ପାଇଛି, ରକ୍ତାକ୍ତ ହୋଇଛି, ସେତିକି ମୁଁ ଉତ୍ସାହିତ ହୋଇଛି, ଉଦ୍ଦୀପନା ମୋର ବଢ଼ିଛି । ଆହୁରି ଆଘାତ ପାଇଁ ମୁଁ ଧାଇଁଛି । କାରଣ, ମୁଁ ଅନୁଭବ କରିଛି – ଜୀବନରେ ଆନନ୍ଦ ସିଧାସଳଖ ଆସେନା । ଯନ୍ତ୍ରଣା ଜରିଆରେ ହିଁ ତାହା ମିଳେ, ଅନୁଭବ କରିହୁଏ ।

ତେଣୁ ଜୀବନ ଆରମ୍ଭରୁ ଘଟଣା ପରେ ଘଟଣା, ସମସ୍ୟା ପରେ ସମସ୍ୟାକୁ ମୁଁ ଆମନ୍ତ୍ରଣ କରିଥିଲି, ନିଜର କରିନେଇଥିଲି । ଆଘାତକୁ, ଯନ୍ତ୍ରଣାକୁ 'ଆଘାତ' ବା 'ଯନ୍ତ୍ରଣା'ର ସଂଜ୍ଞା ଦେଇ ନଥିଲି – ଜୀବନର ଏକ ଅଂଶ ଭାବେ ଗ୍ରହଣ କରିଥିଲି ।

ଭିନ୍ନ ରାସ୍ତାରେ ଚାଲିବାର, ଭିନ୍ନ ଭାବରେ ବଞ୍ଚିବାର ଆକସ୍ମିକତା ଆଣିଥିଲା ମୋ ଜୀବନରେ ରୋମାଞ୍ଚ, ପରିଚିତ ଲକ୍ଷ୍ୟହୀନତା ବଦଳରେ ଅଜସ୍ର ସମ୍ଭାବନା । ମୁଁ ଆଗେଇ ଚାଲିଲି ସେହି ରୋମାଞ୍ଚ ଓ ସମ୍ଭାବନା ଦିଗରେ, ଜୀବନର ହାର୍-ଜିତ୍

ଖେଳରେ । ଶେଷରେ କ'ଣ ହେବ ସେ ଆଡ଼କୁ ନଜର ନଦେଇ, ଲାଭ-କ୍ଷତିକୁ ଭ୍ରୂକ୍ଷେପ ନକରି । ଆଶା ରଖିଥିଲି – ମୋ ଜୀବନରେ ଉପାର୍ଜନ କରିଥିବା ସମସ୍ତ ଆନନ୍ଦ ଓ ଯନ୍ତ୍ରଣାର ଅନୁଭୂତି ତିଆରି କରିବ ଏକ ଅଭୁଲା କାହାଣୀ, ଇତିହାସର ସ୍ୱୀକୃତ ପୃଷ୍ଠାରେ ମୁଁ ହେବି ଶତାବ୍ଦୀର ଜଣେ ସଫଳ କଥାକାର, ଆଉ ଜଣେ କାଫ୍‌କା ବା ଡସ୍ତୋଭସ୍କି । ସମାଜର ପରିଚିତ ମାପକାଠିରେ ଦୁହେଁ ବିଫଳ ହେଲେହେଁ ଇତିହାସର ପୃଷ୍ଠାକୁ ସେମାନେ ଚାଲିଯାଇଥିଲେ – ବିଶ୍ୱବରେଣ୍ୟ କଥାକାର ଭାବେ ।

ମୋର ଲକ୍ଷ୍ୟ ସହଜ ନଥିଲା, କିନ୍ତୁ ଥିଲା ସ୍ପଷ୍ଟ, ଆଉ ସେହି ଲକ୍ଷ୍ୟସ୍ଥଳୀରେ ପହଞ୍ଚିବା ପାଇଁ ମୋ ଜୀବନର ଅନେକ ଘଟଣା ମୁଁ ହିଁ ଘଟେଇଥିଲି । ସରଳ ପରିସ୍ଥିତିକୁ କରିଥିଲି ଜଟିଳ, ଜଟିଳକୁ ସରଳ, ଆଘାତ ସୃଷ୍ଟି କରିଥିଲି ଆନନ୍ଦରୁ, ଉଚ୍ଛୃଙ୍ଖଳତାକୁ ଗ୍ରହଣ କରିଥିଲି ପ୍ରେମ ଭାବେ, ସ୍ମୃତି ଥିଲା ମୋ ପାଇଁ ସମ୍ପର୍କ, ସମ୍ଭାବନା ହେଲା ବନ୍ଧୁତା ।

ସବୁକିଛି ସଜେଇ ନେଲି କଥାକାର ଯେମିତି ସଜେଇ ନିଏ ତାର ବିଷୟବସ୍ତୁ, ଚରିତ୍ର, ଭାଷା ଓ ଶୈଳୀକୁ । ସବୁକିଛି ସଜେଇ ନେଲି ବୋଲି ଭାବିଲି, କିନ୍ତୁ କିଛି ଘଟଣା, କିଛି ଅନୁଭବ ରହିଗଲା ମୋ ଅକ୍ତିଆର ବାହାରେ । ଫ୍ରାଙ୍କେନ୍‌ଷ୍ଟାଇନ୍‌ର ଜ୍ୱାଳାରେ ମୁଁ କଲବଲ ହେଲି । ଅସରନ୍ତି ରାତିରେ ଥାଏ ସେହି ପୁରୁଣା ଆକାଶ, ପରିଚିତ ଅନ୍ଧକାର, କିନ୍ତୁ, ଆକାଶରେ ଗୋଟିଏ ହେଲେ ବି ତାରା ନଥିଲା, କେବଳ ଅନ୍ଧକାର ହିଁ ଅନ୍ଧକାର ।

## ୬୦

ଭାରତ-ପାକିସ୍ଥାନ ଯୁଦ୍ଧ । ୧୯୭୧ ଡିସେମ୍ବର । ଢାକାର ପତନ । ମୁକ୍ତିବାହିନୀର ବିଜୟ-ଉଲ୍ଲାସ । କମୋଡର୍ ଚାଟାର୍ଜୀ ଥିଲେ ମୁକ୍ତିବାହିନୀର ନେଭାଲ୍ ଆଡ୍‌ଭାଇଜର୍ । ବାଙ୍ଗ୍‌ଲାଦେଶ ଗଠନ ହେଲା ପରେ ସେ ହେଲେ ଭାରତୀୟ ରାଷ୍ଟ୍ରଦୂତଙ୍କ ପରାମର୍ଶଦାତା । ନୂଆଦିଲ୍ଲୀ କମାଣ୍ଡ ହସ୍ପିଟାଲ୍‌ରେ ଜନ୍ମନେଲା ମିମି – ଆମର ପ୍ରଥମ ସନ୍ତାନ । କ୍ୟାଣ୍ଡଲ୍‌ଲାଇଟ୍‌ରେ ସିଜାରିଆନ୍ ଅପରେଶନ ପରେ । ଯୁଦ୍ଧଯୋଗୁଁ ସମ୍ପୂର୍ଣ୍ଣ ରାଜଧାନୀ ଥିଲା ଅନ୍ଧକାରାଚ୍ଛନ୍ନ । ଭୁବନେଶ୍ୱର ଏୟାର୍‌ପୋର୍ଟ୍‌ରେ କମୋଡର୍ ଚାଟାର୍ଜୀ ବଢ଼େଇଦେଲେ ମିମିର ଫଟୋଗ୍ରାଫ୍ । ଦଶଦିନର ପିଲାଟେ ଦିଶୁଥିଲା ଦୁଇବର୍ଷର ପରି –ଦଶ ପାଉଣ୍ଡ ଓଜନ । ସେ ହେଲା ଡିସେମ୍ବର-ବର୍ଣ୍ଣ...ସାଜିଟାରିୟାନ୍ । ମୁଁ ଛୁଟିରେ ଗଲି ଦିଲ୍ଲୀ – ଡେଲ୍‌ଫି ପାଖକୁ, ଅସୁମାରି ଆନନ୍ଦ ଓ ଉତ୍ତେଜନା ନେଇ । ଚାଣକ୍ୟପୁରୀରେ ସେ ରାତି ଥିଲା ଏକ

ଅସ୍ୱାଭାବିକ ଆନନ୍ଦ ଓ ଅପରିଚିତ ଉତ୍ତେଜନାର ରାତି । ଝିଅଟିକୁ ଛୁଇଁଲାବେଳେ ମୋ ଭିତରେ ଥିବା କଥାକାର ପାଇଁ ଖୋଲିଗଲା ନୂଆ ଏକ ଦିଗ, ଆଉ ଏକ କାହାଣୀ ।

## ୬୧

ଆଉ ଏକ କାହାଣୀ ? ନା, କାହାଣୀ ଭିତରେ କାହାଣୀ ?

ଢାକାରୁ ଡେଲ୍‌ଫି ଲେଖିଛି ଝିଅ ଭଲ ଅଛି, କମୋଡର୍ ଚାଟାର୍ଜୀଙ୍କ ପରିବାରରେ ଆନନ୍ଦ ଓ ଉଲ୍ଲାସର କେନ୍ଦ୍ରବିନ୍ଦୁ ହୋଇଛି । ପାର୍ଟି ପରେ ପାର୍ଟି । ମୋର ପାସ୍‌ପୋର୍ଟ୍ ହୋଇଗଲାଣି । ବାଂଗ୍ଲାଦେଶ ଯିବାପାଇଁ ନିମନ୍ତ୍ରଣ । ଖାଲି ସମ୍ମତି ଦେଲେ ଫ୍ଲାଇଟ୍ ଟିକେଟ୍ ବି ଆସିଯିବ ।

ମୁଁ ଖୁସି ହେବାକୁ ଚେଷ୍ଟା କରି ଖୁସି ହୋଇ ପାରୁନି । କଣ କୋଉଠି ଗୋଟେ ଅଟକି ଯାଉଛି, ମୁଁ ପାରୁନି । ଚେଷ୍ଟା କରି କଣ କିଏ ଖୁସି ହୋଇପାରେ ? କେତୋଟି ଘଟଣା ବା ପରିସ୍ଥିତିର ଆଗ ପଛ ଦେଖିବସେ । ପିଲାଙ୍କ ସହିତ ଡ୍ରାମାରେ ଷ୍ଟେଜ୍ ଉପରକୁ ଆସେ ଜଣେ ଯୁଦ୍ଧଫେରନ୍ତା ପାଗଳର ଭୂମିକାରେ –

'ବାଘ ? ହାଃ, ହାଃ, ହାଃ,... କ୍ୟାପ୍‌ଟେନ୍ ମନୋଜ୍ ପଟ୍ଟନାୟକ ପାଇଁ ବାଘ ହେଉଛି ଗୋଟେ କ୍ୟାଲେଣ୍ଡର୍‌ର ଛବି...'

ଦର୍ଶକ-ଗ୍ୟାଲେରୀରୁ, ଷ୍ଟେଜ୍ ଭିତରୁ କରତାଳି । ପରବର୍ତ୍ତୀ ଡାଏଲଗ୍ ଆଉ ମନେ ପଡ଼ିଲାନି । ମନେ ପଡ଼ିଥିଲେ ବି, କହିଥିଲେ ବି, ଦର୍ଶକଙ୍କ ଲମ୍ବା କରତାଳିରେ ସେଗୁଡ଼ା ହଜିଯାଇଥାନ୍ତା । ମୁଖ୍ୟ ଅତିଥି ସଙ୍ଗୀତ ମହାବିଦ୍ୟାଳୟର ପ୍ରିନ୍ସିପାଲ୍ ଡଃ. ମିନତି ମିଶ୍ର 'ଶ୍ରେଷ୍ଠ ଅଭିନେତା' ପୁରସ୍କାର ଘୋଷଣା କଲାବେଳକୁ ତାଙ୍କୁ ବାରଣ କରାଗଲା । ଆଉ ଜଣକୁ ବାଛିବାପାଇଁ କୁହାଗଲା, କାରଣ ମୁଁ ଛାତ୍ର ନଥିଲି, ଥିଲି ଅଧ୍ୟାପକ ଓ ନାଟ୍ୟ ସଂସଦର ଉପଦେଷ୍ଟା – ପୁରସ୍କାର ପାଇବା ପାଇଁ ହକଦାର ନୁହେଁ ।

ମନେ ପଡ଼ିଗଲା ଶାନ୍ତିନିକେତନରେ ଡେଲ୍‌ଫି ସହିତ ବର୍ଣ୍ଣାର୍ଡ୍ ଶ'ଙ୍କର 'ଆର୍ମ୍ସ ଯାଣ୍ଡ୍ ଦା ମ୍ୟାନ୍'ର ପ୍ଲେ ରିଡ଼ିଂ – ପ୍ରଥମେ ମୋ ସହିତ ଅଭିନୟ କରିବାକୁ ସେ ରାଜି ହେଉ ନଥିଲା ।

ଆଉ ଆଜି ଜୀବନର ରଙ୍ଗମଞ୍ଚରେ... ଡେଲ୍‌ଫି ଆଉ ମୁଁ... କ'ଣ ଅଭିନୟ କରୁଛୁ ?

ବଞ୍ଚିବାର ଅନ୍ୟ ନାମ ନିଶ୍ଚିତ ଭାବେ କିଛିଟା ଅଭିନୟ, ଆତ୍ମ-ପ୍ରତାରଣା... ସୋମ୍ୟାନ୍ ସିପ୍ ।

ସେହି ଅଭିନୟ ବେଳେ ବେଳେ ଏତେ ଜୀବନ୍ତ, ଏତେ ବାସ୍ତବ ହୋଇଯାଏ ଯେ ଜାଣି ହୁଏନା କେତେବେଳେ, କେଉଁ ପରିସ୍ଥିତିରେ ତାହା ବ୍ୟକ୍ତିତ୍ୱର ଅଂଶବିଶେଷ ହୋଇଯାଏ, ବଞ୍ଚିବାର, ଜୀବନର ବିଭିନ୍ନତାକୁ ଅନୁଭବ କରିବାର, ବିଚାର କରିବାର ଗୋଟିଏ ପ୍ରକାର ମାଧ୍ୟମ ଓ ଶୈଳୀ ହୋଇଯାଏ । ପରଦାର ଆଗରେ ଓ ପଛରେ ମୁଁ ନିଶ୍ଚିତ ଭାବେ ଅଭିନୟ କରି ପାରୁଥିଲି ।

## ୬୨

ରାଜଧାନୀର ନିର୍ଜନ କ୍ଲବ୍‌ରେ ସେଦିନ ସ୍ୱିମିଂ ପୁଲ୍‌ପାଖରେ ଚିକେନ୍ ସୁଇଟ୍‌କର୍ଣ୍ଣ ସୁପ୍ ଅପେକ୍ଷାରେ ବସିଥିଲାବେଳେ ଜଣେ ଭଦ୍ରବ୍ୟକ୍ତି ପାଖକୁ ଆସି ପଚାରିଲେ –

'କ୍ୟାନ୍ ଆଇ ଜଏନ୍ ୟୁ ?'

ଭଦ୍ରବ୍ୟକ୍ତିଜଣକ ଛ' ଫୁଟ ଉପରେ । ଜଣେ ଆର୍ମି ଅଫିସରଙ୍କ ଚେହେରା ଓ କଥାବାର୍ତ୍ତା । ବସୁ ବସୁ ମଗେଇଲେ ବ୍ଲାକ୍ ଲେବ୍ଲ୍ ବିଅର୍, ତା ସହିତ ତନ୍ଦୁର୍ ଚିକେନ୍ ଓ ଫିଙ୍ଗର୍ ଚିପ୍ସ୍ ।

ମିନିଟ୍ କେତେଟା ଭିତରେ ଜାଣିପାରିଲି ସେ ଥିଲେ ସୈନିକ ସ୍କୁଲର ପ୍ରିନ୍ସିପାଲ କର୍ଣ୍ଣେଲ୍ ଗୁପ୍ତା ।

ତାଙ୍କ ସ୍କୁଲରେ ଭେକାନ୍ସି ଅଛି... ଅଫର୍ ଦେଲେ ଜଏନ୍ କରିବାକୁ । ଦୁଇ ତିନିଟା ଆଡ୍‌ଭାନ୍ସ ଇନ୍‌କ୍ରିମେଣ୍ଟର ବ୍ୟବସ୍ଥା ବି ହୋଇ ପାରିବ । ତା ଛଡ଼ା ସବ୍‌ସିଡାଇଜ୍‌ଡ୍ କ୍ୟାଣ୍ଟିନ୍... ଇତ୍ୟାଦି ।

ମୁଁ ମାସକ ଭିତରେ କଲେଜ ଛାଡ଼ି ସୈନିକ ସ୍କୁଲରେ । ଡେଲ୍‌ଫି ବି ଖୁସି । ବଡ଼ ଘର, ଘର ଆଗରେ ଲମ୍ବା ଖେଳପଡ଼ିଆ, ପରିଷ୍କାର ଡର୍ମିଟରୀ, କ୍ୟାଣ୍ଟିନ୍... ମୋଟ ଉପରେ କିଛିଟା ମିଲିଟାରୀ ପରିବେଶ । ଡେଲ୍‌ଫିକୁ ଭଲ ଲାଗିଲା । ଏ ଭିତରେ କମୋଡର୍ ରିଟାୟର୍ କରି କଲିକତା ସଲ୍ଟ ଲେକ୍‌ରେ, ନିଜ ଘରେ । ଡେଲ୍‌ଫିର କଲିକତା ଯିବା ଆସିବା ଲାଗିରହିଲା ।

ବର୍ଷେ ଗଡ଼ିଗଲା... ତା ପରେ ଦି ବର୍ଷ ।

ସେଦିନ ବର୍ଷା... ଦିନ ଦୁଇଟାରୁ ରାତିତମାମ ଲାଗିରହିଲା । ଝିଅ ଶୋଇଗଲାଣି । ରାତିରେ ଆଉ କଣ ଖାଇବା ଭାବି ଡେଲ୍‌ଫି କଲା ଫ୍ରେଞ୍ଚ୍ ଟୋଷ୍ଟ୍, ଆଉ କଫି ।

କଥା ପଡୁ ପଡୁ ଆର୍ମି ଲାଇଫ୍... ପାର୍ଟି, ପିକ୍‌ନିକ୍, କ୍ଲବ୍‌ଲାଇଫ୍ ବିଷୟ ଚାଲିଲା । କହୁ କହୁ ମୁଁ କହି ପକାଇଲି –

'ଗ୍ଲାମର୍... ଆଉ ରୁଟିନ୍ ଜୀବନ.. ଭଲ ପେ ସ୍କେଲ୍ ଓ ପର୍କ୍ସ କଣ ଜୀବନରେ ସବୁ କିଛି ? ଓଡ଼ିଶାରୁ ଅନେକ ପର୍ମାନେଣ୍ଟ କମିଶନ୍ ପାଇ ମଧ୍ୟ ଯାଇନାହାନ୍ତି ।'

'ଦ୍ୟାଟ୍ସ୍ ଏ ଲିଟ୍ଲ୍ ଟୁ ମଚ୍'... କହି ରାଗିଗଲା ଡେଲ୍‌ଫି ।

'ଡିଫେନ୍ସରେ କ୍ଲାସ୍ ୱାନ୍ ସର୍ଭିସ୍ ପାଇଲା ପରେ ଯାଇନାହାନ୍ତି ?'– ତା ଆଖିରେ ସନ୍ଦେହର ପ୍ରଶ୍ନବାଚୀ ।

ଏକ ଦୁର୍ବଳ 'ହଁ' ଟିଏ ମୋ ମୁହଁରୁ ବାହାରି ଆସିଲା । ମୁଁ ଭଲକରି ଜାଣିଲି – ଡେଲ୍‌ଫି ମୋ କଥାକୁ ଆଦୌ ବିଶ୍ୱାସ କରୁନି । ସ୍ୱାଭିମାନ କ୍ଷୁର୍ଣ୍ଣ ହେଲାପରି ଲାଗିଲା ମୋର । କ'ଣ ହେଲା କେଜାଣି କହି ପକେଇଲି –

'ଆଚ୍ଛା ବିଶ୍ୱାସ କରୁନ ତ ? ଠିକ୍ ଅଛି, ବର୍ଷଟିଏ ଅପେକ୍ଷା କର.. ଦେଖିବ । ମୁଁ ତୁମ ପାଖକୁ ଜଣକୁ ଆଣିବି ଯିଏକି ଆର୍ମି ସର୍ଭିସ୍ ସିଲେକ୍‌ସନ୍ ବୋର୍ଡ଼(ଏସ୍.ଏସ୍.ବି.)ରେ ସିଲେକ୍ଟ ହୋଇ ମଧ୍ୟ ଯିବନି ।'

'ଆଇ ଇଫ୍...' ଡେଲ୍‌ଫି କହି ରହିଗଲା ।

ମୁଁ ନୀରବ ହୋଇଗଲି ସତ, କିନ୍ତୁ ହୃଦୟ ଭିତରେ ଅନୁଭବ କଲି ଏକ ପୂର୍ବପରିଚିତ ଉତ୍ତେଜନା । ଏକ ଜଟିଳ ପରିସ୍ଥିତିକୁ ମୁକାବିଲା କରିବାର ଫର୍ମୁଲା ବହୁ ଆଗରୁ ପରୀକ୍ଷା କରିଛି । ଅନେକାଂଶରେ ସଫଳ ବି ହୋଇଛି । ସମସ୍ୟା ଯେତେ ଜଟିଳ ହୋଇଛି, ମୋର ଅନ୍ତର୍ନିହିତ ସାହସ ଓ ଶକ୍ତି ସେତିକି ବଢ଼ିଛି । ଜୀବନରେ ଚ୍ୟାଲେଞ୍ଜ୍ ପରେ ଚ୍ୟାଲେଞ୍ଜର ମୁକାବିଲା କରିଛି ପିଲାଟି ଦିନରୁ, କଲେଜରେ ଇଲେକ୍ସନ୍ ଓ ଛାତ୍ର ଆନ୍ଦୋଳନ ସମୟରେ – ବ୍ରହ୍ମପୁର, ରାଉରକେଲା, କଲିକତା ଓ ଶାନ୍ତିନିକେତନରେ, ଦିଲ୍ଲୀରେ ବାହାଘର ବେଳେ...

ଆଗରେ ଆଉ ଏକ ଚ୍ୟାଲେଞ୍ଜ୍ ! ମୁକାବିଲା କରିବାକୁ ପଡ଼ିବ । ସେଥିପାଇଁ କେବଳ ମାନସିକ ନୁହେଁ, ଶାରୀରିକ ପ୍ରସ୍ତୁତି ମଧ୍ୟ ଦରକାର । ମୁଁ ସେହି ପ୍ରସ୍ତୁତିରେ

ଲାଗିଗଲି । ସୈନିକ ସ୍କୁଲ ପିଲା ଏନ୍.ଡି.ଏ. ପାଇଁ ପ୍ରସ୍ତୁତ ହେଉଥିଲାବେଳେ ମୁଁ ବି ସେମାନଙ୍କ ସହ ସାମିଲ୍ ହୋଇଗଲି । ତାଙ୍କୁ କୋଚିଂ ଦେଲାବେଳେ ମୁଁ ମଧ୍ୟ ଅନେକ ଜିନିଷ ଶିଖିନେଲି – କିଛିଟା ବହି ଓ ମ୍ୟାଗାଜିନ୍‌ରୁ, କିଛିଟା କର୍ଣ୍ଣେଲ୍ ଗୁପ୍ତାଙ୍କ ଠାରୁ । ଆପ୍ଟିଚ୍ୟୁଡ୍ ଟେଷ୍ଟ, ସାଇକୋଲୋଜିକାଲ୍ ଟେଷ୍ଟ, ଥିମାଟିକ୍ ଆପ୍ରିସିଏସନ୍ ଟେଷ୍ଟ (ଟି.ଏ.ଟି.), ଓ.କ୍ୟୁ. (ଅଫିସର୍‌ଲାଇକ୍ କ୍ୱାଲିଟିଜ୍), ଅବ୍‌ଷ୍ଟାକ୍ଲ ରେସ୍, ଗ୍ରୁପ୍‌ଟେଷ୍ଟ, ଏକ୍ସଟେଂପର୍ ସ୍ପିଚ୍, ଗ୍ରୁପ୍ ଡିସ୍‌କସନ୍... ବଗୈରହ, ବଗୈରହ । ଡେଲ୍‌ଫିକୁ କିଛି ନ କହି ଆର୍. କେ. ପୁରମ୍, ଦିଲ୍ଲୀ ଆପ୍ଲାଇ କଲି ଆର୍ମି ହେଡ୍‌କ୍ୱାର୍ଟର୍ସ୍‌କୁ, ଆର୍ମି ଏଜୁକେଶନ୍ କୋର୍ (ଏ.ଇ.ସି.) ପାଇଁ ।

କଲ୍ ଲେଟର୍ ଆସିଗଲା । କର୍ଣ୍ଣେଲ୍ ଗୁପ୍ତା କଥାପ୍ରସଙ୍ଗରେ ଡେଲ୍‌ଫିକୁ କହିଦେଲେ । ଆଣ୍ଟିସିପେଟରି କଂଗ୍ରାଚ୍ୟୁଲେଶନ୍ସ ମଧ୍ୟ ଦେଇଗଲେ । ଡେଲ୍‌ଫି ଭାରି ଖୁସି । ବାବାଙ୍କୁ ଜଣେଇବ କହିବାରୁ ମୁଁ ମନା କଲି । ଫାଇନାଲ୍ ସିଲେକ୍‌ସନ୍ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲି । କାରଣ ଆର୍ମିରେ ସିଲେକ୍‌ସନ୍ ପ୍ରସେସ୍ ଅନ୍ୟରକମର – ବିଭିନ୍ନ ସ୍ତରରେ ପ୍ରାର୍ଥୀମାନେ କଟି ଯାଆନ୍ତି । ଶେଷରେ ମେଡିକାଲ୍ ଚେକ୍‌ଅପ୍ ହୁଏ, ସେଥିରେ ବି ଥୋଡ଼େଖଣ୍ଡେ କଟନ୍ତି । ତା ପରେ 'ମେରିଟ୍ ଲିଷ୍ଟ' ତିଆରି ହୁଏ । ସେ ଲିଷ୍ଟରେ ନାଁ ଥିଲେ ବି ଭେକାନ୍ସି ପୋଜିସନ୍ ଉପରେ ସିଲେକ୍‌ସନ୍ ନିର୍ଭର କରେ । ତା'ପରେ ପୁଣି ପୋଲିସ୍ ଭେରିଫିକେସନ୍ । ଯାହା ହେଉ, ପୋଲିସ୍ ଭେରିଫିକେସନ୍ ଭୟ ଆଉ ନାହିଁ । ପାସ୍‌ପୋର୍ଟ ହେଲାବେଳେ ସେଇଟା ସରିଯାଇଛି । ବିଳମ୍ବରେ ହେଲେ ବି ଯେତେ ସବୁ ଆମ ନାଁରେ କେଶ୍ ଥିଲା, ସରକାର ସବୁ ଉଠେଇନେଲେ । ସେଥିପାଇଁ ସକ୍ରିୟ ସାହାଯ୍ୟ କରିଥିଲେ ଡଃ ହରେକୃଷ୍ଣ ମହତାବ, ଡଃ ରାଧାନାଥ ରଥ, ଆଡ୍‌ଭୋକେଟ୍ ଅଶୋକ୍ ଦାସ, ଆଡ୍‌ଭୋକେଟ୍ ବିପିନ ରଥ, ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟ, ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ, ଆଡଭୋକେଟ୍ ପ୍ରବୀର ପାଲିତ୍ ।

କିନ୍ତୁ ଅସୁବିଧା ହେଲା ଅଲ୍-ଇଣ୍ଡିଆ ରେଲୱେ ଷ୍ଟ୍ରାଇକ୍ ଯୋଗୁଁ । ଜବଲପୁର କ୍ୟାଣ୍ଟନ୍‌ମେଣ୍ଟରେ ଠିକ୍ ସମୟରେ ନ ପହଞ୍ଚିବାର କାରଣ ହେଲା ଲମ୍ବା ବସ୍ ଯାତ୍ରା । ଭୁବନେଶ୍ୱରରୁ ରାଏପୁର, ରାଏପୁରରୁ ଜବଲ୍‌ପୁର – ବସ୍‌ରେ ଯାଇ ପହଞ୍ଚିଲାବେଳକୁ ଚବିଶ ଘଣ୍ଟା ବିଳମ୍ବ । 'କରିବି କ'ଣ ଏବେ'– ଭାବିଲି ।

ନିଜ ଭିତରେ ଥିବା ବହୁ ସଞ୍ଚିତ ଓ ବହୁବାର ବ୍ୟବହୃତ ବିଶ୍ୱାସ କାମରେ ଆସିଲା । ଗ୍ରୁପ୍ ଟେଷ୍ଟିଂ ଅଫିସର୍ (ଜି.ଟି.ଓ.) ଙ୍କୁ ବସ୍ ଟିକେଟ୍ ଦେଖେଇ ପହଞ୍ଚିବାରେ ବିଳମ୍ବ ମୋର ଇଚ୍ଛାକୃତ ନଥିଲା ବୋଲି କହିଲି । ସେ ତାଙ୍କ ପତ୍ନୀଙ୍କୁ ଡାକି ପରିଚୟ

କରେଇ ଦେଲେ ଓ ପରେ ପରେ ଚା'ର ବ୍ୟବସ୍ଥା ହେଲା । ପ୍ରଥମ ଦିନ ଖାଲି ଫର୍ମଗୁଡ଼ାକ ଫିଲପ୍ କରିବା କଥା । ପରିଦିନ ସକାଳେ ତାହା କରିବାକୁ ପରାମର୍ଶ ଦେଇ ରାତିରେ ସେ ମୋତେ ମେସ୍‌କୁ ପଠେଇଦେଲେ ।

ତିନି ଚାରିଦିନ ଟେଷ୍ଟ୍‌ସବୁ ଚାଲିଲା । ଶେଷରେ ହେଲା ଇଣ୍ଟର୍ଭ୍ୟୁ । ଆମ ବ୍ୟାଚ୍‌ରେ ୧୯ ଜଣ ଥିଲେ । ମୋ ଟେଷ୍ଟ୍ ନମ୍ବର ଥିଲା ୧୯, କଟିଗଲେ ୧୬ ଜଣ । ମେଡିକାଲ୍ ବୋର୍ଡ୍ ପାଇଁ ରହିଲେ ୩ ଜଣ – ମୀରଟ୍‌ରୁ ଜଣେ, ପାଟନାରୁ ଜଣେ, ଆଉ ମୁଁ ।

ଜୀବନର ହାର୍-ଜିତ୍ ଖେଳରେ ପୁଣି ଜିତିଗଲି ମୁଁ, ହାରିଗଲା ଡେଲ୍‌ଫି । ସେ ପ୍ରାୟ କାନ୍ଦି ପକେଇଲା ଯେତେବେଳେ ଶୁଣିଲା ମୁଁ ଆର୍ମିରେ ଜଏନ୍ କରିବିନି ବୋଲି । ମନେ ପକେଇ ଦେଲି ତାକୁ ବର୍ଷେ ତଳେ କଣ କହିଥିଲି – 'ଓଡ଼ିଶାରୁ ଅନେକ ଆର୍ମିରେ କମିସନ୍ ପାଇ ମଧ୍ୟ...'

## ୬୩

ବର୍ଷେ ଆଗରୁ ମୁଁ ଷ୍ଟେଟ୍ ପବ୍ଲିକ୍ ସର୍ଭିସ୍ କମିସନ୍ ଇଣ୍ଟରର୍ଭ୍ୟୁ ଦେଇଥିଲି – ସେ କଥା ସମ୍ପୂର୍ଣ୍ଣ ଭୁଲି ଯାଇଥିଲି । ଜଣଙ୍କଠାରୁ ପୋଷ୍ଟିଂ ଅର୍ଡ଼ର ଗଲାଣି ଶୁଣି ଡି.ପି.ଆଇ. ଅଫିସକୁ ଦିନେ ଖରାବେଳେ ଫୋନ୍ କଲି ।

ସେ ପାଖରୁ ରିସିଭର୍ ଉଠେଇଲେ ଡି.ପି.ଆଇ. – ନିଜେ ପ୍ରଫେସର ଦାସ ।

ମୋ ନାଁ ଶୁଣିବା ପରେ ଜଏନ୍ କଲିଣି କି ନା, ପଚାରିଲେ ।

ମୁଁ ଡରି ଡରି କହିଲି - 'କାଇଁ ଆପଏଣ୍ଟ୍‌ମେଣ୍ଟ୍ ଲେଟର୍ ତ ମୁଁ ପାଇନି ?'

ପ୍ରଫେସର ଦାସ କହିଲେ ସ୍ଥାୟୀ ଠିକଣା, ଗାଁ ଆଡ୍ରେସରେ ହୁଏତ ଯାଇଛି... ଇତ୍ୟାଦି । କିଛି ସମୟ ଅପେକ୍ଷା କରିବାକୁ କହି ଷ୍ଟେନୋଙ୍କୁ ଡାକିଲେ... (ଫୋନ୍‌ରେ ମୁଁ ଶୁଣିପାରୁଥାଏ) ଓ କହିଲେ ଯାଜପୁର କଲେଜରେ ମୋର ପୋଷ୍ଟିଂ ହୋଇଛି ।

ମୁଁ ଅନୁରୋଧ କଲି ରାଉରକେଲାରେ ଦେବାଲାଗି । ସେ ଆଶ୍ଚର୍ଯ୍ୟ ହୋଇଗଲେ । ପ୍ରଥମ ପୋଷ୍ଟିଂ ସମସ୍ତେ କଟକ, ଭୁବନେଶ୍ୱର ମାଗନ୍ତି... ମୁଁ ଏତେ ଦୂର ରାଉରକେଲା ମାଗୁଛି କାହିଁକି । କହିଲେ, ଘର ଫର ମିଳିବନି, ଭଡ଼ା ବହୁତ... ଇତ୍ୟାଦି । ମୁଁ କହିଲି, ସେମିତି କିଛି ଅସୁବିଧା ହେବନି, ମୁଁ ସେଠିକାର ପୁରୁଣା ଛାତ୍ର... ଅନେକ ଜଣାଶୁଣା ଅଛନ୍ତି । ଟାଉନ୍ ଆଡ୍‌ମିନିଷ୍ଟ୍ରେଟର୍ (ଟି.ଏନ୍.ଏ.)ଙ୍କ ସହ ମୋ ସମ୍ପର୍କ ଆଗରୁ ରହିଛି, ଆଇ.ଏ.ଏସ୍.ରେ ପୋଜିସନ୍ ରଖିଥିଲେ ।

ଶେଷରେ ଏକ ଲମ୍ବା ଫ୍ୟାରୱେଲ୍-ଉତ୍ସବ ସାରି ଆମେ ପହଞ୍ଚିଲୁ ଇସ୍ପାତ ନଗରୀ ରାଉରକେଲାରେ । ପୁରୁଣା ସହର, ପୁରୁଣା ବନ୍ଧୁ, ପୁରୁଣା କଲେଜ । ଦୈନନ୍ଦିନ ଜୀବନ ସେଠି ଆଗରେ ଲମ୍ବିଯାଇଥିବା ରିଙ୍ଗ୍‌ରୋଡ୍ ପରି । ଯାତ୍ରାର ଆରମ୍ଭ ଯେଉଁଠି, ଶେଷ ସେଇଠି । ସକାଳେ ଯାହାଙ୍କୁ ଦେଖିଥିବ, ରାତିରେ ପୁଣି ତାଙ୍କୁହିଁ ଦେଖିବ – ଠିକ୍ ସେହି ଜାଗାରେ – ଇସ୍ପାତ୍ ଜେନେରାଲ୍ ହସ୍ପିଟାଲ୍ (ଆଇ.ଜି.ଏଚ୍.) ହେଉ ବା ଆମ୍ବାଗାନ୍ ହେଉ, ସେକ୍ଟର ୫ ମାର୍କେଟ କଂପ୍ଲେକ୍ସ ହେଉ ବା ସିଭିକ୍ ସେଣ୍ଟର୍ ହେଉ ।

ଭିନ୍ନ ଭିନ୍ନ ପ୍ରଦେଶର ଲୋକ ପ୍ଲାଣ୍ଟ୍‌ରେ କାମ କରନ୍ତି । ସମସ୍ତେ ସମସ୍ତଙ୍କୁ ଚିହ୍ନନ୍ତି । ରହିଗଲେଣି କୋଡ଼ିଏ ପଚିଶ ବର୍ଷ ଏକାଠି, ଚିହ୍ନିବେନି ?

ଦଶବର୍ଷତଳେ ପଢୁଥିବା କଲେଜ୍‌ରେ ମୁଁ ପଢ଼େଇବାକୁ ଆରମ୍ଭ କଲି । ପ୍ରଥମ କ୍ଲାସ ଥିଲା ନନ୍‌ଡିଟେଲ୍ କ୍ଲାସ – ରବୀନ୍ଦ୍ରନାଥଙ୍କ ଜୀବନୀ । ଭାବପ୍ରବଣ ହେବା ସ୍ୱାଭାବିକ, ଯେହେତୁ ମୁଁ ଶାନ୍ତିନିକେତନର ଛାତ୍ର । ପଢ଼ାଇଲାବେଳେ ଝିଅଟିଏ ପଚାରିଲା – 'ପିଲାମାନେ ସତରେ କ'ଣ ସେଠି ଗଛ ତଳେ ପଢ଼ନ୍ତି ? ବର୍ଷାଦିନେ ?'

'ଆପଣ ରବୀନ୍ଦ୍ରନାଥଙ୍କ ନୋବେଲ୍ ପ୍ରାଇଜ୍ ଦେଖିଛନ୍ତି ? ଛୁଇଁଛନ୍ତି ? କଣ ସୁନାର ନା ରୂପାର ମେଡାଲ୍ ?' – ପଚାରିଲା ପୁଅ ପିଲାଟିଏ ।

## ୬୪

ଅନୁଭୂତି ଭଲ, କିନ୍ତୁ ବେଶୀଗୁଡ଼ାଏ ନୁହେଁ । ଜୀବନକୁ ବୁଝିବାରେ, ଠିକ୍ ବାଟରେ ନେବାରେ ସାହାଯ୍ୟ କରେନା, ବରଂ ଅନୁଭୂତିର ବୈଷମ୍ୟ ଓ ବିଭିନ୍ନତା ଜୀବନକୁ ବୁଝିବାରେ ଅନ୍ତରାୟ ସୃଷ୍ଟି କରେ । ଏଥିରୁ ଉପୁଜିଥିବା ଆନନ୍ଦ ବା ଦୁଃଖ ତ ପର୍ଯ୍ୟାୟ କ୍ରମେ, ବିଧିବଦ୍ଧଭାବେ ଆସେନା (?), ତେଣୁ ସବୁ ଗୋଳମାଳିଆ ହୋଇଯାଏ । ଠିକ୍ କିଛି ବୁଝିହୁଏନା, ଭଲ ଭାବରେ ଘଡ଼ିଏ ବଞ୍ଚି ହୁଏନା ।

ସେକ୍ଟର ୫ ମାର୍କେଟ୍ କଂପ୍ଲେକ୍ସରେ ରହୁଥିବା ଫ୍ଲାଟ୍ ତଳେ କେଲ୍‌ଭିନେଟର୍ ଫ୍ରିଜ୍ ଦୋକାନ । ସେଇଠି ଗୋଟେ ବଡ଼ ଆଇନା । ତା'ରି ଭିତରେ ଦେଖୁଛି ମୁଁ ନିଜକୁ । ନା, ଠିକ୍ ନିଜକୁ ନୁହେଁ – ବାପା ଭୂମିକାରେ ଜଣକୁ । ସାଙ୍ଗରେ ହାତ ଧରି ଛିଡ଼ା ହୋଇଛି ଚାରିବର୍ଷର ଝିଅଟିଏ, କଣ୍ଢେଇ ପରି ଦେଖିବାକୁ । ଗୋଟେ ହାତରେ ଦୁଇଟା କ୍ୟାଡ଼୍‌ବରି ଚକୋଲେଟ୍ ପ୍ୟାକେଟ୍, ଆର ହାତ ବାପାଙ୍କ ହାତମୁଠାରେ ।

ଦୁଇଟା ପ୍ୟାକେଟ୍ କାହିଁକି ? ତା'ର ବି କାରଣ ଅଛି । ସକାଳେ ସ୍କୁଲରୁ ଫେରିବାପରେ ମା' ସାଙ୍ଗରେ ଝଗଡ଼ା । ରାଗି, ତମ୍ ତମ୍ ହୋଇ ମା'କୁ 'ଇଡିୟଟ୍' କହିବାରୁ ମୁଁ ରାଗିଗଲି । ସାଧାରଣତଃ ମୁଁ ରାଗେନା । ଯିଏ 'ସାଧାରଣତଃ' ରାଗେନା, ସିଏ ଯେତେବେଳେ ରାଗିଯାଏ, ବେଶୀକରି ଟିକେ ରାଗିଯାଏ, ଆବଶ୍ୟକତାରୁ ବେଶି । ମୋର ସେହି ଅବସ୍ଥା ହୋଇଥିଲା । ତା ଛଡା 'ଇଡିୟଟ୍' ଶବ୍ଦଟି ଝିଅ ମା'ଠୁଁ ଶୁଣିଛି ନିଶ୍ଚୟ । ମା' କଥା କଥାକେ 'ଷ୍ଟୁପିଡ୍' ଓ 'ଇଡିୟଟ୍' କହିବା ମୁଁ ଶୁଣିଛି । ଇଂଲିଶ୍ ପବ୍ଲିକ୍ ସ୍କୁଲର ପ୍ରଭାବ ବା ମିଲ୍ସ୍ ଯାଣ୍ଡ ବୁନ୍ ରୋମାଣ୍ଟିକ୍ ନଭେଲ୍‌ର – ଠିକ୍ କହିହେବନି । ତେବେ ଛୋଟ ପିଲାଟିର ଅପରିପକ୍ୱ ମନକୁ କେତେ ପରିମାଣରେ ପ୍ରଭାବିତ କରିଛି, ମୁଁ ହଠାତ୍ ବୁଝିପାରିଲିନି । ବୁଝି ନପାରି ଝିଅ ଗାଲରେ ଚାପୁଡ଼ାଟେ ମାରି କହିଲି –

'ଜଷ୍ଟ୍ ଗେଟ୍ ଆଉଟ୍ ଅଫ୍ ଦା ହାଉସ୍ ।'

ତାପରେ ତାକୁ ବାହାରେ ଛିଡ଼ା କରେଇ ଭିତରୁ କବାଟ ବନ୍ଦ କରିଦେଲି । ପ୍ରକୃତରେ କବାଟ ବନ୍ଦ କଲିନାହିଁ, ଖାଲି ଆଉଜେଇଦେଲି । ଲାଗିଲା ଯେମିତି ବନ୍ଦ କରିଦେଲି । (ରାଗରେ ମଧ୍ୟ ଅଭିନୟ ! ଜୀବନ ପ୍ରକୃତରେ ରଙ୍ଗମଞ୍ଚଟିଏ – ସେକ୍ସପିୟର୍‌ଙ୍କ କହିବା ଅନୁସାରେ । କେତେ ସିନ୍‌ରେ ଯେ ଅଭିନୟ କରିବାକୁ ପଡ଼େ ।)

ଆତ୍ମ-ସମୀକ୍ଷାର ପୁଣି ବେଳ ଆସିଗଲା । ଅନୁଭବ କଲି 'ବାପା' ଭୂମିକାରେ ମୁଁ ବିଫଳ । ତେଇଶ ଚବିଶ ବର୍ଷରେ 'ବାପା' ହେଲେ ବିଫଳ ହେବା ସ୍ୱାଭାବିକ । ମାନସିକ ପରିପକ୍ୱତା ଆସି ନଥାଏ, ଆସି ନଥାଏ ଧୈର୍ଯ୍ୟଶକ୍ତି ।

ସେ ଯାହାହେଉ, ମା' ଆଉ ଧୈର୍ଯ୍ୟଧରି ରହିପାରିଲେନି । ବାହାରିଯାଇ ଝିଅକୁ ଗେଲ କରି, କାଖେଇ, ମନେଇ, ଭିତରକୁ ଆଣିବାକୁ ଚେଷ୍ଟା କଲେ । କିନ୍ତୁ ପାରିଲେନି । ମିମି ଆହୁରି ବେଶି କାନ୍ଦିଲା । କାନ୍ଦି କାନ୍ଦି ପୁରା ଲାଲ ହୋଇଗଲାଣି... କଣ୍ଠସ୍ୱର ବଦଳିଗଲାଣି ।

ମୁଁ ଆଉ ପାରିଲିନି । ପ୍ରଥମ ଥର ପାଇଁ ଅନୁଭବ କଲି ରକ୍ତର ସମ୍ପର୍କ, ଶୁଣିପାରିଲି ରକ୍ତର ଡାକ । ଦଉଡିଯାଇ ତାକୁ ଟେକିନେଇ ବହୁତ ଗେଲ କଲି । ଆସ୍ତେ ଆସ୍ତେ ତା'ର କାନ୍ଦ ବନ୍ଦ ହୋଇଗଲା । ମୋତେ ସେ ଜାବୁଡ଼ି ଧରିଥାଏ ।

ମୁଁ କହିଲି – 'ମୁଁ ଗଭୀର ଦୁଃଖିତ... ଭବିଷ୍ୟତରେ କେବେ ଆଉ ସେମିତି କରିବି ନାହିଁ ।' ଦୁଇଟି ଅସମ୍ପୂର୍ଣ୍ଣ ବାକ୍ୟ ମିମିର କୁନି ଓଠରୁ ବାହାରିଆସିଲା –'ବାବା, ମୁଁ ବି ମା'କୁ ଆଉ ସେମିତି କେବେ କହିବି ନାହିଁ ।'

'ସିଜ୍‌ଫାୟାର୍' ହେଲାପରେ ମୁଁ ତାକୁ ତଳ ମାର୍କେଟ୍ କଂପ୍ଲେକ୍ସକୁ ନେଇ ଦୁଇଟା କ୍ୟାଡ୍‌ବରି ଚକୋଲ୍ଲେଟ୍ କିଣି ଦେଇଥିଲି ।

ଆଇନାରେ ଦେଖୁଛି ସେଇ ଦୃଶ୍ୟଟି — ପରିଷ୍କାର ଫଟୋଗ୍ରାଫ୍‌ଟିଏ ପରି—ମଝିରେ ମିମି, ବାଁ ହାତ ମୋ ପାପୁଲିରେ, ଡାହାଣ ହାତରେ ଦୁଇଟା ଚକୋଲେଟ୍ ପ୍ୟାକେଟ୍ ।

## ୬୫

ନିଜ 'ଦୁର୍ବଳତା'କୁ 'ଦୋଷ' କହିବା ପୂର୍ବରୁ ଆଉ ଥରେ ନିଜକୁ ପ୍ରଶ୍ନ — ଆତ୍ମସମୀକ୍ଷାର ଭିନ୍ନ ଏକ ଦିଗ । ଛୋଟ ଝିଅଟିର ମନ ଜାଣିବା, ମନ ବୁଝିବା, ଆଉ ସେହି ମନକୁ ଜୟ କରିବା ସହଜ କଥା ନୁହେଁ । ସେଥିପାଇଁ ନିର୍ଦ୍ଦିଷ୍ଟ ଇଚ୍ଛା ଓ ଉଦ୍ୟମ ଆବଶ୍ୟକ । ଆବଶ୍ୟକ ଏକ ପ୍ରକାର ମାନସିକ ଚାପ, କିନ୍ତୁ ମାନସିକ ଚାପ ପଡୁଥିଲା ବେଶି ଡେଲ୍‌ଫିଠାରୁ । ତାକୁ ଖୁସି ରଖିବା ସହଜ ନଥିଲା । ସେଥିପାଇଁ ବିଧିବଦ୍ଧ ଉଦ୍ୟମ ଦରକାର ହେଲା । ଛୋଟ ଛୋଟ କଥାରେ ଆମ ଭିତରେ ସୃଷ୍ଟି ହେଲା ମତାନ୍ତର, ଭୁଲ ବୁଝାମଣା । ପରସ୍ପରଠାରୁ ଦୈନନ୍ଦିନ ଭିତ୍ତିରେ କିଛି ସମୟ ଦୂରେଇ ଯିବା ପାଇଁ ଆମେ ବାଟ ଖୋଜିଲୁ । ସେ ଗୋଟେ କନ୍‌ଭେଣ୍ଟ ସ୍କୁଲରେ ଜଏନ୍ କଲା, ମୁଁ ନାଟକ ଆଡ଼କୁ ଟାଣି ହୋଇଗଲି ।

ପ୍ରାୟ ପ୍ରତିମାସରେ 'କଳିଙ୍ଗ କଳା ପରିଷଦ'ରେ ଗୋଟିଏ ଲେଖା ନାଟକ ମଞ୍ଚସ୍ଥ ହେବାକୁ ଲାଗିଲା — ଓଡ଼ିଆ, ଇଂରାଜୀ, ତଥା ବଙ୍ଗଳା ନାଟକର ରୂପାନ୍ତର, କାର୍ତ୍ତିକ ରଥଙ୍କ 'ଆଜିର ରାଜା', ଆଲ୍‌ବେୟାର୍ କ୍ୟାମୁଙ୍କ 'କାଲିଗୁଲା' ଠାରୁ ଆରମ୍ଭ କରି 'ସମ୍ରାଟ ଚନ୍ଦ୍ରଗୁପ୍ତ', ଆୟୋନେସ୍କୋଙ୍କ 'ବିଦାୟ ବକ୍ରାଦିତ୍ୟ', ସେକ୍ସପିୟର୍‌ଙ୍କ 'ଅଥେଲୋ' ପର୍ଯ୍ୟନ୍ତ ।

'ଅଥେଲୋ' ମୋର ସବୁଠୁଁ ପ୍ରିୟ ନାଟକ । ସୈନିକ ସ୍କୁଲ ପିଲାଙ୍କୁ ନେଇ ଭୁବନେଶ୍ୱର ରବୀନ୍ଦ୍ରମଣ୍ଡପରେ କରେଇ ଥିଲି । ରଘୁନାଥ ପାଣିଗ୍ରାହୀ ଓ ଶାନ୍ତନୁ ମହାପାତ୍ର ବ୍ୟାକ୍-ଗ୍ରାଉଣ୍ଡ ମ୍ୟୁଜିକ୍ ଦାୟିତ୍ୱରେ ଥିଲେ । ବାଙ୍ଗାଲୋର୍‌ର ନବୀନ୍ ଚେଙ୍ଗାପ୍ପା, ସିକ୍ସଥ୍ ଷ୍ଟାଣ୍ଡାର୍ଡ୍‌ର ପିଲାଟି, ହୋଇଥିଲା ଡେସ୍‌ଡେମୋନା । ପୁଅପିଲାଟି ଝିଅର ଅଭିନୟ କରୁଥିଲା — କେହି ଜାଣିପାରିଲେନି, ଏପରିକି ମୁଖ୍ୟ ଅତିଥି ମେଜର୍ ଜେନେରାଲ୍ ମଧ୍ୟ । ପରେ ପରେ ନବୀନ୍ ପୁନା ଡିଫେନ୍ସ ଏକାଡେମୀରେ ରାଷ୍ଟ୍ରପତିଙ୍କ ପୁରସ୍କାର ପାଇ ଡେରାଡୁନ୍‌ର ଆଇ.ଏମ୍.ଏ.ରେ ତାଲିମ୍ ଶେଷକରି ରାଷ୍ଟ୍ରପତିଙ୍କ ଏ.ଡି.ସି. ହୋଇଥିଲା ।

ଡେଲ୍‌ଫି ଆଉ ଆଉ ଏଥରକ ମୋତେ ଆଉ ଡେସ୍‌ଡେମୋନା ଖୋଜିବାକୁ ପଡ଼ିଲାନି । ଷ୍ଟୁଲିଂ ଯାହାର ଲଣ୍ଡନ୍, ବମ୍ବେ ଓ ଦିଲ୍ଲୀରେ... ତା ଛଡ଼ା ଶାନ୍ତିନିକେତନରେ ତ ବର୍ଣ୍ଣାଡ଼ଶ'ଙ୍କ ନାଟକରେ ମୋ' ସହ ଅଭିନୟ କରିଛି... ଆଉ ଅସୁବିଧା କ'ଣ ? ଚାରିଆଡ଼େ ପୋଷ୍ଟର୍ ଲାଗିଗଲା । ପ୍ରଥମ ଥର ପାଇଁ ଓଡ଼ିଶାରେ – ରାଉରକେଲାରେ ସେକ୍ସପିୟର୍‌ଙ୍କ ଅରିଜିନାଲ୍ ଇଂରାଜୀ ନାଟକରେ ସ୍ୱାମୀ-ସ୍ତ୍ରୀ ଅଭିନୟ କରିବେ । ପ୍ରବଳ ଟିକେଟ୍ ବିକ୍ରି ହେଲା ।

କିନ୍ତୁ କ'ଣ ଗୋଟାଏ ଏପାଖ ସେପାଖ ହୋଇଗଲା... ତର୍କ-ବିତର୍କ ଭିତରେ ଡେଲ୍‌ଫି କହିଲା ରୋଲ୍ କରିବନି । ମୁଁ ବୁଝେଇଲି – ଚାରିଦିନ ଅଛି, ଏମିତି ହେଲେ ଚଳିବ ? ତା'ର ତ ଜିଦ୍ ସେ କରିବନି । ତାର 'ନା' ମାନେ 'ନା'...

ଏଥିରେ ମୋର ଜିଦ୍ ବଢ଼ିଲା । ମୁଁ କହିଲି – 'ତୁମେ କର ବା ନ କର, ଡ୍ରାମା ଠିକ୍ ହେବ, ନିଶ୍ଚୟ ହେବ । ରାଉରକେଲାରେ କାର୍ମେଲ୍ କନ୍‌ଭେଣ୍ଟ୍ ଅଛି, ଇସ୍ପାତ୍ ପବ୍ଲିକ୍ ସ୍କୁଲ, ଡିସୁଜା ସ୍କୁଲ ଅଛି – ହିରୋଇନ୍ ପାଇଁ ଝିଅ ମିଳିବେନି ?'

କହିତ ଦେଲି । କିନ୍ତୁ ଅଖାଡୁଆ ପରିସ୍ଥିତିରେ ପଡ଼ିଗଲୁ – ମୁଁ ଆଉ ଆମ ଡ୍ରାମା କ୍ଲବ୍ । କ୍ଲବ୍ ସେକ୍ରେଟାରୀ ମାନସିଂ – ନିଜେ ଦକ୍ଷ କଳାକାର, ଭଲ ଅର୍ଗାନାଇଜର୍, ମୋତେ ବ୍ୟସ୍ତ ନ ହେବାକୁ କହି ଖୋଜିବାରେ ଲାଗିଲେ ଆର୍ଟିଷ୍ଟ୍ । ଶେଷରେ ମିଳିଗଲା ଏମିତି ଝିଅଟିଏ, ଯାହାର ମେକ୍‌ଅପ୍ ଆଉ ଦରକାର ହେଲାନି – ଗୋରା ତକ୍ ତକ୍ ରଙ୍ଗ... ଜର୍ମାନ୍ ଝିଅଟିପରି ଦେଖିବାକୁ... ସ୍ୱଚ୍ଛ, ସୁନ୍ଦର ମୁହଁଟିଏ, ଇସ୍ପାତ୍ ପବ୍ଲିକ୍ ସ୍କୁଲର ଟେନ୍ଥ୍ ଷ୍ଟାଣ୍ଡାର୍ଡ଼ ଛାତ୍ରୀ... ନାଁ ହେଲା ରୂପା ଗଡ଼ନାୟକ । ସମ୍ପଦ ଗଡ଼ନାୟକ, 'ଷ୍ଟେଟ୍ସମ୍ୟାନ୍'ର ରିପୋର୍ଟର – ତାଙ୍କରି ଝିଅ । ନିଜ ଫ୍ଲାଟ୍‌କୁ ଡାକିଲେ – ସେଇଠି ବେଶୀଭାଗ ରିହିଅର୍ସାଲ୍ ହେଲା । ରୂପା ବର୍ଣ୍ଣ ଆର୍ଟିଷ୍ଟ୍ ପରି ଲାଗିଲା, ତା'ର ଇଂରାଜୀ ଉଚ୍ଚାରଣ, ଅଭିନୟ-ପ୍ରତିଭା ମୋତେ ଆଶ୍ଚର୍ଯ୍ୟ କରିଥିଲା ।

କିନ୍ତୁ ନାଟକ ଭିତରେ ଆହୁରି ଏକ ନାଟକ... ଯାହାର ସ୍କ୍ରିପ୍ଟ ସେକ୍ସପିୟର୍ ଲେଖି ନ ଥିଲେ, ଲେଖିଥିଲେ ଡେଲ୍‌ଫି ଚାଟାର୍ଜୀ । ନାଟକ କରେଇ ଦେବେନି ବୋଲି ଧମକ ଦିଆଗଲା । ଗଡ଼ନାୟକଙ୍କ ଘରେ ଦିନେ ସନ୍ଧ୍ୟାରେ ଡେଲ୍‌ଫି ଆରମ୍ଭ କରିଦେଲା ଗୋଟେ ସିନ୍ । ମୁଁ ବାହାରେ କିଛି ପ୍ରକାଶ ନ କଲେ ବି ଭିତରେ ଭିତରେ ବେଶ୍ ଡରିଗଲିଣି । ମିଃ ଗଡ଼ନାୟକ କିନ୍ତୁ ମୋ ସପକ୍ଷରେ, ଡ୍ରାମା ଯେମିତି ହେଲେ ହେବ । କିନ୍ତୁ ମୁଁ ଜାଣିଛି, କଣ ଗୋଟାଏ କରି ପକେଇବ ଡେଲ୍‌ଫି ନିଶ୍ଚୟ । ଅନେକ ଦୃଷ୍ଟାନ୍ତ ରହିଛି ଆଗରୁ ।

('ତୁଳା' ରାଶିବାଲା ଏଭଳି ପ୍ରକୃତିର ହେବା କଥା ନୁହେଁ । ତେବେ ନ୍ୟୁମରୋଲୋଜି ଆଡୁ ପ୍ରେସର୍ ପଡ଼ିଥିବ, କିଏ ଜାଣେ ?) ଡମ୍ ଡମ୍ ଏୟାର୍‌ପୋର୍ଟ୍‌ରୁ ଥରେ ସିଧା ଭୁବନେଶ୍ୱର ପ୍ଲେନ୍‌ରେ ପଳେଇ ଆସିଥିଲା, ଅନେକ ଦିନ ଚିଠି ଦେଇ ନଥିଲି ବୋଲି । ଆଉଥରେ ସୁମିତ୍ର ସହ ମାଡ୍ରାସ ଏକ୍ସପ୍ରେସ୍‌ରେ ବରହମ୍‌ପୁର, ବାପାଙ୍କୁ ଦେଖା କରିବାକୁ, ମୋତେ ଗୋଟେ ସର୍‌ପ୍ରାଇଜ୍ ଦେବାଲାଗି... ଅଦ୍ଭୁତ କିସମର ଝିଅ ଏଇ ଡେଲ୍‌ଫି ।

ସିଭିକ୍ ସେଣ୍ଟର୍‌ରେ ସେଦିନ ସନ୍ଧ୍ୟାରେ ପରଦା ଖୋଲିବା ଆଗରୁ ମୁଁ ଆମ କ୍ଲବ୍ ମେମ୍ବରମାନଙ୍କୁ କହି ଦେଇଥିଲି ନଜର ରଖିବାକୁ, କେତେବେଳେ ମ୍ୟାଡାମ୍ ଆସି ଷ୍ଟେଜ୍ ଉପରେ ଚଢ଼ିଯାଇ ସିନ୍‌ଟେ ଆରମ୍ଭ କରିଦେବେ... ସବୁ ଉଦ୍ୟମ, ସବୁ ପ୍ରସ୍ତୁତି ଆମର ଫସର ଫାଟିଯିବ ।

ଯାହାହେଉ, ସେଭଳି ଦୁରବସ୍ଥା କିଛି ହେଲାନି – ଭାଗ୍ୟ ଭଲ । ନାଟକଟି ଅତି ଜୀବନ୍ତ ହେଲା ବୋଲି ବହୁ ଦର୍ଶକ ଆସି କହିଲେ ।

ମୋ ଜୀବନର ଆଉ ଏକ ଅଭୁଲା ମୁହୂର୍ତ୍ତ ! ପାଗଳ, ପ୍ରତିହିଂସାପରାୟଣ, ଅଥଚ ଶେଷପର୍ଯ୍ୟନ୍ତ ସ୍ତ୍ରୀକୁ ଭଲ ପାଉଥିବା ଭୂମିକାରେ ମୁଁ । ଡେସ୍‌ଡେମୋନାକୁ ମାରିଦେବାପୂର୍ବରୁ ଏକ ଲମ୍ବା ସଲିଲକି, ପରେ କିସିଂ ସିନ୍‌ଟେ । ମୋର ସଂପୂର୍ଣ୍ଣ ଜଣେ ନିଗ୍ରୋର ମେକ୍‌ଅପ୍– ମୁହଁଟାଯାକ କଳା, ଓଠ ଧଳା । ସେଥିରେ ବ୍ଲୁ ଡିଫ୍ୟୁଜ୍‌ଡ୍ ଲାଇଟ୍‌ରେ ବ୍ଲୁ ନାଇଟି ପିନ୍ଧି ଶୋଇଥିବା ତକ୍ ତକ୍ ଗୋରା ଝିଅଟିର ଗୋଲାପି ଓଠକୁ ଛୁଇଁବାମାନେ ସବୁ ଗୋଳମାଳ ହୋଇଯିବ, ମେକ୍ ଅପ୍ ବାରି ହୋଇଯିବ – ମୁଁ ଜାଣିସାରିଥିଲି । ତେଣୁ ସେଣ୍ଟର୍ ଷ୍ଟେଜ୍‌ରେ ଦର୍ଶକଙ୍କୁ ପଛକରି ତକିଆ ପାଖରେ ଥିବା କର୍ଡ୍‌ଲେସ୍ ମାଇକ୍ ପାଖରେ ଚୁମ୍ବନ ଶବ୍ଦଟି ହିଁ କରିଥିଲି, ନାଟକୀୟ ଢଙ୍ଗରେ । ଏଫେକ୍ଟ ଠିକ୍ ଆସିଥିଲା । ରୂପା, ରୂପାର ସାଙ୍ଗମାନେ – ବୁଝିପାରିଲେନି ଫୁଟେ ଦୂରରେ ରହି ଘଟଣାଟି କିପରି ଅନାୟାସରେ ଘଟିଗଲା ।

ରାତିରେ ନାଟକ ପଛରେ ଚାଲିଥିବା ନାଟକର ଶେଷ ଦୃଶ୍ୟ – ଘରକୁ ଫେରିଲା ବେଳକୁ ସବୁଆଡ଼େ ଅନ୍ଧାର । ଗେଟ୍ ଖୋଲି ପଶିଲାବେଳେ ପ୍ୟାସେଜ୍ ଲାଇଟ୍ ନାହିଁ, ଗାର୍ଡ଼େନ୍ ଲାଇଟ୍ ନାହିଁ । କଲିଂବେଲ୍‌ଟା ବି ବାଜୁନି । କିନ୍ତୁ ପଡ଼ିଶା ଘରେ ତ ଲାଇଟ୍ ଅଛି, ଷ୍ଟ୍ରିଟ୍ ଲାଇଟ୍ ଅଛି... ଆମର କ'ଣ ହେଲା ? ଖଡ଼୍ ଖାଡ଼୍ ଶବ୍ଦ କିଛି କଲି । ମ୍ୟାଡାମ୍ ଶୁଣିଲେନି କି ଉଠିଲେନି, ବାଧ ହୋଇ ପଛପାଖ ପଡ଼ିଶାଘରେ କାନ୍ଥ ଡେଇଁ କୋର୍ଟୟାର୍ଡ଼୍‌ବାଟେ ଆମ ବେଡ୍‌ରୁମ୍ ଝରକା ପାଖରେ ପହଞ୍ଚି ଡେଲ୍‌ଫିକୁ ଡାକିଲି । କବାଟ

ଖୋଲିଲା । ନୀଳ ନାଇଟିଟିକୁ ହଠାତ୍ ମୋ ହାତରୁ ଛଡ଼େଇ ଡେଲ୍‌ଫି ଚାଲିଲା ରୋଷେଇଘର ଆଡ଼େ (ସେ କେମିତି ଜାଣିଲା, ମୁଁ ତା ନାଇଟି ରୂପା ପିନ୍ଧିବ ବୋଲି ନେଇ ଯାଇଥିଲି... 'ଜେଲସି... ଦାଇ ନେମ୍ ଇଜ୍ ଉମ୍ୟାନ୍ !') ତା' ପରେ ପୁଣି ବେଡ୍‌ରୁମ୍‌ରେ ପଶି ଗୋଟେ ବଡ଼ ପ୍ୟାକେଟ୍ ବାହାରକୁ ଆଣିବାର ଦେଖିଲି । ମିନିଟ୍ କେତୋଟି ଭିତରେ ନିଆଁ ଦେଖି ମୁଁ ଚମକି ପଡ଼ିଲି । ରୂପା ବ୍ୟବହାର କରିଥିବା ଡେଲ୍‌ଫିର ନୀଳ ନାଇଟି ଓ ମୋର ଲେଖିଥିବା ସମସ୍ତ ଚିଠିକୁ ଏ ଭିତରେ ଡେଲ୍‌ଫି ପୋଡ଼ି ଦେଇଛି ।

ବୋଧହୁଏ ଜୀବନରେ ପ୍ରଥମଥର ପାଇଁ ମୁଁ ଅନୁତାପ କଲି – କାହିଁକି ଏଭଳି ଝିଅଟିକୁ ବାହାହେଲି ବୋଲି । ରେଭେନ୍ସା କଲେଜରେ ପ୍ରି-ୟୁନିଭର୍ସିଟି କ୍ଲାସ ଟ୍ୟୁଟରିୟାଲ୍ ଟାସ୍କ କଥା ମନେ ପଡ଼ିଗଲା । ସାର୍ ପାରାଗ୍ରାଫ୍ ରାଇଟିଂ ପାଇଁ ଦେଇଥିଲେ –

'ମ୍ୟାରୀ ଇନ୍ ହେଷ୍ଟ, ରିପେଣ୍ଟ ଆଟ୍ ଲିଜର୍'...

ମୋର ଅବସ୍ଥା ଠିକ୍ ସେୟା ହେଲା । କ'ଣ ଦରକାର ଥିଲା ହୁକୁ ହୁକୁ ହୋଇ ଦିଲ୍ଲୀ ଦଉଡ଼ିଯିବାକୁ ? ସେ ପୁଣି ଡିସେମ୍ବର ଶୀତରେ ? ବାପା କେଡ଼େ ସୁନ୍ଦର ମୋତେ ସତର୍କ କରି ଦେଇଥିଲେ । ଡେଲ୍‌ଫିର ବାପା ମଧ୍ୟ ଲମ୍ବା ଚିଠିଟିଏ ଲେଖି... ହତଭାଗା ମୁଁ କାହିଁକି ଶୁଣିଲିନି ? ଚ୍ୟାଲେଞ୍ଜ୍ ନେବାର କ'ଣ ଦରକାର ଥିଲା ?

ପୁଣି ଭାବିଲି – ହଁ, ବୋଧେ ଦରକାର ଥିଲା । ସମସ୍ୟାଟିଏ ତିଆରି କରିବା ଯେମିତି ଦରକାର ଥିଲା, ତାକୁ ସମ୍ଭାଳିବା ସେମିତି ମୋର ଦାୟିତ୍ୱ । ସମସ୍ୟା ନଥିଲେ, ଚ୍ୟାଲେଞ୍ଜ ନଥିଲେ, ଜୀବନରେ ଅଛି କଣ ?

ତା ଛଡ଼ା ମୁଁ ତ ପିଲାଦିନରୁ ମୋ ରାସ୍ତା ଠିକ୍ କରିନେଇଛି – ଅନ୍ୟମାନଙ୍କ ରାସ୍ତା ମାଡ଼ିବି ନାହିଁ, ଅନ୍ୟମାନଙ୍କ ଭାଷା କହିବି ନାହିଁ, ଅନ୍ୟମାନଙ୍କ ପରି ବଞ୍ଚିବି ନାହିଁ (?), ନହେଲେ 'ଲେଖକ' କେମିତି ହେବି ?

ଜଣେ ଲେଖକ – 'ସାଧାରଣ' ଲେଖକ ନୁହେଁ, 'ପ୍ରତିଭାଶାଳୀ' ଲେଖକର ଜୀବନ ଘଟଣାବହୁଳ ହେବା ଦରକାର । ଜୀବନର କେତେ ଆଲୋଡ଼ନ, କେତେ ଘଟଣା ମଧ୍ୟ ଦେଇ ତାକୁ ସୃଷ୍ଟି କରିବାକୁ ପଡ଼ିବ ସମ୍ପର୍କ । ସେଇ ସମ୍ପର୍କ ଭିତରେ ଯନ୍ତ୍ରଣା ଥିବ, ସମ୍ଭାବନା ଥିବ । ଆଉ ସେଇ ଜାଲ ଭିତରେ ବେଳକୁ ବେଳ ସେ ଛନ୍ଦି ହୋଇଯାଉଥିବ ।

ମୁକୁଳିବାର ବେଳ ଗଡ଼ିଯାଉଥିବ... ଭାଷା ତାର ଶବ୍ଦ କେତୋଟିରେ ହିଁ ରହିଯାଉଥିବ, ସରିଯାଉଥିବ ! ବାକ୍ୟଟିଏ, ଅର୍ଥଟିଏ ସେ ତିଆରି କରିପାରୁ ନଥିବ ।

ଅତୀତ ଭବିଷ୍ୟତକୁ ମାଡ଼ି ବସିଥିବ, ଯେପରି ସମୁଦ୍ର ଆକାଶକୁ ।

କହି ହେଉ ନଥିବ : ଶେଷ ହେବ କେବେ ଯନ୍ତ୍ରଣା, ଆସିବ କେବେ ସମ୍ଭାବନା...

କହି ହେଉ ନଥିବ : ସରିଯିବ କେବେ ଜୀବନ, ଚାଲିଯିବ କେବେ 'କଥାକାର', ରହିଯିବ ଖାଲି 'କଥା !'

## ୬୬

ଡେଲ୍‌ଫିର ସୁନ୍ଦର ନୀଳ ନାଇଟି ଆଉ ମୋର ଚିଠି ସବୁ ମିଶି ନିଆଁରେ ପାଉଁଶ ହୋଇ ଗଲେଣି । ଡେଲ୍‌ଫି ମଶାରି ଭିତରେ । ମିମି ଥରେ ଦି ଥର କଡ଼ ଲେଉଟାଇ ପୁଣି ଶୋଇ ପଡ଼ିଲାଣି । ବିଛଣାରେ ମୋ ଜାଗାଟି ଡେଲ୍‌ଫିର ଡାହାଣ ହାତ ସଂପୂର୍ଣ୍ଣ ଅକ୍ତିଆର କରିନେଇଛି... ଜଣେଇ ଦେଉଛି ଯେପରି ରେଡ୍ ସିଗ୍‌ନାଲ୍– 'ନୋ ଏଣ୍ଟ୍ରି'...

ଆଉ ବେଶି ଦେଖିବାକୁ ଇଚ୍ଛା ହେଲାନି । ନୀରବରେ ମୁଁ ଡ୍ରଇଂରୁମ୍ ଆଡ଼କୁ ଚାଲିଲି । ଦିବାନ୍ ଉପରେ ଲମ୍ବା ହୋଇ ଗଡ଼ିପଡ଼ିଲି । ତଳେ 'ଫେମିନା' ମ୍ୟାଗାଜିନ୍ କଭର୍ ପେଜ୍‌ରେ ଏକ ଆକର୍ଷଣୀୟ ଛବି – ଲ୍ୟାମ୍ପସେଡ୍ ତଳେ ଆହୁରି ଆକର୍ଷଣୀୟ ଦିଶୁଛି । କୌଣସି ଫିଲ୍ମଷ୍ଟାର୍ ବୋଧେ । ନୀଳ ନାଇଟି...ବେକରେ ସୂକ୍ଷ୍ମ ଏମ୍ବ୍ରଏଡରି କାମ ହୋଇଛି... ସମୁଦ୍ରକୂଳରେ ନୀଳ ଲହଡ଼ି ଆଢୁଆଳରେ ଏକ ସୋଫା ଉପରେ ଝିଅଟି... ଆଃ କି ସୁନ୍ଦର ! ଇନ୍ଦ୍ରିୟକୁ ଉତ୍ତେଜିତ କରିବାର ଛବି ନୁହେଁ, ବରଂ କଳ୍ପନାକୁ ଏକ ନୂଆ ଦିଗରେ ପ୍ରସାରିତ କରିବାର ଛବି ।

ନାରୀ ସଂପ୍ରସାରିତ ହୋଇ ମିଶିଯାଇଛି ପ୍ରକୃତିରେ, ସୃଷ୍ଟି ଲମ୍ବି ଯାଇଛି ସମ୍ଭାବନା ପର୍ଯ୍ୟନ୍ତ... ଏଇତ ଜୀବନ ! କଳା-ଧଳା, ହସ-କାନ୍ଦ, ଅତୀତ-ଭବିଷ୍ୟତ, ସବୁ ଫେଣ୍ଟାଫେଣ୍ଟି ହୋଇ ବିଚିତ୍ର ରଙ୍ଗ, ବିଚିତ୍ର ସ୍ୱର ସୃଷ୍ଟି କରିଥାଆନ୍ତି । ସେ ସବୁ ଆମେ ଦେଖୁ କେତେ, ଶୁଣୁ କେତେ, ବୁଝୁ କେତେ ?

ନ ବୁଝିବାରେ ଆନନ୍ଦ ଥାଏ, ଯେପରି ବୁଝିବାରେ ଦୁଃଖ । ବୁଝା-ଅବୁଝା ଜୀବନକୁ ବଞ୍ଚିବାକୁ ହୁଏ, ଭାଗ ଭାଗ କରି । ସଂପୂର୍ଣ୍ଣ ଭାବେ କେବେ କଣ ବଞ୍ଚି ହୁଏ ?

ହୁଏନା, ଯେହେତୁ ସଂପୂର୍ଣ୍ଣଭାବେ ଜୀବନକୁ ବୁଝି ହୁଏନା, ସବୁ ରଙ୍ଗ ଏକାଠି ଦେଖି ହୁଏନା, ସବୁ ସ୍ୱର ଏକ ସମୟରେ ଶୁଣି ହୁଏନା ।

ବିବାହ ପୂର୍ବରୁ ଡେଲ୍‌ଫିକୁ ନ ବୁଝିବାରେ ଥିଲା ଆନନ୍ଦ, ବିବାହ ପରେ ତାହା ହେଲା ଦୁଃଖ । ଖାଲି ଦୁଃଖ ନୁହେଁ, ଯନ୍ତ୍ରଣା ।

ବୁଝିସାରି ଗ୍ରହଣ କରି ପାରୁ ନଥିବା ଦୁଃଖ ହୁଏ ମଣିଷର ଯନ୍ତ୍ରଣା ।

୬୭

ଲାଗୁଛି – ଜୀବନର ପରିଧିରେ ହିଁ ରହିଗଲି, କେନ୍ଦ୍ରକୁ ଯାଇ ପାରିଲିନି । ଏବେ ଡେଲ୍‌ଫି କଲିକତା ସଲ୍ଟ ଲେକ୍‌ରେ,ବାବାଙ୍କ ପାଖରେ । ଜର୍ଣ୍ଣାଲିଜ୍‌ମ୍ ଓ ପବ୍ଲିକ୍ ରିଲେସନ୍ସରେ ପି.ଜି. ଡିପ୍ଲୋମା କରିସାରିବା ପରେ 'ଇଣ୍ଡିଆନ୍ ଏକ୍ସପ୍ରେସ୍'ରେ କାମ କରୁଛି । ମୁଁ ବଦଳି ହୋଇ ରେଭେନ୍ସାକୁ ଚାଲି ଆସିଛି । ପି.ଏଚ୍.ଡି. ରେଜିଷ୍ଟ୍ରେସନ୍ କରି ସାରିଲିଣି । ସେଥିପାଇଁ ଛୁଟିରେ ହାଇଦ୍ରାବାଦ୍ ଆମେରିକାନ୍ ଷ୍ଟଡିଜ୍ ରିସର୍ଚ୍ଚ ସେଣ୍ଟର୍ ଯିବାକୁ ପଡୁଛି, କଲିକତା ନୁହଁ ।

ପରସ୍ପରଠାରୁ ଦୂରେଇ ଗଲାପରେ ପୁରୁଣା ସମ୍ପର୍କର ଭାଷା ବଦଳି ଯାଇଛି, ବନ୍ଧୁତ୍ୱର ନୂଆ ଦିଗ୍ କେତୋଟି ଖୋଲି ଯାଇଛି । କମୋଡର୍ ଚାଟାର୍ଜୀଙ୍କ ପରାମର୍ଶରେ ଓଜନ ଅଛି, ଯୁକ୍ତି ଅଛି – 'ଛ ମାସ, ବର୍ଷେ ପରସ୍ପରଠାରୁ ଦୂରରେ ରୁହ, ଦେଖ କେମିତି ଲାଗୁଛି, ତା ପରେ ଡିଭର୍ସ କଥା ଭାବିବ'

ଯେତେବେଳେ ଡିଭର୍ସ କଥା ଭାବେ, ମୋର ମନେ ପଡ଼ିଯାଏ ଦିଲ୍ଲୀର ସେହି ଡିସେମ୍ବର ସକାଳ... ଚାଣକ୍ୟପୁରୀ... ସର୍ଦ୍ଦାର ପଟେଲ୍ ମାର୍ଗ... ଘର ଛାଡ଼ି ଡେଲ୍‌ଫି ଦଉଡ଼ି ଦଉଡ଼ି ମୋ ପାଖକୁ ଆସିବାର ଦୃଶ୍ୟ । ନା ଡିଭର୍ସ ନୁହେଁ, ଆଉ ଥରେ ଆମେ ନିଜ ନିଜକୁ ସୁଯୋଗ ଦେବା ଉଚିତ୍, କାଳେ ଆମ ଭିତରେ ଗଢ଼ି ଉଠିଥିବା ଫାଙ୍କ ଯୋଡ଼ି ହୋଇଯିବ ? ହୁଏତ ସବୁକିଛି ଠିକ୍ ହୋଇଯିବ ? ପୁରୁଣା ସମ୍ପର୍କ ଓ ଶ୍ରଦ୍ଧା ଉଭୟଙ୍କୁ ନିକଟକୁ ଟାଣିନେବ ? ଡେଲ୍‌ଫି କିନ୍ତୁ ଚାହିଁଲା ଡିଭର୍ସ... ଯେତେ ଶୀଘ୍ର, ସେତେ ଭଲ- କହିଲା । ସେହି ଅନୁସାରେ ଚିଠି ଲେଖିଲା, ଖବର ଦେଲା । କଲିକତାର ଜଣେ ବନ୍ଧୁ ମୋତେ ବରାବର ଚିଠି ଦେଲେ – ଡେଲ୍‌ଫି 'ଇଣ୍ଡିଆନ ଏକ୍ସପ୍ରେସ୍'ର ପ୍ରଭାକର୍ ବୋଲି ଜଣେ ରିପୋର୍ଟର୍ ସହ ସାଙ୍ଗ ହୋଇ ଟୁର୍‌ରେ ଯାଉଛି – ଦାର୍ଜିଲିଂ, ଦିଲ୍ଲୀ...

ମୋ ଭିତରେ ଥିବା କଥାକାର ପାଇଁ କାହାଣୀ ନୂଆ ମୋଡ଼ ନେଲା । ଗଳିରୁ ବାହାରି ବଡ଼ ରାସ୍ତାରେ ଦେଖାଦେଲା ନୂଆ ଚରିତ୍ରଟିଏ – ଅନୀତା, ଅନୀତା ବର୍ମା, କଟକ ଝିଅ, ଦିଲ୍ଲୀ ଜବାହରଲାଲ୍ ନେହେରୁ ୟୁନିଭର୍ସିଟି (ଜେ.ଏନ୍.ୟୁ.) ରେ ରିସର୍ଚ୍ଚ ସ୍କଲାର୍, ୫ ଫୁଟ ୧୦ ଇଞ୍ଚ, ଥରେ ଦେଖିଲା ପରେ ଅନେକ ଥର ଦେଖିବାକୁ ଇଚ୍ଛା ହେବ । ଏକ ସେମିନାର୍‌ରେ ଦେଖା । ତା ପରେ ଦୁଇ ତିନିଟି ସନ୍ଧ୍ୟା ବକ୍ସିବଜାରରେ, ତାଙ୍କ ଘରେ । ତା ପରେ ଖଣ୍ଡଗିରିରେ, ଧଉଳିଗିରିରେ ଦିନ ଦୁଇଟା ବେଳେ, ପୁରୀରେ ସି ଭିଉ ହୋଟେଲ୍‌ରେ, କଲିକତା ସଦର ରୋଡ୍‌ରେ, ହାଇଦ୍ରାବାଦ ଫରେନ୍ ଲାଙ୍ଗୁଏଜ୍ ଗେଷ୍ଟ ହାଉସ୍‌ରେ...

ଅନୀତା ବର୍ମା ମୋ ପାଇଁ ହେଲା କେବଳ 'ଆନି' । ଡେଲ୍‌ଫି କଥା ଜାଣିଲା । ଉଭୟଙ୍କ ଭିତରେ ଚିଠି ଦିଆ ନିଆ ବି ଚାଲିଲା । ପୁଣି ସେମିନାର୍ – ହରିଦ୍ୱାରରେ, ଶିଲଂରେ, ହାଇଦ୍ରାବାଦ୍‌ରେ... ଆନି ଓ ମୁଁ । କଟକରେ ପ୍ରାୟ ସବୁଦିନ ଫୋନ୍ କରେ, ସବୁଦିନ ଦେଖାହୁଏ । ରିସର୍ଚ୍ଚକାମରେ ଦିଲ୍ଲୀ ଗଲେ ଲମ୍ବା ଚିଠି ଦିଏ । ଶେଷରେ ମୁଁ ଯାଏ ଦିଲ୍ଲୀ, ଆମେ ରହୁ ନିପା ଗେଷ୍ଟ ହାଉସ୍‌ରେ । ଡିନର୍ 'ହୋଟେଲ୍ କୁତବ୍'ରେ ।

ଏ ଭିତରେ କୋର୍ଟରେ ଇନ୍-କ୍ୟାମେରା ଆମର ଡିଭର୍ସ ହୋଇଯାଇଛି । ପରସ୍ପର ବୁଝାମଣାରେ, ତେଣୁ ନୋଟିସ୍ ପିରିୟଡ୍ ଛ' ମାସ ସରିଯବାପରେ ସବୁ ସୁରୁଖୁରୁରେ ହୋଇଗଲା । ମା'ଙ୍କ ସହିତ ଡେଲ୍‌ଫି ଆସିଥିଲା, ସାଙ୍ଗରେ ବାରବର୍ଷର ଝିଅ ମିମି । ପରିସ୍ଥିତିକୁ କିଛିଟା ହୃଦୟଙ୍ଗମ କରି ମିମି ମୋତେ ପଚାରିଲା ସେ କେଉଁଠି ରହିବ, କାହା ସହିତ – ମା' ନା ତା' ବାବା ସହ ? ଭାବବିହ୍ୱଳ ହୋଇ ମୁଁ କହିପକେଇଲି, ଭୟ କରିବାର କିଛି ନାହିଁ । ସେ ଯେଉଁଠି ଚାହିଁବ, ସେଇଠି ରହିବ । ମୁଁ ଦ୍ୱିତୀୟଥର ବାହାହେବାର ନାହିଁ, ଅନ୍ତତଃ ସେ ପଢ଼ାପଢ଼ି ସାରି ନିଜେ ବାହା ନ ହେବା ପର୍ଯ୍ୟନ୍ତ । ମିମି ଆଶ୍ୱସ୍ତ ହେଲା । ମୁଁ ଜାଣିଗଲି ସେ ତା ମା' ପାଖରେ ହିଁ ରହିବ, ପ୍ରତିମାସରେ ତା ଖର୍ଚ୍ଚ ମୋତେ ପଠାଇବାକୁ ପଡ଼ିବ । ରାଜିନାମାରେ ସେୟା ଲେଖି ଦସ୍ତଖତ କଲାବେଳେ ମୋ ଆଡ୍‌ଭୋକେଟ୍ ଟିକେ ବଦଳେଇ ଦେଇ ଲେଖିଲେ ଝିଅର ମେଣ୍ଟେନାନ୍ସ – ପଢ଼ାପଢ଼ି ପର୍ଯ୍ୟନ୍ତ । କାଟି ତାକୁ ମୁଁ କଲି ବାହାଘର ପର୍ଯ୍ୟନ୍ତ । ଆଡ୍‌ଭୋକେଟ୍ ହସି କହିଲେ, ମୁଁ ଝିଅକୁ ବେଶୀ ଭଲ ପାଉଛି ବୋଲି ।

ମୁଁ କହିଲି, ଭଲ ପାଇବା ମାନେ ଭଲ ପାଇବା, ସେଥିରେ 'କମ୍', 'ବେଶୀ' କିଛି ନଥାଏ । ବହୁତ କିଛି କହିବାର ଇଚ୍ଛା ସତ୍ତ୍ୱେ ମୁଁ ଆଉ କିଛି କହିଲିନି । ପୁରୀ

ଏକ୍ସପ୍ରେସ୍‌ରେ ସେମାନଙ୍କୁ ଛାଡ଼ିବା ପରେ ଓ.ଟି.ଡ଼ି.ସି. ବାର୍‌ରେ ଘଣ୍ଟାଏ ଭିତରେ ୪ଟା କି ୫ଟା ବିଅର୍... ତାପରେ ଜଣେ ମନ୍ତ୍ରୀ-ବନ୍ଧୁଙ୍କ ଘରେ ଘଣ୍ଟାଏ । ବନ୍ଧୁ ଓ ବନ୍ଧୁପତ୍ନୀ ବହୁତ ଦିନର ପରିଚିତ, ଗୋଟିଏ ପରିବାରର ପରି । ଦୁଃଖ କଲେ, ଦେଖା କରିବାକୁ ଚାହିଁଲେ । କିନ୍ତୁ ଡେରି ହୋଇଯାଇଥିଲା । ରାତି ବାରଟାରେ ମୁଁ କଟକ କେମିତି ଫେରିଲି, କାହା ସହିତ ଦେଖା ହେଲା, କିଛି ଜାଣି ପାରିଲିନି ।

ସକାଳେ ସବୁଦିନ ପରି ଆଠଟାବେଳେ ଫୋନ୍ ବାଜିଲା । ସେ ପାଖରେ ଆନି ।

## ୬୮

ସେକ୍ସପିୟରଙ୍କ 'ଟ୍ୱେଲ୍‌ଫ୍‌ଥ୍ ନାଇଟ୍'ରୁ ଲଭ୍-ଟ୍ରାଏଙ୍ଗଲ୍ କଥା ଜାଣିଥିଲି — ଡ୍ୟୁକ୍ ଅର୍ସିନୋ ଅଲିଭିଆକୁ, ଅଲିଭିୟା ସିଜାରିଓର ଛଦ୍ମବେଶରେ ଥିବା ଭାଓଲାକୁ ଓ ଭାଓଲା ଡ୍ୟୁକ୍ ଅର୍ସିନୋକୁ ଭଲ ପାଉଥିଲେ । କିନ୍ତୁ ବାସ୍ତବ ଜୀବନ ଲଭ୍-ଟ୍ରାଏଙ୍ଗଲ୍‌କୁ ବଳିଗଲା । କଟକରୁ ଦିଲ୍ଲୀ ନେଇ ସେଠି ପଢ଼ାପଢ଼ିରେ ସାହାଯ୍ୟ କରିଥିବା ଯୁବକ ତାରାକାନ୍ତ ଆନିକୁ ଭଲପାଉଥିଲା, ତାରାକାନ୍ତକୁ ଭଲ ପାଉଥିଲା ଦିଲ୍ଲୀରେ କୌଣସି ଷ୍ଟେଟ୍‌ବ୍ୟାଙ୍କ ବ୍ରାଞ୍ଚ୍‌ରେ କାମ କରୁଥିବା ଝିଅଟିଏ । ଆନି ଓ ମୋର ସମ୍ପର୍କ, ନିଃସନ୍ଦେହ, ଏନ୍.ଟି.ପି. ଡେଇଁ ସାରିଥିଲା । ୧୫ ବର୍ଷ ବୟସର ତାରତମ୍ୟରେ ଜଣଙ୍କର ଭବିଷ୍ୟତ ସହିତ ଆଉ ଜଣଙ୍କର ଅତୀତ ଏକାକାର ହୋଇ ସୃଷ୍ଟି କଲା ଏକ ଆବେଗମୟ ବର୍ତ୍ତମାନ । ଘଟଣାବହୁଳ ପୃଥିବୀ ଆଖିଆଗରେ ମୋର କ୍ରମେ କ୍ରମେ ସଙ୍କୁଚିତ ହେବାକୁ ବସିଲାଣି । ସାପପାଳିର ୯୮ରୁ ମୁଁ ୭କୁ ଖସି ପୁଣି ସିଡ଼ି ଅପେକ୍ଷାରେ, ଉଠିବାକୁ ଉପରକୁ । ବିଚିତ୍ର ଏ' ମନ ! ଅଦ୍ଭୁତ ତା'ର ଗତି !

ମୁଁ କ'ଣ ଚାହୁଁଛି ? କରୁଛି ମୁଁ କ'ଣ ? ଜଣେ ନାରୀର ଶରୀର ଓ ଇନ୍ଦ୍ରିୟ, ମନ ଓ ହୃଦୟରୁ ମୁକ୍ତି ପାଇବି କେବେ ? — ନିଜକୁ ପଚାରିଲି । ଏକା ହୋଇ ରହିବା, ଏକା ଏକା ଆଗକୁ ଚାଲିବା କ'ଣ ଏତେ କଷ୍ଟ ? ମୋର ହୋଇଛି କ'ଣ ? ଆଗରୁ ତ ଠିକ୍ ଥିଲି ? ନିଜ ସ୍ୱାଧୀନତାକୁ କେବେ ତ ବିପନ୍ନ କରିନି ? ଏବେ ହୋଇଛି କ'ଣ ? ସମ୍ପର୍କ ସବୁ ବନ୍ଧୁତାରେ ସୀମିତ ଥିଲା, ବେଶ୍ ଥିଲା... ଏବେ ପ୍ରେମ, ଲାଳସା, କାମନାର ସ୍ତରକୁ ଖସି ଆସିବାର କାରଣ ?

ମୁଁ କ'ଣ ଦୁର୍ବଳ ହୋଇଗଲିଣି ? ନା ମୋ' ଚରିତ୍ରରେ ହଠାତ୍ ପରିବର୍ତ୍ତନ ଦେଖା ଦେଇଛି ? ଲେଖକ ହେବାର ସ୍ୱପ୍ନ ନିଶ୍ଚିତଭାବେ ମୋର ବଞ୍ଚିବାର ପ୍ରଣାଳୀକୁ ଜଟିଳ

କରିସାରିଲାଣି । ଘଟଣା ପରେ ଘଟଣାଆଡ଼କୁ ମୁଁ ଆକର୍ଷିତ ହୋଇ ଚାଲିଛି । ସମସ୍ୟାର ଘେର ଭିତରେ ପଶିବାକୁ ଭଲ ଲାଗୁଛି ।

ସ୍କୁଲବେଳର ପାହାଡ଼ ସେ ପାଖରେ ଦିଶୁଥିବା ମୁହଁଟି ହଜିଗଲାଣି । ଚିଲିକାର ନୀଳ ପାଣି ସବୁ ଶୁଖିଗଲାଣି... ମୋ ହାତ ପାପୁଲିରୁ ସମୀକ୍ଷାର ହାତ ଖସିଗଲାଣି ।

ଭିନ୍ନ ଏକ ଆକାଶର ରଙ୍ଗଭିତରୁ ପକ୍ଷୀମାନେ ବାହାରି ଆସୁଛନ୍ତି । ପୁରୁଣା ପୃଥିବୀ ସେମିତି ରହିଛି ଅପେକ୍ଷାରେ –

ପୁଣି କେତେବେଳେ ସୂର୍ଯ୍ୟ ଅସ୍ତ ଯିବ,
ଅନ୍ଧକାର ଛାଇଯିବ ଦିଗ୍‌ବଳୟରଁ ଧାରେ ଧାରେ,
ତାରାମାନେ ପହଁରି ପହଁରି ଧରାଦେବେ ଗଭୀର ରାତିରେ,
ମୁଁ ଓ ମୋ' ଅତୀତ ପାଖାପାଖି ଶୋଇଯିବୁ ଭବିଷ୍ୟତର ସ୍ୱପ୍ନରେ... !

## ୬୯

ରାତି ପାହିଲେ ଆଉ ଏକ ସକାଳ ଆସେ । ପୁରୁଣା, ପରିଚିତ ଅନ୍ଧାର ସରିଯାଏ, ସ୍ୱପ୍ନ ଆସ୍ତେ ଆସ୍ତେ ମଉଳିଯାଏ, ଆଶଙ୍କା, ଭୟ କିଛି କ୍ଷଣ ପାଇଁ ଦୂରେଇଯାଏ ସକାଳର ଆଲୁଅରେ ।

ପୁଣି ଗତାନୁଗତିକ ଜୀବନର ଧାରା । ଆଶ୍ଚର୍ଯ୍ୟ ହେବାର ମୁହୂର୍ତ୍ତ ପରେ ପରେ ମୁହୂର୍ତ୍ତ – ଦୁଃଖର, ଅନୁଶୋଚନାର ।

କେତେବେଳେ ମୁଁ ଜୀବନର ପରିଧିରେ ତ କେତେବେଳେ କେନ୍ଦ୍ରବିନ୍ଦୁରେ । ଦେଖିଚାଲିଛି, ଅନୁଭବ କରୁଛି, ଆଉ ବେଳେ ବେଳେ ପ୍ରଶ୍ନ ପଚାରୁଛି – ନିଜକୁ, ପଛରେ ପକେଇ ଆସିଥିବା ଓ ବର୍ତ୍ତମାନକୁ ଜାବୁଡ଼ି ଧରିଥିବା ଅତୀତକୁ, ପଚାରୁଛି ତାରୁଣ୍ୟର ଚପଳତା ଓ ସ୍ୱପ୍ନକୁ ଅତିକ୍ରମ କରିଆସିଥିବା ଏକ ବିଦ୍ରୋହୀ ମନକୁ ।

କ'ଣ ଚାହୁଁଛି ମୁଁ ? ଆଉ କରୁଛି କ'ଣ ?
ସମ୍ପର୍କ ଓ ସମସ୍ୟାର ଜାଲରୁ ମୁକ୍ତି ପାଇବି କେବେ ?

ଜୀବନକୁ ଘଟଣାବହୁଳ କରିବା ବନ୍ଦ କରିବି କେବେ ? ଆକର୍ଷଣର ଦିଗ ବଦଳେଇବି କେବେ ? ଜଣେ ଲେଖକ ହେବାପାଇଁ ଆଉ କେତେ ବର୍ଷ ଜୀବନକୁ ଖିନ୍‌ଭିନ୍ କରି ଚାଲିଥିବି ?

ନୂଆ ଏକ ସମ୍ପର୍କର ଜାଲରେ ପୁଣି ଛନ୍ଦି ହୋଇଗଲିଣି । ଡେଲ୍‌ଫିର ଛାଇ ସମ୍ପୂର୍ଣ୍ଣ ଅପସରିଯିବା ପୂର୍ବରୁ ଆସି ଛିଡ଼ା ହେଲାଣି ଆନି, ମିସ୍ ଫଟୋଜେନିକ୍ ଅନୀତା ବର୍ମା । ମୁହଁଟି ଯେପରି କ୍ୟାମେରା ପାଇଁ ଗଢ଼ା । ହସିଲେ ଖାଲି, ଆଖିକୁ ସୁନ୍ଦର ଦିଶେନା, ହୃଦୟ ଭିତରେ ଶିହରଣ ଆସେ, ଖୋଲିଯାଏ ପୁରୁଣା ଆଶା ଓ ସମ୍ଭାବନା, ସନ୍ଦେହ ଜାଗାରେ ଆସେ ସ୍ୱପ୍ନ ।

ଅନୀତା ବର୍ମା – ରକ୍ଷଣଶୀଳ ପରିବାରରୁ ଆସିଲେ ବି ତା'ର ସ୍ୱତନ୍ତ୍ର ଏକ ପୃଥିବୀ । ପ୍ରତିମାସରେ କିଣେ ମୋଟା ମୋଟା ବହି, ନୂଆ ନୂଆ କ୍ୟାସେଟ୍ । ଜନ୍ମଦିନ ବ୍ୟତୀତ ଅନ୍ୟ ଦିନରେ ବି ମୁଁ ସେଥିରୁ କିଛି କିଛି ପାଏ । ଆମେରିକାରୁ ଫେରିଲାବେଳେ ତାଙ୍କ ବାପା ଆଣିଥିଲେ ଜାପାନିଜ୍ ପୋର୍ଟେବ୍ଲ ଟାଇପ୍ ରାଇଟର୍ 'ବ୍ରଦର୍ ଚାର୍ଜର୍ ୧୧', ଉପହାର ସ୍ୱରୂପ ମୁଁ ସେଇଟା ପାଇଲି ମୋ ଜନ୍ମଦିନରେ ।

ତାରାକାନ୍ତ ଆନିକୁ ଭଲ ପାଉଥିଲା । ଦୁହେଁ ପାଞ୍ଚ ଛ' ବର୍ଷ ଦିଲ୍ଲୀରେ ପାଖାପାଖି ଥିଲେ । ସାଙ୍ଗ ହୋଇ ସେମିନାର୍‌ରେ ପେପର୍ ପଢ଼ିଛନ୍ତି । ଅଥଚ, ତାରାକାନ୍ତ ଶେଷରେ ବାହାହେଲା ଜଣେ ବ୍ୟାଙ୍କ୍ ଏକ୍‌ଜିକ୍ୟୁଟିଭ୍‌କୁ, ଆଉ ଆନି, ନିଜ ପରିବାରର ଇଚ୍ଛାରେ ବାହାହେଲା ଜଣେ ଏଞ୍ଜିନିୟର୍‌କୁ । କିନ୍ତୁ ସମ୍ପର୍କ ତାର ଅବ୍ୟାହତ ରହିଲା ମୋ ସହିତ । ମାସ କେଇଟା ଭିତରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଦେଖାଦେଲା ମତାନ୍ତର, ଆନି ଚାଲିଗଲା ଦିଲ୍ଲୀ ଥିସିସ୍ କାମ ସାରିବାପାଇଁ । କୋର୍ଟ୍‌ରେ ଉଭୟ ଦେଲେ ଡିଭର୍ସ୍ ନୋଟିସ୍, ବର୍ଷେ ନ ପୂରୁଣୁ ଅଲଗା ହୋଇଗଲେ । ଏଞ୍ଜିନିୟର୍ ପୁଣିଥରେ ବିବାହ କଲେ, ଆନି ଦିଲ୍ଲୀରେ ପି.ଏଚ୍.ଡ଼ି. ଥିସିସ୍ ଦାଖଲ କରି କଟକରେ ତାର ପୁରୁଣା କଲେଜକୁ ଫେରି ଆସିଲା ।

## ୭୦

ସ୍ୱପ୍ନ ମୋର ହଜିଯାଉଛି, ଭାଙ୍ଗିଯାଉଛି...

ସ୍ୱପ୍ନ ଯେତେବେଳେ ଭାଙ୍ଗିଯାଏ, ବାସ୍ତବତାର ରୁକ୍ଷ ବୋଝ ସମ୍ଭାଳି ହୁଏନା । ସ୍ୱପ୍ନବିନା ଜୀବନର କିଛି ଅର୍ଥ ଥାଏ ? ଅଥଚ, ଜୀବନର କେନ୍ଦ୍ରବିନ୍ଦୁରେ ପହଞ୍ଚିବା ପୂର୍ବରୁ ସ୍ୱପ୍ନର ମାୟାରୁ, ଶବ୍ଦର ଜାଲରୁ ଖସି ଆସିବାକୁ ପଡ଼ିବ । ଭାବନାର ଆରମ୍ଭ ଓ ଅନୁଭୂତିର ଶେଷ କେଉଁଠି ଜାଣିବାକୁ ପଡ଼ିବ । ଆଗକୁ ଯିବାକୁ ହେଲେ ସ୍ମୃତିର, ଶିହରଣର ସଙ୍କେତକୁ ଭୁଲିଯିବାକୁ ପଡ଼ିବ ।

ଗୋଟାଏ ପାଖରେ ଜୀବନ ମୋ ପାଇଁ ଏକ ସୁନ୍ଦର, ଅବିଭକ୍ତ ସ୍ୱପ୍ନ, ଅନ୍ୟପାଖରେ ଏହା ଏକ ଅବିଶ୍ରାନ୍ତ, ଉଦ୍‌ବେଳ ଯାତ୍ରା । ବ୍ୟସ୍ତ ଓ ଚଞ୍ଚଳ ମନ ଧରି ରଖିପାରୁନି ସ୍ୱପ୍ନିଳ ଜୀବନକୁ...

ସ୍ୱପ୍ନ ଗୋଟିଏ ପରେ ଗୋଟିଏ ଭାଙ୍ଗିଯାଉଛି ।

ଦୁର୍ବଳ ଶରୀର ନେଇ ପାରୁନି ମୋତେ ଯାତ୍ରାର ଶେଷ ଭାଗକୁ ।

ମୁଁ ସତରେ କରିବି କ'ଣ ?

ଛାଡ଼ିବି କାହାକୁ, ଧରିବି କାହାକୁ ?

## ୭୧

ମୋ' ଜୀବନର ଗତି ବଢ଼ିଗଲା । ହାଇଦ୍ରାବାଦ ଆମେରିକାନ୍ ଷ୍ଟଡିଜ୍ ରିସର୍ଚ୍ଚ ସେଣ୍ଟର୍ ଲାଇବ୍ରେରୀକୁ ଛୁଟିଲି ପ୍ରତିବର୍ଷ ପୂଜା ଛୁଟିରେ, ଖରା ଛୁଟିରେ । ମୋତେ ପି.ଏଚ୍.ଡ଼ି. କାମ ସାରିବାକୁ ପଡ଼ିବ । ମୋ' ଉପନ୍ୟାସର କଥାବସ୍ତୁକୁ ସଜାଡ଼ିବାକୁ ପଡ଼ିବ ।

ତା ପରେ ?

ତା ପରେ ହୁଏତ ଆନିକୁ ବିବାହ କରିବାକୁ ପଡ଼ିବ । କିନ୍ତୁ ଝିଅକୁ ଦେଇଥିବା ପ୍ରତିଶ୍ରୁତି ? ତା ଛଡ଼ା ବିବାହ ନୂଆ ଦାୟିତ୍ୱ ଆଣିବ, ମୋର ଏତେ ବର୍ଷର ସଞ୍ଚିତ ସ୍ୱପ୍ନ ଓ ଆଦର୍ଶକୁ ଧୂଳିସାତ୍ କରିଦେବ ।

ଆଉ ବିବାହ ନୁହେଁ । ଜାଲରୁ ଥରେ ଖସି ଆସିଛି, ଆଉ ନୁହେଁ... 'ନ ଗଙ୍ଗଦତ୍ତଃ ପୁନରପି କୂପଂ ।'

କିନ୍ତୁ ଆନି ଏକ ବହୁ-ଆକାଂକ୍ଷିତ ସମ୍ପର୍କ ମୋ ଜୀବନରେ ଖୁବ୍ କମ୍ ସମୟ ଭିତରେ ଆଣି ପାରିଛି । ତାହା ହେଲା ମା' ଓ ପୁଅର ସମ୍ପର୍କ, ଯାହାର ଅଭାବ ପିଲାଦିନୁଁ ଅନୁଭବ କରି ଆସିଛି । ଅଦ୍ଭୁତ ଏ ସମ୍ପର୍କ ! ଏ ବିଷୟରେ ଲମ୍ବା ଚିଠି ଲେଖିଥିଲା ସମୀକ୍ଷା ଲରେନ୍ସଙ୍କ 'ସନ୍ସ୍ ଆଣ୍ଡ ଲଭର୍ସ୍' ଉପନ୍ୟାସ ପଢ଼ିଲା ପରେ । ପାର୍ଥକ୍ୟ ଏତିକି ଯେ ଉପନ୍ୟାସର ନାୟକ ପଲ୍ ମା'ଙ୍କ ସହିତ ବଢ଼ିଆସିଥିଲା, ତା'ର କାମନା ଓ ଭାବନା ଉପରେ ମା'ଙ୍କ ପ୍ରଭାବ – 'ଇଡିପସ୍ କମ୍ପ୍ଲେକ୍ସ' କାମ କରୁଥିଲା, କିନ୍ତୁ ମୁଁ ଠିକ୍ ମା'ଙ୍କ ଚେହେରା ମନେ ପକେଇ ପାରୁନି । ଦୁଇ, ତିନି ବର୍ଷ ବେଳେ ହରେଇଥିଲି ତାଙ୍କୁ... ତାଙ୍କର କି ପ୍ରକାର ପ୍ରଭାବ ପଡ଼ିଛି ମୋ' ଉପରେ ? ହଁ, ଏୟା ହୋଇପାରେ, ତାଙ୍କର

ଅଭାବ ଓ ଆବଶ୍ୟକତା ମୋ ଜୀବନକୁ ଭିନ୍ନ ଦିଗରେ ନେଇଛି, ଜୀବନର ଲକ୍ଷ୍ୟ ଓ ଗତି ବୁଝିବାରେ ସ୍ୱତନ୍ତ୍ର ସମସ୍ୟା ସୃଷ୍ଟି କରିଛି । ଟିକିଏ କେଉଁଠି ସ୍ନେହ, ଆତିଥ୍ୟ ପାଇଲେ ମୁଁ ସବୁକିଛି ଭୁଲି ଯାଉଛି, ଆପଣାର କରିନେଉଛି ସେହି ଲୋକଟିକୁ, ଭାବପ୍ରବଣ ହୋଇଯାଉଛି, ସେହି ସମ୍ପର୍କକୁ ମଜବୁତ୍ କରି ଚାଲୁଛି ।

ବିଚିତ୍ର ସେ' ଭାବପ୍ରବଣତା ! ମଧୁର ସେହି ଆକର୍ଷଣ ! ଅନେକ ସମୟରେ ମୋତେ ଦୁର୍ବଳ କରିଦେଇଛି । ଜୀବନର ବଡ଼ ରାସ୍ତାରୁ ନେଇ ଛୋଟ ଗଳିରେ, ଗଛତଳେ, ପାହାଡ଼ ପଛରେ ଛିଡ଼ା କରେଇ ଦେଇଛି । ଅନ୍ୟ ସମସ୍ତେ ମାଡ଼ି ମକଚି ଆଗେଇ ଗଲାବେଳେ ମୁଁ ପଛରେ ରହିଯାଇଛି, ରହିଯାଇଛି ଅନ୍ଧାରର ଛାଇରେ, ନୀରବ ଆକାଶର ନୀରବତା ଭିତରେ ।

ଭିନ୍ନ ଭିନ୍ନ ଦୂରତା ଓ ଆଲୋକ ନେଇ ମୋ ଜୀବନ-ଆକାଶକୁ ଆସିଛନ୍ତି ଅନେକ ନକ୍ଷତ୍ର, ଇନ୍ଦ୍ରିୟ ଓ ମନରେ ସୃଷ୍ଟି କରିଛନ୍ତି ଆବେଗ ଓ ବେପଥୁ, 'ଏକରୁ' 'ଅନେକ' ମୁଁ ହୋଇଯାଇଛି... ଜଣେ ମଣିଷ ହୋଇ ମୁଁ ଆଉ ରହିନାହିଁ ! ଇନ୍ଦ୍ରଧନୁର ରଙ୍ଗପରି ଆସିଛନ୍ତି ଚରିତ୍ର ପରେ ଚରିତ୍ର, ଏକସମୟରେ ନୁହେଁ, ବିଭିନ୍ନ ସମୟରେ । କିଏ ଦିନ କେତୋଟି, ମାସ କେତୋଟି ପାଇଁ, ତ କିଏ ବର୍ଷ ବର୍ଷ !

ସମୀକ୍ଷା ବୋଧହୁଏ ଇନ୍ଦ୍ରଧନୁର ପ୍ରଥମ ରଙ୍ଗ,ବାଲ୍ୟଜୀବନରେ ସ୍ୱପ୍ନର ସାଥୀ । ଚିଲିକାର ସେହି ସନ୍ଧ୍ୟା... ଶରୀରର, ଇନ୍ଦ୍ରିୟର ସମସ୍ତ ଅଂଶର ଆବଶ୍ୟକତା ବୁଝିବାପୂର୍ବରୁ ଆମେ ଦୁହେଁ ଯେତେବେଳେ ଏକାକାର ହୋଇ ଯାଇଥିଲୁ, ଆଗରୁ ରିହିଅର୍ସାଲ୍ ନ କରି ନାଟକ କଲାପରି, କୌଣସି ପ୍ରସ୍ତୁତି ନ ଥାଇ ବକ୍ତୃତା ପ୍ରତିଯୋଗିତାରେ ଯୋଗ ଦେଲାପରି – ଆମେ ପରସ୍ପରର ଶରୀରକୁ ଆବିଷ୍କାର ଓ ଅନୁଭବ କରିଚାଲିଥିଲୁ । ତେର ଚଉଦ ବର୍ଷର ପିଲାଟି ସତେ ଯେମିତି ହଠାତ୍ ବଡ଼ ହୋଇଗଲା ! ଜୀବନକୁ ଦେଖିବାର, ବୁଝିବାର ଭାଷା ବଦଳିଗଲା... ବଞ୍ଚିବାର ଭିନ୍ନ ଭିନ୍ନ ନାମ ଶୁଣିପାରିଲା !

ସମୀକ୍ଷାକୁ ବୁଝିବା କଷ୍ଟ, ଯେପରିକି ନିଜକୁ । ତା ପ୍ରତି ଏକ ଅନିର୍ଦ୍ଦିଷ୍ଟ ଦୁର୍ବଳତା ଭିତରେ ମୁଁ ଲକ୍ଷ୍ୟ କରିଛି ଏକ ନିର୍ଦ୍ଦିଷ୍ଟ ଆସକ୍ତି । ଆଜି ସେ ଡକ୍ଟର ସମୀକ୍ଷା, ଦୀପଙ୍କରର ସାଥୀ, ନକ୍ସାଲବାଦୀ । ଲେଖିଥିଲା ଦୀପଙ୍କର ଭିତରେ ମୋତେ ପାଇଛି । ଉଭୟଙ୍କୁ ଭଲ ପାଇଛି । ଲେଖିଥିଲା – ଜଣେ ନାରୀ ଦୁଇଜଣ ପୁରୁଷଙ୍କୁ କଣ ଭଲ ପାଇ ପାରେନା ? ଏକକାଳୀନ ?

ଆହୁରି ଲେଖିଥିଲା, ଅସୁବିଧା ହୋଇଛି ମୋର ପିଲାଦିନୁଁ—ମା'ଙ୍କୁ ହରାଇବା ପରଠାରୁ । ଏକ ବିରାଟ ଶୂନ୍ୟତା ନେଇ ମୋର ବାଲ୍ୟଜୀବନ ଆରମ୍ଭ ହୋଇଛି । ମୋ ଅବଚେତନ ମନରେ ସବୁବେଳେ ଏହି ଅଭାବବୋଧ, ଏହି ଶୂନ୍ୟତାକୁ ପୂରଣ କରିବାପାଇଁ ମୁଁ ଖୋଜିଛି ଝିଅଟିଏ, ଗଢ଼ିବାକୁ ଚେଷ୍ଟା କରିଛି ସମ୍ପର୍କଟିଏ । କିନ୍ତୁ ଠିକ୍ ପାଇନି ସେଭଳି ଚରିତ୍ର, ଯାହା ପାଖରେ ନିଜକୁ ସମ୍ପୂର୍ଣ୍ଣ ଭାବେ ସମର୍ପଣ କରି ଦେଇପାରିଥା'ନ୍ତି । ଯାହାକୁ ପାଇଛି, ଯେତେ ଦିନ ପାଇଛି – ତାହା ଆଂଶିକ, ଅସମ୍ପୂର୍ଣ୍ଣ । ସେହି କାରଣରୁ ଏ ପର୍ଯ୍ୟନ୍ତ ମୁଁ କାହାକୁ ଭଲ ପାଇ ପାରି ନାହିଁ ।

ସମୀକ୍ଷାର ସମୀକ୍ଷା, ମୁଁ ଅନୁଭବ କରୁଛି, ମୋ' ଚରିତ୍ରର ଏକ ବାସ୍ତବ ସମୀକ୍ଷା – ''ତୁମ 'ଆଦର୍ଶ ପୁରୁଷ' ତୁମ ଜୀବନର ସବୁଠୁଁ ବଡ଼ ଶତ୍ରୁ । ସାଧାରଣ ଜୀବନରେ ବିଶ୍ୱାସ ନ କରିବା, ସାଧାରଣ ବଞ୍ଚିବା ପ୍ରଣାଳୀକୁ ହତାଦର କରିବା – ତୁମ ସମସ୍ୟାକୁ ଆହୁରି ଜଟିଳ କରି ପକେଇଛି । କେତେ ବହିର କେତେ ଚରିତ୍ର, ତୁମ ମନ ଭିତରେ ବସା ବାନ୍ଧି ରହିଛନ୍ତି । ଆଉ ତା' ସହିତ ନିଜ ଜୀବନରେ ଭେଟିଥିବା ଚରିତ୍ର – ସବୁ ମିଶି ଫେଣ୍ଟାଫେଣ୍ଟି ହୋଇଯାଇଛନ୍ତି ।''

ସମୀକ୍ଷା ତ ଏରିକ୍ ଏରିକ୍‌ସନ୍‌ଙ୍କୁ, ସିଗ୍‌ମଣ୍ଡ୍ ଫ୍ରଏଡ୍‌ଙ୍କୁ ବଳିଗଲା ! ଅପୂର୍ବ ଚରିତ୍ର-ବିଶ୍ଳେଷଣ ! ନାଁଟି ତାର 'ସମୀକ୍ଷା' କିଏ ଦେଇଥିଲା କେଜାଣି ! ସତରେ ପ୍ରୋଫେଟିକ୍ !

ଆତ୍ମ-ସମୀକ୍ଷାର ବିଭିନ୍ନ ଦିଗ ଦେଖାଯାଉଛି । ମନ ଭିତରେ ରହିଥିବା ଅସଂଯତ ବଖରାଟିର ଝରକା ଓ କବାଟ ଗୋଟିଏ ପରେ ଗୋଟିଏ ଖୋଲିବାରେ ଲାଗିଛି ।

ଦେଖୁଛି ଜେଲ୍ ବଗିଚା ଭିତରେ ଗୀତାକୁ – ଭିନ୍ନ ଏକ ପୃଥିବୀର ଅନ୍ୟ ଏକ ଝିଅ । ବନ୍ଧନଭିତରେ ପୁଣି ଏକ ବନ୍ଧନ – ଏକ ସମ୍ପର୍କ ସୃଷ୍ଟି କରିପାରିଥିଲା ଦିନ କେଇଟା ଭିତରେ !

ତା ପରେ ?

ଶାନ୍ତିନିକେତନର ସେହି ସ୍କୁଲ-ଝିଅ, ଭିକ୍ଷା ମଜୁମ୍‌ଦାର୍ – ଯାହାର ଗୀତ ସରିଲାବେଳକୁ ପୂର୍ବପଲ୍ଲୀରେ ସୂର୍ଯ୍ୟାସ୍ତ ହୋଇ ଯାଇଥାଏ, ଯାହାକୁ ଦେଖିଲେ ଇଚ୍ଛାହୁଏ ପୁଣି ଥରେ ବାଲ୍ୟଜୀବନକୁ, ଶୈଶବକୁ ଫେରିଯିବା ପାଇଁ । ଇଚ୍ଛାହୁଏ ସେହି ଜୀବନର ଆଶଙ୍କା ଓ ସ୍ୱପ୍ନ ଭିତରେ ଆଜୀବନ ବନ୍ଦୀ ହୋଇ ରହିବା ପାଇଁ ।

ଏବେ ଦିଶୁଛି ଝରକା ସେପାଖରେ ଆଉ ଏକ ଛବି – ରୋମାଞ୍ଚକର, ଅଥଚ ଅସ୍ପଷ୍ଟ, ନୀରବ – ଆରିୟାନା । ସମଗ୍ର ଶରୀରରେ ଖେଳିଯାଏ ଏକ ଅଦ୍ଭୁତ ଆଲୋଡ଼ନ ଓ ଉତ୍ତେଜନା । ଆରିୟାନା ପରି ଗ୍ରୀସ୍‌ର ଝିଅଟିକୁ ଦେଖି ବୋଧହୁଏ ରବୀନ୍ଦ୍ରନାଥ ଲେଖିଥିଲେ ନାରୀ ହେଉଛି ଅର୍ଦ୍ଧେକ 'ନାରୀ', ଆଉ ଅର୍ଦ୍ଧେକ 'କଳ୍ପନା' । ଆରିୟାନାର ସ୍ପର୍ଶ ଏକ ସମ୍ମୋହିନୀର । ସିଏ ଅର୍ଦ୍ଧେକ କଳ୍ପନା ନୁହେଁ, ସମ୍ପୂର୍ଣ୍ଣ... ।

କବାଟ ପାଖରେ ଡେଲ୍‌ଫି... ବିଛଣାରେ ଆନି... କ୍ୟାଣ୍ଟିନ୍‌ରେ ଡେଲ୍‌ଫି... ଲାଇବ୍ରେରୀରେ ଆନି... ଦିଲ୍ଲୀ କନ୍ନଟ୍ ପ୍ଲେସ୍ ରିଭଲି ସିନେମାହଲ ଭିତରେ ଆନି, କଲିକତା ଗ୍ଲୋବ୍ ଥିଏଟରରେ ଡେଲ୍‌ଫି... କଟକ 'ୟୁନିଭର୍ସ' ସେମିନାର୍‌ରେ ଆନି, ଡମ୍ ଡମ୍ ଏୟାରପୋର୍ଟ ଲାଉଞ୍ଜ୍‌ରେ ଡେଲ୍‌ଫି । ଆନି, ଡେଲ୍‌ଫି, ଭିକ୍ଷା, ରୀତା, ସମୀକ୍ଷା... ମୁଣ୍ଡ ଗୋଳମାଳ ହୋଇଯାଉଛି ।

## ୭୨

ଓସ୍‌ମାନିଆ ୟୁନିଭର୍ସିଟି କ୍ୟାମ୍ପସ୍‌ରେ ଥିବା ଆମେରିକାନ୍ ସେଣ୍ଟର୍ ଲାଇବ୍ରେରୀ ଲାଉଞ୍ଜ୍‌ରେ ବିଶିଷ୍ଟ ଇଣ୍ଡୋଇଙ୍ଗ୍‌ଲିଶ୍ କବି ନିସିମ୍ ଇଜେକିଏଲ୍ । ପରିଚୟ ଦେଲାପରେ ପଚାରିଲେ ମୁଁ କାହାଉପରେ ପି.ଏଚ.ଡ଼ି. କରୁଛି । ଝିଅ ଦି ତିନିଜଣ ଘେରିଗଲେଣି ପ୍ରଫେସର ଇଜେକିଏଲ୍‌ଙ୍କୁ । ସବୁ ନିଜ ନିଜର ରିସର୍ଚ୍ଚ-ଟପିକ୍ ଆଲୋଚନା କରିବାରେ ବ୍ୟସ୍ତ । ମୁଁ ଦେଖିଲି କ୍ୟାଣ୍ଟିନ୍‌ରେ ସମସ୍ତେ ଲଞ୍ଚ୍ ନେଲାବେଳକୁ ଜଣେ ଗୋଟିଏ ସ୍ୱତନ୍ତ୍ର ଟେବୁଲ୍ ନେଇ କୋଲ୍ଡ୍ ଡ୍ରିଙ୍କ୍ ପିଇବାରେ ବ୍ୟସ୍ତ । ଅଳ୍ପ ସମୟ ଭିତରେ ଜମିଗଲା । 'ଭେଙ୍କେଟ୍‌ରାମ୍' ପିଲାଟିର ନାଁ, ଦିଲ୍ଲୀ ୟୁନିଭର୍ସିଟିରୁ ଏମ୍.ଏ. କରିଛି – ରହୁଛି ନିଜ ଘରେ ବେଗମ୍‌ପେଠ୍ ଏୟାର୍‌ପୋର୍ଟ ନିକଟରେ ସଞ୍ଜିବା ରେଡ୍ଡି ନଗରରେ । ବାପା ଆନ୍ଧ୍ରା କ୍ୟାଡର୍ ଆଇ.ଏ.ଏସ୍. ଅଫିସର, ରହୁଛନ୍ତି ଆଉ କେଉଁଠି । ଘରଟି ପୁଅ ହାତରେ । ବାବୁ ପ୍ରାୟ ସବୁଦିନ କୋଡ଼ିଏ କ୍ଲିଲୋମିଟର୍ ଆସନ୍ତି କାର୍‌ରେ – ବେଳେ ବେଳେ ସ୍କୁଟର୍‌ରେ । ଏକା ଏକା ଲାଇବ୍ରେରୀରେ ଘୁରିବୁଲନ୍ତି । କାହା ସହିତ କଥାହେବା ଦେଖିନି । ଏକଦମ୍ ଡ୍ୟାଣ୍ଡି–ଇମ୍ପୋର୍ଟେଡ୍ ଜିନ୍ସ, ଟି ଶାର୍ଟ ସବୁବେଳେ । ହାତରେ ଲେଟେଷ୍ଟ ବହି ବା ଜର୍ଣ୍ଣାଲ୍ ଦେଖିବାକୁ ମିଳେ – ପୋଷ୍ଟ୍‌ମଡର୍ଣ୍ଣିଜିମ୍ ଉପରେ ତଥ୍ୟ ଯୋଗାଡ଼ ଚାଲିଛି ବୋଲି କଥାପ୍ରସଙ୍ଗରେ କହିଲେ ।

ଦିନେ ସନ୍ଧ୍ୟାରେ ମୋତେ ତାଙ୍କ ଘରକୁ ନେଇଗଲେ । ତିନୋଟି କୋଠରି ବିଶିଷ୍ଟ ବଂଗ୍ଲୋଟାଇପ୍ ଘର । ଲନ୍ ସୁନ୍ଦର । ରୋଷେଇଘରେ ବିଭିନ୍ନ ସାଇଜ୍‌ର ଷ୍ଟିଲ୍ ବାସନ ଦେଖି ମୁଁ ତଟସ୍ଥ । ତାଙ୍କ ହୋମ୍ ଲାଇବ୍ରେରୀ ଦେଖି ଲୋଭ ହେଲା । କିଟ୍ସ, ସେକ୍ସପିୟରଙ୍କ ଠାରୁ ଆରମ୍ଭ କରି ପ୍ଲାଟୋ, ଆରିଷ୍ଟୋଟ୍ଲ, କୁନ୍ଦେରା, ମାରକ୍ୱିଜ୍, ଡେରିଡା, କ୍ୟାଲ୍‌ଭିନୋ... କିଏ ଆଉ ନାହିଁ ? ମାମୁଁ ଲଣ୍ଡନ୍‌ରେ, ଭାଇ ନିୟୁଅର୍କ୍‌ରେ । ତେଣୁ ବହି ଆସିବାରେ ଅସୁବିଧା ନାହିଁ । ରାତିରେ ନିଜେ ଆନ୍ଧ୍ରାଚିକେନ୍ ଖୋଇଲେ । ରୋଷେଇରେ ବି ସ୍ପୃହା ଅଛି, ପାରଦର୍ଶିତା ଅଛି – ଲକ୍ଷ୍ୟ କଲି ।

ସେଦିନ ସକାଳେ ଝିଅଟିଏ ମୋ' କ୍ୟାରେଲ୍ ପାଖରେ । ନାଁ – ମୁକ୍ତା ପାରିଖ୍ ବା ଝା, ଠିକ୍ ମନେରଖି ପାରିଲିନି । ହାଇଦ୍ରାବାଦ୍ ପେପର୍ 'ନିୟୁଜ୍‌ଟାଇମ୍'ର ପ୍ରତିନିଧି । ଇଣ୍ଟର୍ଭିୟୁ କରିବାକୁ ଆସିଛନ୍ତି ଆମ ସେଣ୍ଟର୍‌ର ଡାଇରେକ୍ଟର୍ ଓ କେତେଜଣ ସ୍କଲାର୍‌ଙ୍କୁ । ରିସେପ୍‌ସନିଷ୍ଟ ମ୍ୟାରିଲିନ୍ ବଦମାସି କରିଛି । ମୋ' ପାଖକୁ ପଠେଇଦେଇଛି । ମୁଁ କୁଆଡ଼େ 'ସିନିୟର ସ୍କଲାର୍'... ଲାଇବ୍ରେରୀ ବିଷୟରେ, ଭାରତର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ଓ ଆମେରିକାର ଭିଜିଟିଂ ପ୍ରଫେସରମାନଙ୍କୁ ବ୍ୟକ୍ତିଗତ ସ୍ତରରେ ଜାଣିଛି । ତେଣୁ ସେଣ୍ଟର୍ ବିଷୟରେ ଫିଚ୍‌ର୍ ଆର୍ଟିକ୍ଲଟିଏ ଲେଖିଲେ ମୁଁ ବେଶ୍ ସାହାଯ୍ୟ କରିପାରିବି ବୋଲି ମୁକ୍ତାକୁ ଧାରଣାଟି ଦିଆଯାଇଛି ।

ତେବେ ମୁକ୍ତା କଣ ସବୁ ପଚାରି ବୁଝିଲା, ମୋର ମନେ ନାହିଁ, କିନ୍ତୁ ପରଦିନ ଆର୍ଟିକ୍ଲ୍‌ଟି ଲାଇବ୍ରେରୀ ନୋଟିସ୍ ବୋର୍ଡ଼ରେ.... ଆରମ୍ଭରୁ ମୋ' ନାଁ, ମାନେ ମୋର କେତୋଟି ମତାମତ ଉଦ୍ଧାର କରାଯାଇଛି । ଭେଙ୍କେଟ୍‌ରାମ୍ ଡାକିଲେ ମୁକ୍ତାକୁ ଆଉ ମତେ–ବଞ୍ଜାରା ହିଲ୍ସ ହୋଟେଲ୍‌ରେ ପାର୍ଟି... ସପ୍ତାହକ ଭିତରେ ଆବିଦ୍ସର 'ପ୍ୟାଲେସ୍ ହାଇଟ୍ସ'ରେ ପୁଣି ପାର୍ଟି ।

ଏ ଭିତରେ ରାମ୍ ମୋ ପାଇଁ ରାମୁ ହୋଇଗଲାଣି ।

ରିପୋର୍ଟର୍ ମୁକ୍ତାଙ୍କୁ ତାଙ୍କ ନିୟୁଜ୍‌ପେପର୍ ଅଫିସ୍ ଅପେକ୍ଷା ଆମ ଲାଇବ୍ରେରୀରେ ବେଶୀ ସମୟ ଦେଖିବାକୁ ମିଳୁଛି । ରାମୁର ହାତରେ ଆଜିକାଲି ଗୋଟାଏ ମୋବାଇଲ୍ ଫୋନ୍ ।

ପଚାରିଲି ସେଦିନ – 'କ'ଣ ସିରିୟସ୍ ଆଫାୟାର୍ ?'

କହିଲା – 'ନୋ, ନୋ, ନଟ୍ ଆଟଲ୍... ଜଷ୍ଟ ଆନାଦର୍ ଆଫାୟାର୍ ?'

'ଆନାଦର୍ ଆଫାୟାର୍ ?' – ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ତା'ହେଲେ ବାବୁ ତ ପୁରା କ୍ୟାସାନୋଭା ! ତିନିଶ ସତୁରି, ନା ତିନିଶ ଅଶୀ ଆଫାୟାର୍ ଥିଲା କ୍ୟାସାନୋଭାଙ୍କର ।

ବିଚିତ୍ର ଏ ପୃଥିବୀ !

ମଣିଷ ବଞ୍ଚିବାଲାଗି କେତେ କଣ କରି ପକାଏ ! ଜୀବନ ଓ ମୃତ୍ୟୁ ଭିତରେ, ଆରମ୍ଭ ଓ ଶେଷ ଭିତରେ, କେତେ ରକମର ଭୟ ଓ ଦୁଃଖ ଭିତରେ ସନ୍ତୁଳିତ ହୁଏ ! ମୁକ୍ତିପାଇଁ ତିଆରି କରେ ସମସ୍ୟା ପରେ ସମସ୍ୟା,ଜାଲ ପରେ ଜାଲ – ସମ୍ପର୍କ, ସମ୍ଭାବନା । ବିଚିତ୍ର ଏ ଜୀବନ ! ଗୋଟିଏ ଜୀବନ, ଅଥଚ ବଞ୍ଚିବାର ଏତେ ଗୁଡ଼ିଏ ନାମ ! ଏତେ ପ୍ରସ୍ତୁତି, ପରୀକ୍ଷା, ପ୍ରହସନ !

ସତୁରି ବର୍ଷର ବୁଢା ୱାଚ୍‌ମ୍ୟାନ ଆପ୍ପା ରାଓ ମୋତେ ଡାକୁଛି –

'ସାବ୍, ଲାଇବ୍ରେରୀ ବନ୍ଦ୍ ହୋନେକା ଟାଏମ୍ ହୋଗିୟା ।'

ଆପ୍ପା ରାଓ ଏକ୍ସ-ଆର୍ମି-ରିକ୍ରୁଟ୍ । ଗୁଡ଼ାଏ ପିଲା ତା ଘରେ । ଦୁଇ ତିନିଥର ବାହା ହୋଇଥିଲା । ପୁଅମାନେ ଆଉ ପଚାରୁନାହାନ୍ତି । ଦରମା ଯାହା ପାଏ, ଅଣ୍ଟେନା । ଆମେ ବେଳେବେଳେ ସାହାଯ୍ୟ କରୁ । ପୁରୁଣା ପ୍ୟାଣ୍ଟ ସାର୍ଟ୍ ମୁଁ ରାଓ ପାଇଁ ପ୍ରତିବର୍ଷ ନେଇଯାଏ । ଖ୍ରୀସ୍‌ମାସ୍ ଛୁଟିରେ ତା'ଘରେ ମୁଁ ବିରିୟାନି ଖାଇଛି – ବଡ଼ ବଡ଼ ଚିକେନ୍ ଲେଗ୍‌ପିସ୍, ଡେରାଡୁନ ଚାଉଳ, ଉପରେ ଦୁଇଟା ବଏଲ୍ଡ ଏଗ୍, କଟମ୍ବର୍ ଓ ସୁପ୍ । ସିକନ୍ଦରାବାଦ୍ ଷ୍ଟେସନ୍ ସାମ୍‌ନାରେ ଥିବା ହୋଟେଲ୍ 'ଆଲ୍‌ଫା ୟାଣ୍ଡ୍ ଆଲ୍‌ଫା' ର ବିରିୟାନି ପରି ନ ହେଲେ ବି ଆପ୍ପା ରାଓର ବିରିୟାନି ବେଶ୍ ଉପଭୋଗ କରିବାର, ମନେ ରଖିବାର ଚିଜ୍ ।

ଲାଇବ୍ରେରୀରୁ ବାହାରିଲା ବେଳକୁ ଅବ୍‌ଜର୍ଭେଟୋରୀ ଉପରକୁ ସୂର୍ଯ୍ୟ ନଇଁଗଲେଣି । ଏକ ଧୂସର ଆକାଶ ତଳେ ମୁଁ – କିଛି ପୁରୁଣା ଅନ୍ଧକାର ଓ କିଛି ନୂତନ ଅନୁଭବ ଅପେକ୍ଷାରେ ।

## ୭୩

କିଛି ଅନ୍ଧକାର... ଆଉ ତା ସହିତ କିଛି ଅନୁଭବ... ଅନ୍ଧକାର ଭିତରେ ଶୋଇରହି ଛଟପଟ ହେଉଥିବା ଛୋଟ, ବଡ଼ ଅନୁଭବ । ଅତୀତର ଅନୁଭବ – ପକ୍ଷୀମାନଙ୍କ ପରି, କାଲି ଉଡ଼ି ବୁଲୁଥିଲେ ଆକାଶକୁ ଘରର ଛାତ ମନେ କରି । ଆଜି ନିକମା, ଡେଣା କଟିଯାଇଛି (ନା କାଟି ଦିଆଯାଇଛି ?), ଉଡ଼ିବାର ଆଉ ଶକ୍ତି ନାହିଁ । ଅଛି ଖାଲି ସ୍ମୃତି ପାରିବାପଣର, ଅଙ୍ଗେ ନିଭେଇବାର ।

ମୁଁ ଆଲୁଅ-ଅନ୍ଧାର ଭିତରେ ବଢ଼ିଆସିଥିବା ପକ୍ଷୀଟିଏ – ସ୍ୱାଧୀନ, ସ୍ୱପ୍ନଭୁକ୍ ମଣିଷବେଶରେ । ସମସ୍ତଙ୍କ ଭିତରେ ଥାଇ ଏକା । ପ୍ରଶ୍ନକରେ ଗୋଟିଏ ପରେ ଗୋଟିଏ । ଉତ୍ତରକୁ ଅପେକ୍ଷା ନ କରି ପୁଣି ପ୍ରଶ୍ନ, ଗୋଟିଏ ସରୁ ସରୁ ଆଉ ଗୋଟିଏ । ଜୀବନରେ ଘଟଣାର ଭୂଗୋଳକୁ ଏ ପାଖ ସେ ପାଖ କରିଚାଲେ – ଆମେରିକା ପାଖକୁ ନେଇଯାଏ ଆସାମ, ଆରିୟାନା ଓ ସିହ୍ନା ଏକ ହୋଇଯାଆନ୍ତି... (କେଉଁଠି ଥିଲି ମୁଁ ଗଲା ଦଶ ବର୍ଷ ? କଣ କରୁଥିଲି ?) ରୀତାର ଓଠରୁ ବାହାରିଆସେ ସମୀକ୍ଷାର ହସ, ଦୀପଙ୍କର ଆଖିରେ ଦେଖେ ଆଚାର୍ଯ୍ୟ ରାଜନୀଶ୍‌ଙ୍କ ଝଲକ । ପ୍ରଥମ ବର୍ଷ କଲେଜରେ ପଢ଼ିଥିବା ପର୍ମ୍ୟୁଟେସନ୍ସ-କମ୍ବିନେସନ୍ସ୍ ସୂତ୍ରରେ ଆସନ୍ତି ଅବଦୁଲ୍ ଓ ଜଏଶୀଲନ୍, ଅଞ୍ଜନା ଓ ଇନ୍ଦିରା ଗାନ୍ଧି । ଶିଳ୍ପୀର କ୍ୟାନ୍‌ଭାସ୍ ଉପରେ ଦେଖାଦିଅନ୍ତି ଅଦ୍ଭୁତ ଯୋଡ଼ି – ଶିଶିର୍‌ଦା ଓ ପାଣ୍ଡୁ ପିଇସା, ଖଟୁଆ ଓ କୃଷ୍ଣମୂର୍ତ୍ତୀ... କଲାଜ୍ ଭିତରେ ରହିଯାଆନ୍ତି – ସୁମିତ୍ର ଓ ଅନୀତା ବର୍ମା, ଡେଲ୍‌ଫି ଓ ନର୍ପୁଥର ।

ଆଜି ମୁଁ ପୁଣି ଏକା । ଜାବୁଡ଼ିଧରି ରହିଥିବା ସ୍ମୃତି ଓ ଅନୁଭବରୁ କିଛିଟା ମୁକ୍ତି ମିଳିଲାଣି । ଚାହିଁଲେ ବି, ଅତୀତ ବର୍ତ୍ତମାନର ଶୂନ୍ୟତାକୁ ଆଉ ପୂର୍ଣ୍ଣ କରିପାରୁନାହିଁ । ଆରିୟାନା ଓ ଡେଲ୍‌ଫି ମୋତେ ଆଉ ବିବ୍ରତ ଓ ବିବଶ କରୁନାହାନ୍ତି, କରିପାରୁନାହାନ୍ତି । ସେ ଦୁହିଁଙ୍କ ସୌନ୍ଦର୍ଯ୍ୟ ଓ ସ୍ମୃତି ରହିଯାଉଛି କେବଳ କେତୋଟି ଫଟୋଗ୍ରାଫ୍ ଭିତରେ – ଜୀବନ୍ତ, କିନ୍ତୁ ଆଉ ବିପଜ୍ଜନକ ନୁହେଁ ।

କିଏ କେଉଁଠି ଆଜି ? ପୃଥକ୍ ପୃଥକ୍ ସ୍ମୃତିର ଚରିତ୍ର ଓ ଘଟଣାରୁ ଓହରିଆସି, ଆଜି ଏକ କଲାଜ୍ ଭିତରେ – ସେମାନେ । ନର୍ପୁଥର ରେଲ୍‌ୱେ ପ୍ଲାଟ୍‌ଫର୍ମ୍‌ରେ ଦଶବର୍ଷ ହେଲା । ପରିବାରରେ ସମସ୍ତେ ଅଛନ୍ତି, କିନ୍ତୁ ସମ୍ପର୍କ ରଖିନି ସେ, ପୁଅ ଆର୍ମିରେ ମେଜର୍ ହୋଇଗଲାଣି, ଶୁଣୁଛି । ଝିଅ ବାହାହୋଇ ସଫ୍ଟଓୟାର୍ ଏଞ୍ଜିନିୟର୍ – ଫ୍ଲୋରିଡାରେ ।

ଚିରା ପ୍ୟାଣ୍ଟ, ଶାର୍ଟ୍ ସେମିତି ରହିଛି, ଘୋଡ଼େଇ ରଖିଛି ପଞ୍ଜରା ହାଡ଼କେତୋଟିକୁ । ଦାଢ଼ିକଟା ହୋଇନି ବର୍ଷ ବର୍ଷ ଧରି । ସ୍ୱରରେ ପୁରୁଣା ଉତ୍ତାପ ଏବେ ବି ଭରି ରହିଛି । ଶୁଦ୍ଧ ଇଂରାଜୀ କହୁଥିବା ବିଦେଶ-ଫେରନ୍ତା ଏହି ଚରିତ୍ରକୁ ଷ୍ଟେସନ୍‌ରେ କିଏ ନ ଜାଣେ ? କେହି କିନ୍ତୁ ସାହାଯ୍ୟ କରିନ୍ତିନି (ଭୟରେ ?), ସେ ମାଗେ କେବଳ ପୁରୁଣା ସାଥିଙ୍କୁ । ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭକରି ସେକ୍ରେଟେରିଏଟ୍‌ରେ କାମ କରୁଥିବା ବରହମ୍‌ପୁରର, ଛତ୍ରପୁରର ଯେ କେହି ବାସିନ୍ଦା, କିଏ ନ ଜାଣେ ନର୍ପୁଥରକୁ ? ଦୁଇଦୁଇଥର ମସ୍କୋରେ ରହିଆସିଥିବା ପଲିଟ୍‌ବ୍ୟୁରୋ ସଭ୍ୟ, ଦକ୍ଷିଣ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ସେଦିନର ଛାତ୍ରନେତା, କୁଶଳୀ ଅଭିନେତା, ଚିତ୍ରକାର – ନର୍ପୁଥର !

ଅପୂର୍ବ... 'ମିସ୍ କ୍ୟାଲ୍‌କଟା' କୁ ବାହାହେବାପରେ ଇଣ୍ଡିଆନ୍ ନେଭି... ତାପରେ ଇ.ଡବ୍ଲୁ.ଷ୍ଟିଭେନ୍ସ, ଜେନେରାଲ୍ ଇଲେକ୍‌ଟ୍ରିକ୍ କମ୍ପାନୀର ମାର୍କେଟିଂ ଚିଫ୍, ରେସ୍‌କୋର୍ସ... ସାଟର୍ଡେ କ୍ଲବ୍ ଓ ଫୋର୍ଟ୍ ଉଇଲିୟମ୍ ବାର୍‌ରେ ରାତିପରେ ରାତି । ହଠାତ୍ ଶୁଣେ, ସେ ଆଉ ନାହିଁ । ପ୍ରଥମ ଷ୍ଟ୍ରୋକ୍‌ରେ ଶେଷ । ଆଗରୁ ହୋଇଥିବ । କାହାକୁ କହିବା ପିଲା ସେ ନୁହେଁ । ନିଜ ଦୁଃଖ ଅନ୍ୟମାନଙ୍କ ସାଙ୍ଗରେ ବାଣ୍ଟିବାରେ ସେ ବିଶ୍ୱାସ କରେନା ।

ରତନ ସାର୍ ବି ମରିଗଲେଣି । ଅବଦୁଲ୍‌ର ଦୋକାନ ସେମିତି ଚାଲିଛି ବୋଧେ ! ସୁପ୍ରିୟ ଷ୍ଟେଟ୍‌ବ୍ୟାଙ୍କ୍‌ରେ କେଉଁଠି ମ୍ୟାନେଜର୍ ହୋଇସାରିବଣି । ଶରତ କେଉଁଠି ଡାକ୍ତର ଥିବ !

ସିହ୍ନା ସିଲଂରେ ଲେଡିକିନ୍ କଲେଜରେ ମୁଖ୍ୟ ଅଧ୍ୟାପକ, ଏଲିୟଟ୍ ବୁଝାଉ ବୁଝାଉ ଛାତ୍ରୀଜଣଙ୍କୁ ବାହାହୋଇ ପଡ଼ିଲା । ସିହ୍ନାର ଝିଅ, ଡାକ୍ତର । ପ୍ରାଇଭେଟ୍ ପ୍ରାକ୍ଟିସ୍ କରୁଛି, ଆଉ ସମ୍ଭାଳୁଛି ଦଶଟା ଚା' ବଗିଚା ।

ସୁମିତ୍ର ଆଇ.ପି.ଏସ୍. ରେ । ଏବେ ଲକ୍ଷ୍ନୌରେ ଆଇ.ଜି. (କ୍ରାଇମ୍), ହିନ୍ଦୀରେ ଅନେକ କବିତା ଛପେଇଲାଣି । ଶାନ୍ତିନିକେତନରେ ପଢ଼ିଲାବେଳେ କପି କପେ ଦେଲେ ଲଣ୍ଡା ହେଇଯାଉଥିଲା । ଚିଠିଖଣ୍ଡେ ସେ ଦିନ ଲେଖିଲି – ୧୦/୧୨ ବର୍ଷ ପରେ । 'ପଳେଇ... ଆ, ଅନେକଦିନୁ ଦେଖିନି' । ଇନ୍‌ଲ୍ୟାଣ୍ଡଟି ଆର୍.ଏମ୍.ଏସ୍. ଲେଟର୍ ବକ୍ସରେ ପକେଇ ଦେଲାପରେ ମୁଁ ସବୁ ଭୁଲିଯାଇଥିଲି । ଚିଠିପାଇ ପଳେଇ ଆସିଲା – ଲକ୍ଷ୍ନୌରୁ ଭୁବନେଶ୍ୱର, ସପରିବାର । ସୁମିତ୍ର – ଅନ୍ୟମାନଙ୍କ ଠାରୁ ଭିନ୍ନ । ଡେଲ୍‌ଫି ପାଇଁ ବ୍ୟାଙ୍କ୍‌ରେ ଥିବା ସବୁ ଟଙ୍କା ନେଇ ଆସିଥିଲା । ହରିଦ୍ୱାର୍‌ର ଗୁରୁକୁଳକାଙ୍ଗ୍ରୀ

ୟୁନିଭର୍ସିଟି କ୍ୟାମ୍ପସ୍‌ରେ ଆମେ ତିନିଜଣ ଗୋଟିଏ ବିଛଣାରେ ଶୋଇଥିଲୁ ହନିମୁନ୍ ନାଇଟ୍‌ରେ ! ସୁମିତ୍ର – ଅଜବ ପିଲାଟେ । ବାହାଘର ତାର ବି ଅଦ୍ଭୁତ, ଆକସ୍ମିକ ।

ସେଦିନ ସନ୍ଧ୍ୟାରେ ତରବରରେ କଲିକତା 'ଗ୍ଲୋବ୍' ସିନେମାରୁ ଡଷ୍ଟିନ୍ ହଫ୍‌ମ୍ୟାନ୍ ଥିବା ବହୁଚର୍ଚ୍ଚିତ 'ପାପିୟନ୍' ଫିଲ୍ମ ପାଇଁ ଆଡଭାନ୍ସ୍ ଟିକେଟ୍‌କରି ସେଣ୍ଟ୍ରାଲ୍ ଆଭିନ୍ୟୁ କ୍ରସିଂ ପାଖରେ ଫେରିଲାବେଳେ ଟ୍ରାଫିକ୍ ପୋଲିସ୍ ମୋ' ସ୍କୁଟର୍‌କୁ ଅଟକେଇଲା । ମୁଁ ଟିକେ ଅନ୍ୟମନସ୍କ ଥିଲି ଓ ସିଗ୍‌ନାଲ ନ ଦେଖି ପଳେଇ ଯାଇଥିଲି । ବିହାରୀ ପୋଲିସ୍ କନ୍‌ଷ୍ଟେବ୍‌ଲ୍ – ଲାଲବଜାର୍ ଥାନାକୁ ନେଇଗଲା । ସେଠି ଓ.ସି. ଥିଲେ ବଙ୍ଗାଳୀ ବାବୁଜଣେ । ଫାଇନ୍ ଦେବା ପୂର୍ବରୁ ମୁଁ ଫୋନ୍ ମାଗି କହିଲି, ବନ୍ଧୁଜଣେ ଅଛନ୍ତି ଏସ୍.ପି., ନ୍ୟୁ ମାର୍କେଟ୍ ସମବାୟିକା ବିଲ୍ଡିଂରେ ଅଫିସ୍, ଇତ୍ୟାଦି ।

ଟ୍ରାଫିକ୍ ଅଫେନ୍ସ କରି ଗୁଡ଼ାଏ ଲୋକ ଏମିତି କହନ୍ତି – ମୋର ଇଏ ଚିହ୍ନା, ସିଏ ଚିହ୍ନା..., ଡି.ଆଇ.ଜି., ମନ୍ତ୍ରୀ । ଭାବନ୍ତି ଭୟରେ ପୋଲିସ୍ କାଳେ ଛାଡ଼ିଦେବ ! କେତେକ ପରିସ୍ଥିତିରେ ଖସିଯାଆନ୍ତି ! ସେ ଯାହାହେଉ, ଯେ ବାବୁଜଣକ ବୋଧେ ମଜା ଦେଖିବାକୁ ମୋତେ ଟେଲିଫୋନ୍‌ଟି ଧରେଇଦେଲେ । ସୌଭାଗ୍ୟକ୍ରମେ ଫୋନ୍‌ରେ ମୁଁ ସୁମିତ୍ରକୁ ପାଇଗଲି । ବାସ୍... କଥାବାର୍ତ୍ତାରୁ ଅଫିସର୍-ଇନ୍-ଚାର୍ଜ୍ ଜାଣିଗଲେ ଓ ମୋତେ ଚା' କପେ ଦେଇ ଛାଡ଼ିଦେଲେ ।

ସୁମିତ୍ର ଫୋନ୍‌ରେ ଡାକିଲା । ଗଲାବେଳକୁ କେତେ ପ୍ରୋଟୋକଲ୍ ! ବାହାରେ ନାଲି ଆଲୁଅ ଜଳୁଛି । ପି.ଏ. ଅପେକ୍ଷା କରିବାକୁ କହି ଭିତରକୁ ଗଲେ । ଶେଷରେ ମୁଁ ପଶିଲା ବେଳକୁ ଟେବ୍‌ଲ୍ ଉପରେ ଗୋଡ଼ ଦୁଇଟା ପକେଇ ବାବୁ କବିତା ଲେଖୁଛନ୍ତି । ଅଳ୍ପ ସମୟ ଭିତରେ ଜାଣିଲି ସୁମିତ୍ର ଏ ଭିତରେ ବାହା ହୋଇଯାଇଛି ।

ପଚାରିଲି କିଏ ସେ ଅନ୍‌ଲକି ବାଳିକା । ସୁନ୍ଦରୀ, ରୁଚିସମ୍ପନ୍ନା ଡିଭର୍ସି ବା ବିଧବା କେହି ହୋଇପାରିଥାଆନ୍ତି ! ଆଦର୍ଶର ଜ୍ୱାଳାରେ ହୁଏତ ସୁମିତ୍ର ବାହାହୋଇଯାଇଛି, କିଏ ଜାଣେ ? କଲେଜରେ ସେମିତି ଢଙ୍ଗ ରଙ୍ଗ ତାଠି ଲକ୍ଷ୍ୟ କରିଥିଲି ।

ସେ ଯା'ହେଉ, କଥା ପ୍ରସଙ୍ଗରେ ସୁମିତ୍ର କହିଲା –

'ଆମାର୍ ବିଏ ବେଶ୍ ଡ୍ରାମାଟିକ୍ ହଏଛିଲ । ତୋକେ କଣ୍ଟାକ୍ଟ କର୍ତେପାର୍ଲିମ୍‌ନା... ସରି... ବ୍ୟାପାର୍‌ଟା କି ରକମ୍ ହଲୋ ବୋଲ୍‌ଛି – ଆମାର୍ ତଖନ୍ ନତୁନ୍ ପୋଷ୍ଟିଂ ହଏଛେ ଏଖାନେ । ହଠାତ୍ ୟାକ୍‌ଦିନ୍ ଦେଖ୍‌ଛି ଆମାର୍ ଡି.ଏସ୍.ପି. କିଛୁ ନିମନ୍ତ୍ରନ୍‌ପତ୍ର

ଧରେ ଆମାର୍ କାଛେ ଏସେଛେ । ଆମି ଜିଗ୍ୟାସ୍ କର୍ଲାମ୍ – ଆପନାର୍ ଛେଲେ-ମେ, କାର୍ ବିଏ ହଚ୍ଛେ ?

ଆମାର୍ ହାତେ ଯାକ୍ସା କାର୍ଡ଼ ଦିଏ ଭଦ୍ରଲୋକ୍ ନୀରବ୍ । ନାମ୍‌ଟା ଦେଖେ ବୋଲ୍ଲାମ୍... ଯେକି, ଆପ୍ନାର୍ ଜାମାଇବାବୁର୍ ନାମ୍ ସୁମିତ୍ର ?'

ମୁଁ ହସି ହସି ବେଦମ୍ । କଥା ହେଉଛି, ଭଦ୍ରଲୋକ ସୁମିତ୍ରର ମତିଗତି ଓ ବ୍ୟକ୍ତିଗତ ପରିସ୍ଥିତି ବୁଝି ଏକପ୍ରକାର ରିସ୍କ୍ ନେଲେ । ତାଙ୍କ କଥା ଯାହା ମୋତେ ସୁମିତ୍ର କହିଲା, ତାଙ୍କ ଝିଅ ଦେଖିବାକୁ ସୁନ୍ଦର, ଦିଲ୍ଲୀରେ ହିନ୍ଦି ମିଡିୟମ୍‌ରେ ପଢ଼ିଛି ବି.ଏ. ପର୍ଯ୍ୟନ୍ତ, ପିଲାଦିନୁ ମାଆଙ୍କୁ ହରାଇଛି, ଇତ୍ୟାଦି । ଶେଷକଥା – ଯଦି ସୁମିତ୍ର ଆପତ୍ତି କରେ, ତା'ହେଲେ ହାତରେ ଧରିଥିବା ଦଶଟି ନିମନ୍ତ୍ରଣପତ୍ର ଓ ପ୍ରେସ୍‌ରେ ଛପା ନହୋଇ ବମ୍ପୋଜ୍ ହୋଇ ରହିଥିବା ଶହେନବେଟି କାର୍ଡକୁ ନଷ୍ଟ କରି ଦିଆଯିବ । ଏହି କଥା କହୁ କହୁ ସେ କାନ୍ଦିପକେଇଲେ ।

ସୁମିତ୍ର କାହାର ଲୁହ ସହିପାରେନି । ଶେଷରେ ରାଜିହୋଇ ବାହା ହୋଇଗଲା । ମୁଁ ବେଳେବେଳେ ଭାବେ ଜେନ୍ ଅଷ୍ଟେନ୍‌ଙ୍କ 'ପ୍ରାଇଡ୍ ଯାଣ୍ଡ୍ ପ୍ରେଜୁଡିସ୍' ଉପନ୍ୟାସର ନାୟିକା ଏଲିଜାବେଥ୍ ପରି ଝିଅଟିକୁ ସେ ବାହାହେବାର ଥିଲା ।

ସମସ୍ତଙ୍କଠାରୁ ଭିନ୍ନ, ଅଦ୍ଭୁତ ଚରିତ୍ର – ସୁମିତ୍ର । ଇଂରାଜୀ ଅଧ୍ୟାପକ ଥିବା ଅବସ୍ଥାରେ ଆସିଛି ବୁଲି – ଶାନ୍ତିନିକେତନ । ଫିଲସଫି ଡିପାର୍ଟ୍‌ମେଣ୍ଟ୍‌ରେ କଳା ଗୋଲାପ ଓ ସୁନ୍ଦର ଝିଅ କେତୋଟିକୁ ଦେଖି ରହିଗଲା, ଆଉ ଏଲାହାବାଦ୍ ଫେରିଲାନି । ପଢ଼ିଲା ଏମ୍.ଏ. ଫିଲସଫି ନେଇ । କ୍ୟାରିୟର୍ ଫାଷ୍ଟକ୍ଲାସ୍, ବି.ଏ.ରେ ଏଲାହାବାଦ୍ ୟୁନିଭର୍ସିଟିରୁ ଦୁଇ ଦୁଇଟା ଗୋଲ୍ଡମେଡାଲ୍ ପାଇଥିଲା ଇଂରାଜୀ ଓ ଫିଲସଫିରେ, ସବୁଠୁଁ ବେଶୀ ନମ୍ବର ରଖି । ତେଣୁ ଏମ୍.ଏ.ରେ ଆଡ଼ମିଶନ୍ ମିଳିବାରେ କିଛି ଅସୁବିଧା ହେଲାନି ।

## ୭୪

ସତରେ ଆଜି କିଏ କେଉଁଠି ? ଶ୍ରୀମତୀ ଗାନ୍ଧି ଆଉ ନାହାନ୍ତି, ନାହାନ୍ତି ରାମ କିଙ୍କର, ସତ୍ୟଜିତ୍ ରାୟ, ଶିଶିର୍ ଘୋଷ, ଜିଦ୍ଦୁ କୃଷ୍ଣମୂର୍ତ୍ତୀ, ଆଚାର୍ଯ୍ୟ ରାଜନୀଶ୍ । ଆରିୟାନା, ସେଦିନର କେମ୍ବ୍ରିଜ୍ ୟୁନିୟନ୍‌ର ପ୍ରେସିଡେଣ୍ଟ, ଶାନ୍ତିନିକେତନ୍‌ରେ ଆମର ଅତିଥି – ଆଜି ପିକାଶୋଙ୍କ ଉପରେ ବହି ଲେଖି ପୃଥିବୀପ୍ରସିଦ୍ଧ । ସ୍ୱାମୀ ମିଃ ହଫିଙ୍ଗଟନ୍

କାଲିଫର୍ଣିଆର ଗଭର୍ଣ୍ଣର୍ । ଆରିୟାନାର 'ପିକାଶୋ' – ଫିଲ୍ମ ହେଉଛି, ଆଉ ପିକାଶୋ ଭୂମିକାରେ ଅଭିନୟ କରୁଛନ୍ତି ବିଶିଷ୍ଟ ହଲିଉଡ୍ ତାରକା, ଏକାଧିକ ଅସ୍କାରବିଜୟୀ – ଜାକ୍ ନିକଲ୍ସନ୍ ।

ସମ୍ପର୍କ ମୁଁ ଆଉ ରଖିନି, ରଖିଛି ଖାଲି ସ୍ମୃତି । ଅତୀତର ଅଳନ୍ଧୁ ସଫାକରି ସ୍ମୃତି ପୁରୁଣାକୁ ନୂଆ କରେ । ବଞ୍ଚିବା କିଛିଟା ସହଜ ହୋଇଯାଏ । ଏକ ବିସ୍ତାରିତ ବର୍ତ୍ତମାନ ଆପେ ଆପେ ଖୋଲିଯାଏ ଯେଉଁଠି ଭବିଷ୍ୟତର ଚିହ୍ନ ବର୍ଣ୍ଣ ନଥାଏ, ତାହାର ଆବଶ୍ୟକତା ନଥାଏ । ଆଶଙ୍କା ବେଳେବେଳେ ହାରମାନେ ସ୍ମୃତି ନିକଟରେ । ଭୟରୁ ମୁକ୍ତି ପାଏ ଭାବନା । ଆଉ ଏକ ସମୟ ଜନ୍ମ ନିଏ – ଭିନ୍ନ ଏକ କାହାଣୀକୁ ନେଇ । ପୁଣି ଥରେ ଫେଣ୍ଟାଫେଣ୍ଟି ହୋଇଯାଆନ୍ତି କେତେ ଚରିତ୍ର, କେତେ ଘଟଣା !

ଆଉ ଏକ କାହାଣୀ... କାହାଣୀ ପରେ କାହାଣୀ !

ଜୀବନ ତା'ହେଲେ ଏୟା !

ବୁଝିବାର ସମୟ ଗଡ଼ିଯିବା ପୂର୍ବରୁ, ଦେଖିବାର ଓ ଦେଖି, ନିଜର କରିନେବାର ଅଭ୍ୟାସ ବଦଳିଯିବା ପୂର୍ବରୁ, ମୁଁ ହୁଏ ଦୀପଙ୍କର – ନୀରବ, ବିଦ୍ରୋହୀ ଦୀପଙ୍କର, କିଛି ଭାଙ୍ଗିଯାଇଥିବା, କିଛି ହଜିଯାଇଥିବା ସ୍ମୃତି ଓ ସ୍ୱପ୍ନକୁ ନେଇ ଏକ ନୂଆ ସମାଜ, କିଛି ନୂଆ ମଣିଷ ଗଢ଼ିବାର ସଂକଳ୍ପକୁ ନେଇ ଧାଇଁବାରେ ବ୍ୟସ୍ତ ।

ମୋ ସ୍ୱାଙ୍ଗରେ କିଏ ? ତିରିଶ ବର୍ଷ ପରେ ଆଜି ଲାଗୁଛି ଜୀବନଠାରୁ ବହୁତ ଦୂରକୁ ଚାଲିଆସିଲିଣି, ନିଜ ପାଖକୁ ।

ଏଯାଏ ତାହାହେଲେ ମୁଁ କାହା ଜୀବନ ବଞ୍ଚୁଥିଲି ? ମୋର ନୁହେଁ ?

ଯଦି ମୋର, କେତେ ଭାଗ ମୋର ?

ବଞ୍ଚିବାର ଭିନ୍ନ ଭିନ୍ନ ନାମ ଶୁଣିବାପରେ କେଉଁ ନାମ ନେଇ ମୁଁ ବଞ୍ଚିଆସୁଥିଲି ? ମଡ଼ା ବାଟ ଛାଡ଼ି, ଅମଡ଼ା ବାଟରେ ଆସି କେଉଁଠି ପହଞ୍ଚିଛି ? ବାଟ ସରିବନି ? ମକଚି ଯାଉଥିବା ଗୋଡ଼, ଅଟକି ଯାଉଥିବା ପାଦ ଆଉ କେତେ ଦୂର ଯିବ ?

ସମୟ ଗଡ଼ିଚାଲେ । ସ୍ମୃତି ଦୁର୍ବଳ ହୋଇଯାଏ । ସତ କେଉଁଟା ଥିଲା, ମିଛ କେଉଁଟା – ଠିକ୍ ମନେ ରହେନା । ପାରମ୍ପରିକ ମୂଲ୍ୟବୋଧ ପ୍ରତି ମଣିଷକୁ ସଚେତନ

କରିବା, ସମାଜକୁ ଦୁର୍ନୀତିମୁକ୍ତ କରିବା ପାଇଁ ଛାତ୍ରଜୀବନରେ ଯେଉଁ ଶପଥ ନେଉଥିଲୁ, ସଂଗ୍ରାମ କରିଥିଲୁ, ଯନ୍ତ୍ରଣା ସହିଥିଲୁ... କଣ ହେଲା ଶେଷରେ ? ସାଙ୍ଗରେ ଥିଲେ ଯେଉଁମାନେ, ସେମାନେ ଆଜି ପ୍ରତ୍ୟକ୍ଷ ରାଜନୀତିରେ । ଥରେ ଦିଥର ମନ୍ତ୍ରୀ ହେଲେଣି । ନିଜ ପାଇଁ, ନିଜ ପରିବାର ପାଇଁ, ବନ୍ଧୁମାନଙ୍କ ପାଇଁ କେତେ କ'ଣ କରିଗଲେଣି । ସମସ୍ତ ନୀତିନିୟମକୁ ଅତିକ୍ରମ କରି ଜୀବନର ତଥାକଥିତ ସଫଳତାର ଉପର ପାହାଚରେ ସେମାନେ !

କିନ୍ତୁ ତଳ ପାହାଚରେ ସାଧାରଣ ମଣିଷ । ସେ ଜାଣୁଛି, ଚିହ୍ନୁଛି ଏଇ ମଣିଷଙ୍କୁ, ନେତାଙ୍କୁ, ଶୋଷକଙ୍କୁ । କିନ୍ତୁ କରିପାରୁନି କିଛି । କରିବାର ଶକ୍ତି ନାହିଁ । ଦୁର୍ନୀତିର କେତେ ମୁହଁ ଦେଖାଯାଉଛି, ଚର୍ଚ୍ଚାକୁ ଆସୁଛି, କିନ୍ତୁ ଶେଷରେ ହେଉଛି କଣ ? କ୍ଷମତାରେ ଥିବା ପର୍ଯ୍ୟନ୍ତ ଆତ୍ମରକ୍ଷା କରି ଖସିଯିବା – ଅତି ସାଧାରଣ ଘଟଣାରେ ପରିଣତ ହେଲାଣି ।

## ୭୫

ଡିଜିଟାଲ୍ ରେକର୍ଡ଼ ହୋଇଥିବା ହରିପ୍ରସାଦ ଚଉରାସିଆଙ୍କ ବଂଶୀ, ଟେପ୍‌ରେ – ଆଚାର୍ଯ୍ୟ ରାଜନୀଶଙ୍କୁ ସମର୍ପିତ 'ଟାଇମ୍‌ଲେସ୍ ।' ଚାରିମହଲା ବାଲ୍‌କୋନି ଉପରୁ – ମୋ ଦୃଷ୍ଟି ଲମ୍ବି ଯାଇଛି ଦୂରକୁ... ଅନେକ ଦୂରକୁ । ପଛରେ ଛାଡ଼ିଆସିଥିବା ସ୍ମୃତି ଓ ସମ୍ପର୍କ ଭିତରୁ କେତେ ଯେ ହଜିଗଲାଣି, ଆଉ କେତେ ରହିଛି – ଭାବିପାରୁନି ।

କ'ଣ ଭଲ ଲାଗୁଛି, କଣ ଭଲ ଲାଗିବ – ଜାଣିପାରୁନି, ବୁଝିପାରୁନି । ଏତିକି ଅନୁଭବ କରୁଛି – ଯାହା ଜାଣିପାରୁଛି, ଯାହା ବୁଝିପାରୁଛି, ତାହା ଆଉ ଭଲ ଲାଗୁନି । ଆଗେ ଭଲ ନଲାଗିଲେ ଚଳୁଥିଲା, ମୁଁ ବଞ୍ଚିଯାଉଥିଲି, ସବୁ ଚଳେଇ ନେଇଯାଉଥିଲି । ଆଜି ଆଉ ପାରୁନି । କ୍ଷତ-ବିକ୍ଷତ ହେଲେ ବି କିଛି ଆଦର୍ଶ, କିଛି ଲକ୍ଷ୍ୟ, ଭିନ୍ନ ଭିନ୍ନ ସମୟରେ, ଭିନ୍ନ ଭିନ୍ନ ପରିସ୍ଥିତିରେ ବଞ୍ଚାଇ ରଖୁଥିଲା, ଆଗକୁ ମାଡ଼ିଯିବାର ଆକର୍ଷଣ ଓ ଉତ୍ସାହ ଆଣୁଥିଲା । ଠିକ୍ 'ଆଗେଇ ଯାଉଥିଲି' କହିଲେ ଭୁଲ୍ ହେବ, ବରଂ, ମାଡ଼ିଯାଉଥିଲି ଏପାଖରୁ ସେପାଖ, ସେପାଖରୁ ଏପାଖ – ସମୀକ୍ଷାଠାରୁ ଡେଲ୍‌ଫି, ଡେଲ୍‌ଫିଠାରୁ ଅନୀତା ବର୍ମା, ଶରତଠାରୁ ସୁମିତ୍ର, ସୁମିତ୍ରଠାରୁ ଦୀପଙ୍କର, ଆଲୋକରୁ

ଅନ୍ଧାର, ଅନ୍ଧାରରୁ ସ୍ୱପ୍ନ । କେତେ କଣ ପାଇବା ଓ ହଜେଇବା, ଅପେକ୍ଷା ଓ ଅବିଶ୍ୱାସ କରିବା ଭିତରେ ବଞ୍ଚିବାର କେତେ ନାମ ଶୁଣିଛି ! ପରିଷ୍କାର ଦେଖି ପାରୁଛି ସମୁଦ୍ରରେ ଢେଉ – କେତେ ଶାନ୍ତ, କେତେ ପରିଷ୍କାର ଆଜି ! ସେମାନଙ୍କୁ ମାପିବାର ସମୟକୁ ଅତିକ୍ରମ କରିସାରିଲିଣି । ଅତିକ୍ରମ କରିସାରିଲିଣି, ସେମାନଙ୍କ ଭିତରେ ନିଜକୁ ହଜେଇ ଦେବାର ଇଚ୍ଛାକୁ ।

ଲାଗୁଛି ସବୁ ମଣିଷ ଆଜି ଅପେକ୍ଷାରେ ।
କିଏ କ'ଣ ପାଇଁ ଅପେକ୍ଷା କରୁଛି – କହିହେବନି ।

ମୁଁ ବି ସେମାନଙ୍କ ଭିତରୁ ଜଣେ – ଅପେକ୍ଷାରେ । ମୁଁ କହିପାରୁନି, ଜାଣିପାରୁନି ଠିକ୍ କ'ଣ ପାଇଁ ଅପେକ୍ଷା, କାହା ପାଇଁ ଅପେକ୍ଷା ? ଜୀବନରେ ଏତେ ଅନୁଭବ କଲାପରେ, ଏତେ ବୁଝିଲାପରେ, ଅନେକ କିଛି ରହିଯାଇଛି ଅବୁଝା ।

କିନ୍ତୁ ସବୁ କଥା ବୁଝିବା କ'ଣ ନିହାତି ଜରୁରୀ ? – ନିଜକୁ ପଚାରେ । ଯେପରି କି ସମସ୍ତଙ୍କୁ ଭଲ ପାଇବା ?

ଜରୁରୀ, ହଁ । ସବୁ କଥା ନ ହେଲେ ବି, କିଛି ବୁଝିବା ନିହାତି ଜରୁରୀ । ଆରମ୍ଭରୁ ମୁଁ ଲକ୍ଷ୍ୟ କରିଛି, ଅନୁଭବ କରିଛି – ଖାଲି ଅନୁଭୂତି ଗୁଡ଼ାଏ ଥିଲେ ଅର୍ଥ କିଛି ନାହିଁ, ସେଗୁଡ଼ିକୁ ବୁଝିବାକୁ ପଡ଼ିବ ।

କିନ୍ତୁ ବୁଝିବାରେ ନାନା ପ୍ରତିବନ୍ଧକ ରହିଛି । ବୁଝିବା ସହଜ ନୁହେଁ । ଏହା ଏକ କ୍ରିୟା ନୁହେଁ, ପ୍ରକ୍ରିୟା – ବିଭିନ୍ନ ସ୍ତରରେ, ବିଭିନ୍ନ ସମୟରେ ବିଭିନ୍ନ ଘଟଣା ଜରିଆରେ ଏହା ଘଟିଥାଏ ।

ତେବେ ସମସ୍ତଙ୍କୁ ଭଲ ପାଇବା ସେମିତି 'ଜରୁରୀ' ନୁହେଁ । କେତେ ଜଣଙ୍କୁ... ହଁ... ଜରୁରୀ, ନିହାତି ଜରୁରୀ । ନ ହେଲେ ବଞ୍ଚିବା କଷ୍ଟକର ହୋଇଥାଏ । ବଞ୍ଚିବାରେ ଆନନ୍ଦ ନ ଥାଏ, ନ ଥାଏ ଉତ୍ତାପ ବା ଉତ୍ତେଜନା । କିନ୍ତୁ ଇଚ୍ଛା କରି, ଯୋଜନା କରି କ'ଣ କିଏ କାହାକୁ ଭଲ ପାଇପାରେ ?

ପଛକୁ ନ ଚାହିଁ, ଆଜି ମୁଁ ଜୀବନର କିଛି ଅଂଶ ସ୍ପଷ୍ଟ ଦେଖିପାରୁଛି, ଅଧାଅଧି ସ୍ୱର ଶୁଣି ପାରୁଛି, ଅନେକଟା ନିଜକୁ ବୁଝି ପାରୁଛି ।

ତେବେ ଏହି ଅଂଶବିଶେଷର ଦୃଶ୍ୟ ଓ ସ୍ୱର ପଛରେ ରହିଯାଉଛି କିଛି ଶୂନ୍ୟତା, କିଛି ସମ୍ଭାବନା । ଦେଖିବା ଓ ଶୁଣିବାର ଆବଶ୍ୟକତାକୁ ବାଦ୍ ଦେଇ ମୁଁ ଚାହେଁ, ସେହି ଶୂନ୍ୟତା, ସେହି ସମ୍ଭାବନା ଭିତରେ ମୋର ସ୍ମୃତି ଓ ସ୍ୱପ୍ନ ସୁରକ୍ଷିତ ରହୁ ।

ଦୂର ପାହାଡ଼ ଉପରେ ଦେଖାଯାଉଛି ଗଛଟିଏ... ଗୋଟିଏ ନୁହଁ ତ, ଅନେକ ! ପରମୁହୂର୍ତ୍ତରେ ଲାଗୁଛି – ଖାଲି ପାହାଡ଼, କୌଣସି ଗଛର ଚିହ୍ନବର୍ଣ୍ଣ ନାହିଁ... ପାହାଡ଼, ଆଉ ଉପରେ ଏକ ନୀରବ, ପୁରୁଣା ଆକାଶ ।

କ'ଣ ମୁଁ ଭୁଲ ଦେଖୁଛି ? ନା ଯାହା ଅଛି, ତାକୁ ନ ଦେଖି, ଯାହା ନାହିଁ, ବା ଥିଲେ ଭଲ ଲାଗନ୍ତା – ତାକୁ ଦେଖୁଛି ? ଭାବିଲେ ସେଇଆ ଲାଗେ – ଜୀବନରେ ଯାହାଥିଲା, ତାକୁ ନ ଦେଖି, ଯାହା ନ ଥିଲା, ଯାହା ମନକୁ ଭଲ ଲାଗିଲା, କଳ୍ପନାକୁ ଖୋରାକ ଦେଲା – ତାକୁ ହିଁ ଦେଖିଲି ।

ସମସ୍ତେ ସେଇଆ କଲେ, ସେଇଆ କରି ଆସୁଛନ୍ତି, ନା କେବଳ ମୁଁ ?

ହଠାତ୍ ଘଡ଼ଘଡ଼ି... ବର୍ଷା । ଚାରିମହଲାଉପରୁ ଓହ୍ଲାଇ ତଳକୁ ଧାଇଁବାକୁ ଇଚ୍ଛା ହେଲା ।

ମିନିଟ୍ କେତୋଟିରେ ମୁଁ ତଳେ, ରାସ୍ତାରେ, ଏକା ।

ପ୍ରବଳ ବର୍ଷା... ମୁଁ ସମ୍ପୂର୍ଣ୍ଣ ଭିଜିଗଲିଣି । ପାହାଡ଼ ପାଖରେ ପହଞ୍ଚିଗଲିଣି । ସବୁଜ ଗଛ ଆହୁରି ସବୁଜ ଦିଶୁଛି । ପତ୍ର ତଳେ ପାଣି ପଡୁଛି, ମୋ ଶରୀରଯାକ ଭେଦି ଗଲାଣି... ମୁଁ ସମ୍ପୂର୍ଣ୍ଣ ଓଦା । ଲାଗୁଛି ମୁଁ ହିଁ ପାଣି, ମୁଁ ହିଁ ପତ୍ର, ଗଛ, ବର୍ଷା...

ଦର୍ଶକ ଓ ଦୃଶ୍ୟ ଭିତରେ ଆଉ ଫାଙ୍କ କିଛି ନାହିଁ, ନାହିଁ ଅତୀତ ଓ ବର୍ତ୍ତମାନ ଭିତରେ । ସମୟ, ଜୀବନକୁ ଗୋଟିଏ ମୁହୂର୍ତ୍ତରେ ଭାଙ୍ଗି, ପର ମୁହୂର୍ତ୍ତରେ ପୁଣି ଯୋଡ଼ି ଦେଇଛି, ଯେପରିକି ସ୍ମୃତି, ସମ୍ପର୍କକୁ । ବୟସର ଦାଗରେ ନୁହେଁ, ଅନୁଭୂତିର ବିଭିନ୍ନତାରେ, ଆକସ୍ମିକତାରେ, ମଣିଷକୁ ଚିହ୍ନି ହେଉଛି, ଅନୁଭୂତିକୁ ବୁଝି ହେଉଛି ।

ନିଜର ଶକ୍ତି ଓ ଦୁର୍ବଳତା ମାପିଲା ବେଳେ ନାହିଁ ଆଜି ଅକୁହା ଦୁଃଖ – ପଛକୁ ଫେରି ଚାହିଁବାର, ନାହିଁ ଅଯଥା ଆନନ୍ଦ – ଆଗକୁ ଅନେଇବାର । ଖାଲି ଅଛି ସମୟ – ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର, ଗୋଟିଏ ମୁହୂର୍ତ୍ତ ପରେ ଆଉ ଏକ ମୁହୂର୍ତ୍ତର – ଭାବିବାର, ପ୍ରଶ୍ନ କରିବାର, ବଞ୍ଚିବାର ସମୟ ।

ସ୍ମୃତି ଆଉ ବୋଝପରି ଲାଗୁନି, ଏହା ବଦଳିଯାଇ ହୋଇଯାଉଛି ସ୍ୱପ୍ନ ।

ସ୍ୱପ୍ନ ପୁଣି ହୋଇଯାଉଛି ଏକ ଦାୟିତ୍ୱ – ବଞ୍ଚିବାର ଅନ୍ୟ ନାମ ।

ବର୍ଷାର ବେଗ କମିଗଲାଣି । ଆକାଶ ଆସ୍ତେ ଆସ୍ତେ ପରିଷ୍କାର ହେଲାଣି । ପାହାଡ଼ ତଳକୁ ଖସିଆସି, ମୁଁ ପୁଣି ରାସ୍ତାରେ । କୌଣସି ଇଚ୍ଛା ବା ଆବଶ୍ୟକତାକୁ ନ ମାନି, କାଦୁଆ, ନାଲିଆ ରାସ୍ତାରେ ମୁଁ ଚାଲିଛି, ଯେପରିକି ଚାଲିବାର ଆଉ କିଛି ବିକଳ୍ପ ନାହିଁ, ଚାଲିବାହିଁ ବଞ୍ଚିବାର ପ୍ରଥମ ଓ ଶେଷ ନାମ, ଜୀବନର ଅନ୍ତିମ ଅର୍ଥ ଓ ଉଦ୍ଦେଶ୍ୟ ।

ରାସ୍ତା ଲମ୍ବି ଲମ୍ବି ଯାଉଛି...

ବର୍ଷା ପୁଣି ଆସିଲାଣି...

ମୁଁ ଚାଲିଛି ଆଗକୁ, ପ୍ରଥମେ ମନ୍ଥର ଓ ପରେ ପରେ ଦ୍ରୁତ ଗତିରେ ।



